ବଳରାମ ଦାସ ଓ ଓଡ଼ିଆ ରାମାୟଣ
ଲେଖକ : ନରେନ୍ଦ୍ର ମିଶ୍ର

## ଗ୍ରନ୍ଥପ୍ରବେଶର ସୂଚନା

ବଳରାମ ଦାସଙ୍କର ଦାଣ୍ଡି ରାମାୟଣକୁ ନେଇ ଏ ପୁସ୍ତକଟି ଲେଖା ହୋଇଛି । ବଳରାମ ଦାସଙ୍କ ଗ୍ରନ୍ଥରୁ ସମାଜଚିତ୍ର ଓ ଧର୍ମ ବିଶେଷ ଭାବରେ ଦେଖିବାର କଥା । ଏହୁ ସମାଜଚିତ୍ର ଓ ଧର୍ମବୋଧ ଭାରତର କାବ୍ୟ ପୁରାଣ ପରମ୍ପରା କାଳେ କାଳେ ପ୍ରକାଶପାଇ ଆସିଛି । ଯେତେ ପ୍ରାଚୀନ ଦେଶ ପୃଥିବୀରେ ସଭ୍ୟ ହୋଇଥିଲା—ସେସବୁ ଆଜି ନାହିଁ । ଇଜିପ୍ଟ, କ୍ରୀଟ, ସୁମେର, ବାବିଲୋନ, ଆସିରିଆ ପ୍ରଭୃତିର ରାଜ୍ୟ ସାମ୍ରାଜ୍ୟମାନ ଆଜି ଖୋଳାହୋଇ ସେଠା ଲେଖମାନ ଅଧ୍ୟୟନ କରାଯାଉଛି । କିନ୍ତୁ ସେଥିରେ ସମାଜ ଓ ଧର୍ମ କାଳ ପ୍ରବାହରେ କଣ କିପରି ହୋଇ ଆସିଛି, ତାହା ଅନୁସନ୍ଧାନ କରିବାର ଉପାଦାନ ନାହିଁ କହିଲେ ଚଳେ । ଭାରତରେ ରାଜ୍ୟ ସାମ୍ରାଜ୍ୟର ଇତିହାସ ଯେପରିକି ଅତ୍ୟନ୍ତ ଗୌଣବସ୍ତୁ । ଆମ ପୁରାଣକୁ କହନ୍ତି ଇତିବୃତ୍ତ ବା ଇତିହାସ । ସେ ଇତିହାସ ଯଥାର୍ଥରେ ଲୋକଙ୍କର । ସମାଜର ଗତି ସେଥିରେ ସ୍ପଷ୍ଟ । ମୁଖ୍ୟତଃ ମହାଭାରତ ଓ ରାମାୟଣରେ ଧର୍ମ ବା ସମାଜର ଆଦର୍ଶ ନେଇ ଯେଉଁ ବାସ୍ତବ ଲୋକ ଚଳଣୀ ସଂଗୃହୀତ ହୋଇଥିଲା ଓ ସେଥିରେ ଯେଉଁ ଆଦର୍ଶମାନଙ୍କର ଅଭିମୁଖ୍ୟ ଫୁଟାଇ ଦିଆଯାଇଥିଲା, ତାହା ପୃଥିବୀରେ ଅଦ୍ୱିତୀୟ ।

ଏଇ ରାମାୟଣ କଥା ଦେଖ । ରାମାୟଣ କେବଳ ଲେଖା, କେବଳ କଥା, କେଉଁଟା ଦଶରଥଙ୍କ କଥା (ଭାରତର ବୈଦିକ ଦଶରଥ, ନା ପ୍ରାଚୀନ ମେସୋପଟମିଆରେ ଥିବା ମିଟାନୀର ଦଶରଥ କିମ୍ବା ଅନ୍ୟ କୌଣସି ଅଯୋଧ୍ୟାର ଦଶରଥ) ତାହା ଯେଉଁ ପଣ୍ଡିତମାନେ ବହୁ ଆଲୋଚନା କରନ୍ତୁ । କିନ୍ତୁ ରାମାୟଣର ରାଜବଂଶକୁ ରଘୁବଂଶର ରାଜବଂଶ ସହିତ ତୁଳନା କରି ଦେଖିଲେ ହୁଏତ ସ୍ପଷ୍ଟ ଅନୁମିତ ହେବ, କାଳିଦାସ ରଘୁବଂଶ ଲେଖିଲା ବେଳକୁ ରାମାୟଣ ବର୍ତ୍ତମାନ ରାମାୟଣର ଆକାର ଧରି ନ ଥିଲା । ଏହା ଲୋକ ମୁଖରେ ପରମ୍ପରା ଓ କିଂବଦନ୍ତୀ ଆକାରରେ ଥିଲା । କେବେ ବର୍ତ୍ତମାନର ରାମାୟଣ ସଂକଳିତ ଓ ପ୍ରଚାରିତ ହେଲା, ତାହା ଜାଣିବା ଏତେ ସହଜ କଥା ନୁହେଁ । ହୁଏତ ମାନବ ଇତିହାସରେ ମାନବର ସାମାଜିକ ଗତି ଅନୁସନ୍ଧାନ କରିବାରେ ସେଭଳି ନିର୍ଦ୍ଦିଷ୍ଟ ସମୟ ଖୋଜିବାର ଆବଶ୍ୟକତା ଥାଇ ନ ପାରେ । କିନ୍ତୁ ସ୍ତରେ ସ୍ତରେ ସମାଜ ଓ ସାମାଜିକ ଧର୍ମ କିପରି ଆତ୍ମପ୍ରକାଶ କରିଛି, ତାହା ଜାଣିବାରେ ଭାରତୀୟ ପୁରାଣ ଭଳି ଆଉ ସାହିତ୍ୟ ଅଛି ବୋଲି ମନେ ହେଉନାଇ ।

ସେହି ହିସାବରେ ଦେଖିଲେ ଦେଖାଯିବ ବଳରାମ ଦାସଙ୍କ ରାମାୟଣ ବାଲ୍ମୀକି ରାମାୟଣ ନୁହେ, କି ସାରଳା ଦାସଙ୍କ ମହାଭାରତ ବେଦବ୍ୟାସଙ୍କ ମହାଭାରତ ନୁହେ । ଆଃ, କି ସୁନ୍ଦର କଥା । କାହିଁ ବାଲ୍ମୀକିଙ୍କ ଅଯୋଧ୍ୟା ବର୍ଣ୍ଣନାରେ ବହୁତଳ ସମନ୍ୱିତ ସୌଧମାଳା, କାହିଁ ବଳରାମ ଦାସଙ୍କ ଅଯୋଧ୍ୟାରେ ନାଆଗୁଳିଆ ଘରମାନଙ୍କରେ ତେଜପତି ଛପର । ମୋର ଏଠି ଗୋଟିଏ ପିଲାଦିନ କଥା ମନେ ପଡ଼ୁଛି । କହ୍ଲେଇ ଭୋଇର ଗୋଟିଏ ଅତି ଗରିବ ପରିବାର । ଗୋଟିଏ ମେଘୁଆ ଅପରାହ୍ଣରେ ନାତିମାନେ ବୁଢ଼ାକୁ ପଚାରିଲେ, "ଜେଜେ, ରାଜା ଏଇଲାଗେ କଣ କରୁଥିବେ ।" ବୁଢ଼ା କହିଲେ, "ଶଏ ସଢେଇରେ ଗୁଡ଼ୁଲଭଜା ଚୋବାଉ-ଥିବେ ।" ପୁଣି ଯେଉଁ ବଳରାମ ଦାସ ନିଜ ରାମାୟଣରେ ରାମଚନ୍ଦ୍ରଙ୍କୁ ସାକ୍ଷାତ ବିଷ୍ଣୁ ଓ ସୀତାଙ୍କୁ ସାକ୍ଷାତ ଲକ୍ଷ୍ମୀ ବୋଲି ବର୍ଣ୍ଣି ପ୍ରଚାର କରିବାକୁ ଲାଗିଛନ୍ତି, ସେଇ ବଳରାମ ଦାସଙ୍କ ରାମାୟଣରେ ବନ୍ଧାଘର ପଞ୍ଚୁରାସୀ ଦେଖ । ରାମ ସୀତା ଦୁହେଁ ଖଞ୍ଜାଶାଳରେ ପଞ୍ଚୁରାସୀ କରୁଛନ୍ତି । ରାମ ଖାଉଛନ୍ତି । ସୀତାଙ୍କ ହାତ ରହିଗଲା । ଅନ୍ୟ ମାଇପେ ବେଢ଼ିକରି ଠିଆ ହୋଇଥିଲେ । ଅନୁମାନ କରି ସେମାନେ ବୁଝିଲେ, "ଲୁଣି ଚଉଁରି"

ପକାଇଲାବେଳେ ସୀତାଙ୍କ ଆଖି ରାମଙ୍କ ଉପରେ ମୁହୂର୍ତ୍ତେ ମାତ୍ର ପଡ଼ି-ଯାଇଥିଲା । ସେ ଭଲକରି ଦେଖିପାରି ନଥିଲେ । ଏବେ ଖାଇଲାବେଳେ ସୀତାଙ୍କ ଚୁଡ଼ିରେ ଥିବା ରତ୍ନରେ ରାମଙ୍କ ପ୍ରତିବିମ୍ବ ପଡ଼ିଯିବାରୁ ସୀତା ରାମଙ୍କୁ ଭଲ କରି ଦେଖି ବସିଲେ । ଏ ସବୁ ଚିତ୍ରର ତୁଳନା କରି ବସିଲେ, ବାଲ୍ମୀକିଙ୍କ ରାମାୟଣ କଣ, ବଳରାମ ଦାସଙ୍କ ରାମାୟଣ କଣ ତାହା ସହଜରେ ବାରି ହେବ ।

ସେଇପରି ଭାରତରେ ଭକ୍ତିଧର୍ମର ଆବିର୍ଭାବ । ଅନ୍ଧ୍ରର ମେଙ୍ଗ୍‌ଦା-ଧର୍ମୀ ତେରାପୁସ୍ତଙ୍କଠାରୁ ଅଲ୍ଲାମହମ୍ମଦ-ଧର୍ମୀ ମୁସଲମାନଙ୍କ ପର୍ଯ୍ୟନ୍ତ ସ୍ତରେ ସ୍ତରେ ଭାରତ-ସଂସ୍କୃତିର ପରିଣାମ ଓ ବିବର୍ତ୍ତନ କେବଳ ପୁରାଣରେ ଦେଖା ଯାଇପାରେ । ସେଥିରେ ସଂସ୍କୃତ ପୁରାଣ ଓ ଦେଶୀ ଭାଷାରେ ଲେଖା ହୋଇଥିବା ପୁରାଣ, ପୁଣି ବିଶେଷରେ ବହୁ ଶତାବ୍ଦୀ ପୂର୍ବରୁ ପରାଧୀନ ଉତ୍ତର ଭାରତର ପୁରାଣ ଓ ସ୍ୱାଧୀନତାର ପରମ୍ପରାରେ ବଢ଼ିଥିବା ସାରଳା ଦାସ, ବଳରାମ ଦାସଙ୍କ ଭଳି ଓଡ଼ିଆରେ ଲେଖା ପୁରାଣ— ଏଇସବୁ ଭିତରେ ପ୍ରଭେଦ ସଙ୍ଗେ ଏକତ୍ୱର ବିକାଶ ଦେଖି ଦେଖାଇବାରେ ସାହିତ୍ୟର ଯଥାର୍ଥ ବିନୋଦ ଓ ଆନନ୍ଦ ମିଳିବ ।

ଲେଖକ ବହୁ ଉଦାହରଣ ଦେଇ ଏଇ ସବୁ ପ୍ରଭେଦ ଓ ସାମଞ୍ଜସ୍ୟର ସୁନ୍ଦର ଆଲୋଚନା ଆଡ଼କୁ ସଙ୍କେତ କରିଛନ୍ତି । ଏହାଛଡ଼ା ପାଠାପାଠ ଓ ତଦାନୁଷଙ୍ଗିକ ଆଲୋଚନାରେ ମଧ୍ୟ ତାଙ୍କର ଯଥେଷ୍ଟ ପାଣ୍ଡିତ୍ୟ ପ୍ରକାଶ ପାଇଛି । ଭାଷା ଅତି ସୁନ୍ଦର । ସେଥିରେ ଇଂରେଜୀ ବଙ୍ଗଳାର ଅନୁବାଦ ଓ ଅନୁକରଣ ଯଦି କ୍ୱଚିତ୍ ଥାଏ—ତାହା ଆହରଣର ପରିପାଟୀରେ ସ୍ୱାଦ୍ୟ । ଓଡ଼ିଆ ଭାଷାରେ ଏ ଗ୍ରନ୍ଥଟିଏ ବଡ଼ ଉପାଦେୟ ଗ୍ରନ୍ଥ । ଲେଖକଙ୍କର ଏହା ପ୍ରଥମ ଲେଖା ପୁସ୍ତକ । ଏ ଭଳି ପୁସ୍ତକକୁ ଦେଶରେ ପଢ଼ିବା, ଆଦର କରିବାର ବାୟୁମଣ୍ଡଳ ହୁଏତ ସୃଷ୍ଟି ହୋଇନାହିଁ । କିନ୍ତୁ ତା ହେଉ ଓ ଓଡ଼ିଆ ସାହିତ୍ୟ ନୂତନ ଆଲୋଚନାର ଶୈଳୀ ଯେଉଁ ଉତ୍ତରୋତ୍ତର ଶ୍ରୀବୃଦ୍ଧି ଲାଭ କରୁ । ଶ୍ରୀମାନ୍ ନରେନ୍ଦ୍ର ଏହି ଉତ୍ତରୋତ୍ତର ଶ୍ରୀବୃଦ୍ଧିରେ ନିଜର ସାହିତ୍ୟ ପ୍ରକାଶ କରି କୃତିତ୍ୱ ଅର୍ଜନ କରନ୍ତୁ ।

ବିଶ୍ୱଭାରତୀଙ୍କୁ ଅଶେଷ ସାଧୁବାଦ । ତାଙ୍କରି ଉଦ୍ୟମର ଫଳରେ ଆଜି ଏ ପୁସ୍ତକ । ଏଥି ପୂର୍ବରୁ ଏହିପରି ଏକାଧିକ ପୁସ୍ତକ ମଧ୍ୟ ପ୍ରକାଶ

ପାଇବ । ଉକ୍ତ ପାଠ୍ୟବିଧାନରେ ଏଇ ସବୁ ଆଲୋଚନାର ବିସ୍ତୀର୍ଣ୍ଣ କ୍ଷେତ୍ର ସେ ପ୍ରସ୍ତୁତ କରି ରଖିଚନ୍ତି । ଏହା ଅତି ଶ୍ଳାଘ୍ୟ ଓ ସୁନ୍ଦର । ଏ କ୍ଷେତ୍ରରେ ଏଇପରି ଉଦ୍ୟମ ଅନ୍ୟତ୍ର ଦେଖାଯାଇ ନାଇ । ବିଶ୍ବଭାରତୀର ଏ ଉଦ୍ୟମ ପ୍ରଭାବରେ ଓଡ଼ିଶାରେ ଯଥାର୍ଥ ଆଲୋଚନା ସାହିତ୍ୟଧାରା ପୁଷ୍କଳ ପ୍ରବାହରେ ପ୍ରକାଶ ପାଉ ।

ଭୁବନେଶ୍ବର
ଗଣେଶ ଚତୁର୍ଥୀ
ତା ୨୦ । ୯ । ୫୫

ନୀଳକଣ୍ଠ ଦାସ

# ଭୂମିକା

ଭାରତର ସର୍ବାଞ୍ଚଳ ପରି ଓଡ଼ିଶାରେ ଦୁଇ ମହାଗ୍ରନ୍ଥ—ରାମାୟଣ ଓ ମହାଭାରତ ଲୋକପ୍ରାଣରେ ଚିରନ୍ତନ ପ୍ରତିଷ୍ଠା ଲାଭ କରିଅଛି । ସାରଳା ମହାଭାରତ ଅଗ୍ରଜ, ରଚନା ପରିପାଟିରେ ଦାଣ୍ଡି ରାମାୟଣ ଏହାର ସମକକ୍ଷ ନୁହେଁ । କିନ୍ତୁ ଦେବତାରୂପେ ଅଧିଷ୍ଠିତ ସର୍ବ ଯୁଗରେ ସର୍ବ କାଳରେ ପ୍ରାତଃସ୍ମରଣୀୟ ସୀତା ରାମଙ୍କ ଚରିତ୍ର ଗ୍ରଥିତ ହୋଇଥିବାରୁ ଏହା ବୋଧହୁଏ ଅଧିକ ଲୋକପ୍ରିୟ ହୋଇଅଛି । କୃଷ୍ଣ, ରାମଙ୍କ ପରି ବନ୍ଦ୍ୟ ହେଲେ ମଧ୍ୟ ମହାଭାରତ କୃଷ୍ଣାୟଣ ନୁହେଁ, କୃଷ୍ଣଙ୍କ ଚରିତ୍ର ଏଥିରେ ଗୌଣ । ଲୋକସାହିତ୍ୟ ବିଶେଷତଃ ଏହାର ମୌଖିକାଂଶରେ ରାମାୟଣ ସମଧିକ ଆଦର ଲାଭ କରିଥିବାର ସୁସ୍ପଷ୍ଟ ପ୍ରମାଣ ଅଙ୍କିତ । ହଳିଆ ରାମାୟଣ, ହଳିଆ ବାରମାସୀ ଶଗଡ଼ିଆ ଗୀତ, ଦୋଳଗୀତାଦି ସଂଖ୍ୟାତୀତ ଲୋକଗୀତର ମହାଭାରତ ନୁହେଁ, ରାମାୟଣ ହିଁ ଉପଜୀବ୍ୟ ହୋଇଅଛି । ମହାଭାରତର ଭ୍ରାତୃବିବାଦ ଅପେକ୍ଷା ରାମାୟଣର ଭ୍ରାତୃବତ୍ସଳତା, ଦୁର୍ଯ୍ୟୋଧନର ଅବାଧ୍ୟତା ଅପେକ୍ଷା ରାମଚନ୍ଦ୍ରଙ୍କ ପିତୃସତ୍ୟ ପାଳନ, ଦ୍ରୌପଦୀଙ୍କ ପଞ୍ଚପତିତ୍ୱ ଅପେକ୍ଷା ସୀତାଙ୍କ ଏକନିଷ୍ଠ ପାତିବ୍ରତ୍ୟ ଲୋକମନରେ ଗଭୀରତର ରେଖାପାତ କରିଅଛି ।

ରାମାୟଣ ଲୋକସାଧାରଣଙ୍କର ଅତି ଆଦରର ଧନ; ପଦାର୍ଥର ଅଧିକାରୀ ହେଲେ ମନୁଷ୍ୟ ତାକୁ ଯଥେଚ୍ଛ ବ୍ୟବହାର କରେ । ରାମାୟଣ ଭାଗ୍ୟରେ ତାହାହିଁ ଘଟିଅଛି । ହୁଏତ ସେପରି ବାଲ୍ମୀକି ରାମାୟଣର ଆଦର୍ଶ ଦାଣ୍ଡି ରାମାୟଣରେ ସ୍ଥାନେ ସ୍ଥାନେ ଖର୍ବ ହୋଇଅଛି, ସେହିପରି ଦାଣ୍ଡି-ରାମାୟଣର ଆଦର୍ଶ ଲୋକଗୀତରେ କ୍ଷୁର୍ଣ୍ଣ ହୋଇଅଛି । ଲୋକେ ରାମାୟଣର ଉଚ୍ଚତର ଆଦର୍ଶ ହୃଦୟଙ୍ଗମ କରିପାରି ନାହାନ୍ତି । ବିଶାଳ ରାଜ୍ୟ, ଅକଳନ୍ତି ଧନସମ୍ପତ୍ତି ଛାଡ଼ି ରାମଚନ୍ଦ୍ର ବନରେ ପଶିବାରେ ବୁଦ୍ଧିର କି ତତ୍ପର୍ଯ୍ୟ ରହିଛି ? ଅଭିଷେକ ବେଳେ ଦୁଷ୍ଟା କୈକେୟୀ ସେବେ କଳି ଉଠାଇଲା ତାକୁ ଦମନ କରିବା ଉଚିତ ନ ଥିଲା କି ? ତା ନ କରି ଜଣକ କୁମନୋବୃତ୍ତି ଚରିତାର୍ଥ କରିବା ଲାଗି ଦଶରଥଙ୍କ ପରିବାର ତଥା ସମଗ୍ର ଦେଶକୁ ଦୁଃଖରେ ବୁଡ଼ାଇବାରେ କି ବୁଦ୍ଧିମତ୍ତାର ପରିଚୟ ମିଳିଲା ? କୈକେୟୀଙ୍କ ଉପରେ କ୍ରୁଦ୍ଧ

ଲୋକସାଧାରଣ ତେଣୁ ଯୋଗୀ ଭରତଙ୍କୁ ଶିଖାଇ କହୁଛନ୍ତି—"ଲୋକେ ପତ୍ନୀବଳେ ବାବୁ କହୁବୁ କୈକେୟୀ ଦେଲେ ଦୁଃଖ ।" ଲୋକଙ୍କ କଳ୍ପନାରେ ରାମଚନ୍ଦ୍ର ସ୍ୱଭାର୍ଯ୍ୟାଙ୍କୁ ପୋଷି ପାରିଲେ ନାହିଁ । ତେଣୁ ରାବଣ ଘେନିଗଲା । ଯେ ନିଜ ଭାର୍ଯ୍ୟାକୁ ପୋଷି ନ ପାରିଲା ସେ କି ମନୁଷ୍ୟ ? ପୁଣି ସ୍ତ୍ରୀ ତା କଥାରେ ପଡ଼ି ନିଜର ଗର୍ଭବତୀ ଭାର୍ଯ୍ୟାକୁ ଅଗନାଗ୍ନି ବନସ୍ତରେ ଛାଡ଼ିବାରେ କି ବିବେକତା ଅଛି ? ଲୋକେ ରାମଚନ୍ଦ୍ରଙ୍କୁ କେବଳ ଦେବତା ହିସାବରେ ଭକ୍ତିକରି ନାହାନ୍ତି । ନିଜ ଭିତରକୁ ଆଣି ମନୁଷ୍ୟ ହିସାବରେ ତାଙ୍କର କାର୍ଯ୍ୟାକାର୍ଯ୍ୟ ବିଚାର କରିଅଛନ୍ତି । ନୟାଗଡ଼ର ମନ୍ଦିରରେ ରଘୁନାଥଜୀଙ୍କ ପୂଜା; ଅଗଣିତ ଜନସାଧାରଣଙ୍କ ଜୀବନ୍ତ ହୃଦୟ ଦେଉଳରେ ତାଙ୍କର କପଟ ପୂଜା ହୋଇଅଛି ତାର ସାକ୍ଷ୍ୟ ଲୋକଗୀତ ଦିଏ ।

ଓଡ଼ିଆଙ୍କ ମନରେ ରାମାୟଣର ଏ ଯେଉଁ ପ୍ରତିଷ୍ଠା, ତାହା କେବଳ ମହାକବି ବଳରାମ ଦାସଙ୍କ ଯୋଗୁଁ ସମ୍ଭବ ହୋଇଅଛି । ଷୋଡ଼ଶ ଶତାବ୍ଦୀର କଥା, ସେତେବେଳକୁ ସାହିତ୍ୟ କେତେକଣ ପଣ୍ଡିତଙ୍କର ପେଡ଼ି ଲଗା ହୋଇଥିଲା, ଧର୍ମକୁ ସେମାନେ ଇସ୍ତମବିର ପଞ୍ଝାକରି ନେଇଥିଲେ । ଲୋକ-ସାଧାରଣ ଅନ୍ଧକାରରୁ ଘୋରତର ଅନ୍ଧକାରକୁ ଠେଲି ଯାଉଥିଲେ; ସାରଳା ଦାସଙ୍କ ମହାଭାରତ ଏହି ନିବିଡ଼ ଶର୍ବରୀର ଏକମାତ୍ର ଆଲୋକବର୍ତ୍ତିକା ହୋଇଥିଲା । ଏତିକିବେଳେ ପଞ୍ଚସଖା ଆସିଲେ, ସର୍ବ ସାଧାରଣଙ୍କ ଲଗି ଧର୍ମମନ୍ଦିର ଦ୍ୱାର ଉନ୍ମୋଚିତ ହେଲା । ସାହିତ୍ୟ ଗ୍ରାମେ ଗ୍ରାମେ ଗୃହେ ଗୃହେ ପ୍ରବେଶ କଲା, ପୁରୋହିତ ଧର୍ମର ଆସନ ଟଳମଳ ହେଲା । ବିଶୁଦ୍ଧଜ୍ଞାନ ଧର୍ମ ଓ ସାହିତ୍ୟର ପ୍ରବାହ ଏକାବେଳେକେ ସମସ୍ତ ସମାଜକୁ ଏକାକାର କରିଦେଲା । ଏହି ପ୍ରବାହକୁ ଅଧିକ ପ୍ରସାରିତ କରିବା ପାଇଁ ବଳରାମ ଦାସ ଲେଖିଲେ—ଲୋକଙ୍କର ହୋଇ ଲୋକଙ୍କ ପାଇଁ ରାମାୟଣ । କବି ସଂସ୍କୃତରେ ସୁପଣ୍ଡିତ; ଇଚ୍ଛା କରିଥିଲେ ଅକ୍ଲେଶରେ ରାମାୟଣର ଆକ୍ଷରିକ ଅନୁବାଦ କରିପାରିଥାନ୍ତେ । ତା ହୋଇଥିଲେ ଦାଣ୍ଡିରାମାୟଣ ଆଜି ଏକ ସ୍ୱତନ୍ତ୍ର ଗ୍ରନ୍ଥ ଭାବରେ ପ୍ରତିଷ୍ଠା ପାଇ ନ ଥାନ୍ତା । ସେ କାଳକୁ ପ୍ରାୟ ଦୁଇ ହଜାର ବର୍ଷ ତଳର ଭାରତୀୟ ସମାଜର ଚିତ୍ର ଓଡ଼ିଆଙ୍କ ମନକୁ ଜିଣି ନ ଥାନ୍ତା । ତେଣୁ ଲୋକ-ବତ୍ସଳ ବଳରାମଙ୍କ କଳ୍ପନାରେ ଓଡ଼ିଶା ହେଲା ଭାରତବର୍ଷ, ପୁରୀ ଅଯୋଧ୍ୟା, ରାଜପ୍ରାସାଦ ଜନ୍ମଭିତର ଗ୍ରାମକୁଟୀର, ଗୁହକ ଆମ ଓଡ଼ିଶୀ ଶବର ପଡ଼ାର କେହି ଜଣେ; ଅମର କଂବଦନ୍ତୀ, କାହାଣୀ,

ଲୋକବିଶ୍ୱାସ, ଧର୍ମଧାରଣା, ଚଳଣିଚଳନ, ଗୃହସ୍ଥଳୀ, ଉତ୍ସବପର୍ବ, ବିବାହ ନୀମିତ୍ୟ, ଓଷାବ୍ରତ, ପର୍ବପର୍ବାଣି ସବୁ ସେଥିରେ ରୂପ ପାଇଲା । ସେ ହେଲା ଆମ ସମାଜର ସରସ ଇତିହାସ । ଲୋକେ ଏହି ଦର୍ପଣରେ ନିଜର ବହିର୍ଜଗତ ଓ ଅନ୍ତର୍ଜଗତର ପ୍ରତିମୂର୍ତ୍ତି ଦେଖିଲେ, ଏ ହେଲା ଗୃହେ ଗୃହେ ହୃଦୟର ନିଧି, ପୂଜାପାଇଲା ଖଟୁଳିରେ, ପଢ଼ାହେଲା ଭାଗବତ ଟୁଙ୍ଗିରେ । ସମାଜର ଶିରା ପ୍ରଶିରାରେ ଭେଦିଗଲା ଏହାର ଚେର । ସମାଜର ମନ ବନରେ ଫୁଟିଲା ଏହାର ଫୁଲ । ବାକ୍ୟ କବିତା, ଛାନ୍ଦ ଚଉପଦୀ, ବୋଲି ଚଉତିଶା, ଲୀଳା ସୁଆଙ୍ଗ ରୂପରେ ସମାଜର ସ୍ତରେ ସ୍ତରେ ନାନା ଆକାରରେ ନାନା ପ୍ରକାରରେ ଏହା ପ୍ରବେଶ ଲଭିକଲା ।

ଏହି ମହାଗ୍ରନ୍ଥ ବିଷୟରେ ଓଡ଼ିଆରେ ଏଟିସେଟି ସଂକ୍ଷିପ୍ତ ଆଲୋଚନା ମାତ୍ର ହୋଇଥିଲା, କୌଣସି ସ୍ୱତନ୍ତ୍ର ଗ୍ରନ୍ଥ ଲେଖା ହୋଇ ନ ଥିଲା । ଶ୍ରୀମାନ୍ ନରେନ୍ଦ୍ରନାଥ ମିଶ୍ର ଏ ଦିଗରେ ପ୍ରଥମେ ଅଗ୍ରଣୀ ହେଲେ । ମୋ ନିର୍ଦ୍ଦେଶ ଓ ପରିଚାଳନାରେ ଶ୍ରୀ ମିଶ୍ର ବଳରାମ ଦାସ ଓ ଦାଣ୍ଡିରାମାୟଣ ବିଷୟରେ ଗବେଷଣା କରୁଥିଲେ । ଗତ ଏମ୍. ଏ. ପରୀକ୍ଷାରେ ଦ୍ୱିତୀୟ ଭାଗରେ ଏହାକୁ ଥିସିସ୍ ରୂପେ ଦାଖଲ କରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ଆଉ ମୁଁ ଥିସିସ୍‌ର ପରୀକ୍ଷକ ଥିଲୁ । ଉଚ୍ଚକୋଟୀର ବିବେଚିତ ହେବାରୁ ଏହି ଗ୍ରନ୍ଥକୁ ପ୍ରକାଶ କରିବାଲାଗି ମୁଁ ଉପାଚାର୍ଯ୍ୟ ମହୋଦୟଙ୍କୁ ଅନୁରୋଧ କଲି । ସୁଖର କଥା, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରୁ ଲେଖା ହେବାର ଠିକ୍ ବର୍ଷକ ପରେ ଏହା ଆଲୋକ ଦେଖିଲା ।

ଶ୍ରୀମାନ୍ ନରେନ୍ଦ୍ର ଉତ୍କଳ ସାହିତ୍ୟ କ୍ଷେତ୍ରରେ ନବ ଆଗନ୍ତୁକ ହେଲେହେଁ ଅପରିଚିତ ନୁହନ୍ତି । 'ଉତ୍କଳ ସାହିତ୍ୟ' ଓ 'ଝଙ୍କାର'ରେ ପ୍ରକାଶିତ କେତେକ ପ୍ରବନ୍ଧରୁ ତାଙ୍କ ସାଧନାର ଉଜ୍ଜ୍ୱଳ ସ୍ୱାକ୍ଷର ମିଳନ୍ତି । କାଶୀ ନାଗରୀ ପ୍ରଚାରିଣୀ ସଭା ତରଫରୁ ପ୍ରକାଶିତ ସ୍ମାରକ ଜୟନ୍ତୀ ସଂଖ୍ୟାରେ 'ଗତ ଷାଠିଏ ବର୍ଷରେ ଓଡ଼ିଆ ସାହିତ୍ୟ' ପ୍ରବନ୍ଧ ଲେଖି ସେ ଯଶସ୍ୱୀ ହୋଇ ଅଛନ୍ତି । 'ବଳରାମ ଦାସ ଓ ଦାଣ୍ଡିରାମାୟଣ' ତାଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ ହେଲେହେଁ ତାଙ୍କର ଜ୍ଞାନ ପରିସର ଓ ପରିଣତ ବିଚାର ବୁଦ୍ଧିର ପ୍ରଚୁର ପରିଚୟ ଦିଏ ।

ଏଥିରେ ସେ ଦାଣ୍ଡିରାମାୟଣ ସମ୍ପର୍କରେ ପୂର୍ବସୂରୀମାନଙ୍କ ବିବିଧ ଆଲୋଚନାର ଟିପ୍ପଣୀ, ମହାକବିଙ୍କ ଜୀବନୀ, ତାଙ୍କ ସମ୍ବନ୍ଧରେ ପ୍ରଚଳିତ କାହାଣୀ, କିମ୍ବଦନ୍ତୀ, ବାଲ୍ମୀକି ରାମାୟଣ ଓ ଏହି ରାମାୟଣ ମଧ୍ୟରେ

ବିଷୟଗତ ସାମ୍ୟ ବୈଷମ୍ୟ, ମହାକାବ୍ୟରୂପେ ଏହାର ରାମାୟଣରେ ପ୍ରତିଷ୍ଠା, ଲୋକରେ ଆଦର, ପ୍ରକୃତି ବର୍ଣ୍ଣନା ଓ ଚରିତ୍ର ଚିତ୍ରଣରେ କବିଙ୍କ ମୌଳିକତା, ଦେଶକାଳ, ଧର୍ମଧାରଣା, ନୀତିନିୟମ ପ୍ରଭୃତି ବହୁବିଧ ବିଷୟରେ ଆଲୋଚନା କରିଅଛନ୍ତି । ତାଙ୍କ ଆଲୋଚନାର ପରିଧି ବିସ୍ତୃତ, ଅଧ୍ୟୟନ ସୁଦୂର ପ୍ରସାରୀ, ଆହରଣରେ ଅଧ୍ୟବସାୟ ଓ ପରିବେଷଣରେ ସୁରୁଚି ଫୁଟିଛି, ଯଦିବା ବାକ୍ୟ ବିନ୍ୟାସରେ, ଶବ୍ଦ ପ୍ରୟୋଗରେ ସ୍ଥାନେ ସ୍ଥାନେ ତ୍ରୁଟି ବିଚ୍ୟୁତି ଘଟିଛି । ତାଙ୍କ ବିଚାରଧାରା ହୁଏତ ସ୍ଥାନେ ସ୍ଥାନେ ଯୁକ୍ତିପୁଷ୍ଟ ହୋଇନାହିଁ, ଅଭ୍ୟାସକ୍ଲିଷ୍ଟ ଅଂଶମାନ ସୁଖପାଠ୍ୟ ହୋଇ ନାହିଁ, ଅତି ପୁସ୍ତକ ନିର୍ଭରତାରେ ମୌଳିକ ପ୍ରବାହ ହୁଏତ କାହିଁ କାହିଁ ବ୍ୟାହତ ହୋଇଅଛି, ଚିନ୍ତାର ଅସ୍ୱଚ୍ଛତା, ପ୍ରକାଶ ଅସାମର୍ଥ୍ୟ କୌଣସି କୌଣସି ଅଂଶକୁ ବା ଦୁର୍ବୋଧ କରିଛି, ତଥାପି କି ଗ୍ରନ୍ଥର ସଜ୍ଜୀକରଣରେ, କି ବସ୍ତୁ ବିନ୍ୟାସରେ, କି ତତ୍ତ୍ୱବିଶ୍ଳେଷଣରେ, କି ସୁଦୃଢ଼ ଅଭିମତ ପ୍ରକାଶରେ ସର୍ବତ୍ର ବୈଜ୍ଞାନିକ ତଥା କଳାଶ୍ରୀପୂର୍ଣ୍ଣ ଅଭିନବ ଦୃଷ୍ଟିକୋଣର ଆଭାସ ମିଳେ ।

ଉଦ୍ଧୃତି ଲାଗି ଲେଖକ ପ୍ରାୟ ଶହେବର୍ଷ ତଳର ପୁରୁଣା ତାଳପତ୍ର ପୋଥି ବ୍ୟବହାର କରିଅଛନ୍ତି । ଏହା ବହୁଗୁଣରେ ପୁସ୍ତକର ଉପାଦେୟତା ବଢ଼ାଇ ଦେଇଅଛି । ବିଭିନ୍ନକାଳର ଓ ଭିନ୍ନ ଭିନ୍ନ ଅଞ୍ଚଳର ପାଣ୍ଡୁଲିପିମାନ ସଂଗ୍ରହ କରି ତୁଳନାତ୍ମକ ବିଚାର କରିଥିଲେ ଭଲ ହୋଇଥାନ୍ତା । ତାହା ସଂକଳୟିତାର କାର୍ଯ୍ୟ । ଏ ଗ୍ରନ୍ଥର ପରିସରରେ ଏଥିଲାଗି ହୁଏତ ଅବକାଶ ନାହିଁ ।

ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣାରେ ଏବେ ଶୈଶବାବସ୍ଥା ଉପସ୍ଥିତ ହୋଇଛି କି ନାହିଁ କହିବା ଦୁରୂହ । କେହି କେହି ସାହିତ୍ୟିକ କିଛି କିଛି ଗବେଷଣା କରୁଛନ୍ତି, କିନ୍ତୁ ଆମ ଜାତୀୟ ସଂସ୍କୃତିର ହୃତ୍‌ପିଣ୍ଡ— ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଏ ଦିଗରେ ବିଶେଷ ଚେଷ୍ଟା ହୋଇ ନାହିଁ । ଗବେଷଣା ଓ ସମାଲୋଚନା ଅଭାବରୁ ପ୍ରାଚୀନ ତଥା ଆଧୁନିକ ସାହିତ୍ୟର ମାନ ନିର୍ଦ୍ଧାରଣ କରିବା ଦୁଃସାଧ୍ୟ ହୋଇଅଛି । ଶ୍ରୀ ମିଶ୍ରଙ୍କର ଗ୍ରନ୍ଥ ଗବେଷଣାରେ ନୂତନ ମାର୍ଗ ନ ଦେଖାଇଲେ ମଧ୍ୟ ଏ ଦିଗରେ ଅଗ୍ରଗତିରେ ଯେ ଏକ ସୁଦୃଢ଼ ପଦକ୍ଷେପ, ଏହା ସହୃଦୟ ପାଠକ ସ୍ୱୀକାର କରିବେ ।

ବିଦ୍ୟାଭବନ, ଶାନ୍ତି ନିକେତନ
ତା ୨୯ । ୮ । ୫୫

ଡକ୍ଟର କୁଞ୍ଜବିହାରୀ ଦାଶ
ଏମ୍. ଏ. ପିଏଚ୍. ଡି.

## ସୂଚୀ

ବିଷୟ ପୃଷ୍ଠାଙ୍କ

୧ । ନିଜକଥା (୧)

୨ । ଗ୍ରନ୍ଥପ୍ରବେଶର ସୂଚନା (୩)

୩ । ଭୂମିକା (୨)

ପ୍ରଥମ ଭାଗ

୪ । ପ୍ରସ୍ତାବନା ୩—୧୪

ପୂର୍ବସୂତ୍ର—୩ । ପାଶ୍ଚାତ୍ୟ ପଣ୍ଡିତଙ୍କ ବାର୍ତ୍ତା—୩ । ହଣ୍ଟରଙ୍କ ଇତିହାସ—୪ । ମନମୋହନ ଚକ୍ରବର୍ତ୍ତୀଙ୍କ ଦୃଷ୍ଟି କୋଣ—୫ । ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରବନ୍ଧ—୮ । ବିଜୟଚନ୍ଦ୍ର ମଜୁମଦାର ଓ ଅନ୍ୟାନ୍ୟ ଆଲୋଚକଗଣ—୯ । ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ଆଲୋଚନା ପଣ୍ଡିତ ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଆଲୋଚନା—୧୧ । ବିଦେଶରେ ଆଲୋଚନା—୧୩ । ବର୍ତ୍ତମାନ ଆଲୋଚନାର ପରିସର—୨୧ । ଭବିଷ୍ୟତ ଆଲୋଚନାର ଇଙ୍ଗିତ—୧୪ ।

୫ । ଐତିହାସିକଭୂମିକା ୧୫—୨୨

ଓଡ଼ିଆ ସାହିତ୍ୟରେ ଭକ୍ତିଯୁଗ—୧୫ । ସମାଜ ସଂସ୍ଥାନ—୧୫ । ବ୍ରାହ୍ମଣ୍ୟ ସଂସ୍କୃତିର ଅଧୋଗତି—୧୬ । ଭକ୍ତି ଧର୍ମର ଅଭ୍ୟୁଦୟ—୧୭ । ଏ ଯୁଗର ଅଧିନେତାଗଣ—୧୯ । ରାଷ୍ଟ୍ର ସମ୍ପର୍କ—୨୦ । ଇତିହାସର ଇଙ୍ଗିତ—୨୧ ।

୬ । କବି ବଳରାମ ଦାସ ୨୩—୪୩

ଜୀବନୀ ଉପାଦାନ ଅନୁସନ୍ଧାନର ଦୁରୂହତା—୨୩ । ଉପାଦାନର ମୂଳ ଓ ପ୍ରକୃତି—୨୪ । ଭକ୍ତ କବିଙ୍କ ମହିମା—୨୬ । ସମସାମୟିକ ଓ ପରବର୍ତ୍ତୀ ବୈଷ୍ଣବ ସାହିତ୍ୟରେ ବଳରାମ ଦାସଙ୍କ ପ୍ରସଙ୍ଗ—୨୮ । ଶୂନ୍ୟ ସଂହିତା-ଅଚ୍ୟୁତାନନ୍ଦ ଦାସ—୨୮ । ଛତିଶ ଗୁପ୍ତଗୀତା—ଦ୍ୱିତୀୟ ବଳରାମ

ବିଷୟ ପୃଷ୍ଠାଙ୍କ

ଦାସ—୨୯ । ଜଗନ୍ନାଥ ଚରିତାମୃତ—ଦିବାକର ଦାସ—୩୦ । ଅଣାକାର ସଂହିତା—ନନ୍ଦ ଦାସ—୩୦ । ଦାର୍ଢ୍ୟତାଭକ୍ତି ରସାମୃତ—ରାମ ଦାସ—୩୧ । ଚୈତନ୍ୟ ଭାଗବତ—ଈଶ୍ୱର ଦାସ—୩୨ । ଓଡ଼ିଆ ସାହିତ୍ୟ ବାହାରେ ବଳରାମ ଦାସଙ୍କ ପ୍ରସଙ୍ଗ—୩୦ । ବ୍ରଜବୁଲି ପଦାବଳୀ। ବଳରାମ ଦାସ—୩୫ । ବଳରାମ ଦାସଙ୍କ ସମୟ ନିରୂପଣ—୩୬ । ଦାଣ୍ଡି ରାମାୟଣରେ ଆତ୍ମପରିଚୟ—୩୮ । ଭକ୍ତକବିଙ୍କ ଲୋକପ୍ରତିଷ୍ଠା—୪୩ ।

୭ । ଓଡ଼ିଆ ରାମାୟଣର ପୃଷ୍ଠଭୂମି ୪୪—୫୪

ଓଡ଼ିଆ ସାହିତ୍ୟରେ ପ୍ରଥମ ରାମଚରିତ—୪୪ । ଜନମୁଖୀ ଧାରା—୪୫ । ପ୍ରାଚୀନ ଶାସ୍ତ୍ରୀୟ ଆଧାର—୪୬ । ବୈଦିକ ସାହିତ୍ୟ—୪୭ । ବୌଦ୍ଧ ସାହିତ୍ୟ—୪୮ । ରାମାୟଣ ଓ ମହାଭାରତ—୪୮ । ପୌରାଣିକ ସାହିତ୍ୟ—୫୦ । ସାଂପ୍ରଦାୟିକ ରାମାୟଣ—୫୩ । ଲଳିତ ସାହିତ୍ୟ—୫୩ ।

୮ । ତୁଳନାତ ବାଲ୍ମୀକି ରାମାୟଣ ଓ ଦାଣ୍ଡି ରାମାୟଣ ୫୫—୬୮

ତୁଳନାତ୍ମକ ବିଚାରର ଆବଶ୍ୟକତା—୫୫ । ଉଭୟର ପାର୍ଥକ୍ୟ—୫୬ । ଆଦିକାଣ୍ଡ—୫୭ । ଅଯୋଧ୍ୟାକାଣ୍ଡ—୫୮ । ଆରଣ୍ୟକ କାଣ୍ଡ—୫୯ । କିଷ୍କିନ୍ଧ୍ୟା କାଣ୍ଡ—୬୦ । ସୁନ୍ଦରକାଣ୍ଡ—୬୧ । ଯୁଦ୍ଧ କାଣ୍ଡ—୬୩ । ଉତ୍ତରା କାଣ୍ଡ—୬୪ । ରାମଚରିତର ପରିସମାପ୍ତି—୬୫ । ଓଡ଼ିଆ ପାଠକଙ୍କ ପାଇଁ ଦାଣ୍ଡି-ରାମାୟଣ—୬୭ ।

## ଦ୍ୱିତୀୟ ଭାଗ

୯ । ଦାଣ୍ଡି ରାମାୟଣର ଅନୁଶୀଳନ—ସମାଜ ୭୧—୯୪

ଦାଣ୍ଡି ରାମାୟଣର ସମାଜ ଚିତ୍ର—୭୧ । ଲୋକାଚାର—୭୨ । ସମାଜର ନୈତିକ ଆଦର୍ଶ—୭୪ । ଗୃହଚର୍ଯ୍ୟା—୭୬ । ନାରୀ ପ୍ରସଙ୍ଗ—୭୭ । ଗୃହସ୍ଥଳୀର ଚିତ୍ର—୭୯ । ଓଡ଼ିଆର ଖାଦ୍ୟ—୮୧ । ବ୍ରାହ୍ମଣ ପ୍ରସଙ୍ଗ—୮୨ । ରାଜା

ବିଷୟ ପୃଷ୍ଠାଙ୍କ

ରାଜ୍ୟ ଓ ରାଜଧର୍ମ—୮୫ । ସମର ପ୍ରସଙ୍ଗ—୮୯ । ନାଗରିକତା—୯୧ । ପଲ୍ଲୀ ପରିବେଶ—୯୨ । ଅମ ସମାଜର ଇତିହାସ—୯୩ ।

୧୦ । ଦାଣ୍ଡି ରାମାୟଣର ଅନୁଶୀଳନ—ଧର୍ମ ୯୫—୧୧୮

ଧର୍ମ ସାଧନର ବ୍ୟାପକ ଦୃଷ୍ଟି—୯୫ । ଭକ୍ତିଧର୍ମର ପ୍ରାଚୀନତା—୯୬ । ଇତିହାସ—୯୮ । ଦାଣ୍ଡି ରାମାୟଣରେ ଭକ୍ତିମାର୍ଗ—୯୯ । ଦାଣ୍ଡି ରାମାୟଣରେ ଯୋଗପରମ୍ପରା—୧୦୫ । ଜ୍ଞାନ ଦୃଷ୍ଟି—୧୦୬ । ଲୋକଧର୍ମ ଓ ଲୋକ ବିଶ୍ୱାସ—୧୦୮ । ସମନ୍ୱୟ—୧୧୪ । ଭକ୍ତକବିଙ୍କ ପ୍ରତିଷ୍ଠା —୧୧୬ ।

୧୧ । ଦାଣ୍ଡି ରାମାୟଣର ଅନୁଶୀଳନ—ସାହିତ୍ୟ ୧୧୮—୧୧୯

ଦାଣ୍ଡି ରାମାୟଣର ବଶିଷ୍ଟ ପ୍ରକୃତି—୧୨୦ । ମହାକାବ୍ୟ— ୧୨୧ । ମୌଳିକ ଓ ସାହିତ୍ୟିକ ମହାକାବ୍ୟ—୧୨୨ । ମହାକାବ୍ୟର ଲକ୍ଷଣ—୧୨୩ । ଦାଣ୍ଡି ରାମାୟଣରେ ମହାକାବ୍ୟର ଲକ୍ଷଣ—୧୨୫ । ଚରିତ୍ର ଚିତ୍ରଣ—୧୨୬ । ଶୋକରସ—୧୩୧ । ପ୍ରକୃତି—୧୩୬ । କବିପ୍ରସିଦ୍ଧି —୧୪୨ । ପୌରାଣିକ ବ୍ୟାଖ୍ୟା—୧୪୨ । ନାରୀରୂପ ବର୍ଣ୍ଣନା—୧୪୩ । ସମ୍ଭୋଗରସ—୧୪୬ । ସଂଳାପ— ୧୪୯ । ଅଳଂକରଣ ଶୈଳୀ—୧୫୩ । ଦାଣ୍ଡିବୃତ୍ତ— ୧୫୪ । କବିଙ୍କ ବ୍ୟକ୍ତିତ୍ୱ—୧୫୬ । ମହାକାବ୍ୟର କବିତ୍ୱ —୧୫୬ । ମହାକାବ୍ୟର କବି—୧୫୭ ।

## ପରିଶିଷ୍ଟ

୧୨ । ଶ୍ରୀରାମ ଉପାସନା— ୧୬୧—୧୬୪

୧୩ । ଓଡ଼ିଆ ରାମ ସାହିତ୍ୟ (ଇତିହାସ) ୧୬୫—୧୭୪

ଓଡ଼ିଆରେ ରାମ ସାହିତ୍ୟର ପରମ୍ପରା—୧୬୫ । ବିଲଙ୍କା ରାମାୟଣ—୧୬୬ । ଦାଣ୍ଡି ରାମାୟଣ—୧୬୬ । ଟୀକା ରାମାୟଣ—୧୬୮ । ଅଧ୍ୟାତ୍ମ ରାମାୟଣ—୧୬୯ ।

ବିଷୟ ପୃଷ୍ଠାଙ୍କ

ବିଚିତ୍ର ରାମାୟଣ—୧୭୦ । ଅନ୍ୟାନ୍ୟ ରାମାୟଣ—୧୭୩ ।
ଦସ୍ୟୁ ରତ୍ନାକର କାହାଣୀ—୧୭୩ ।

୨୪ । ଓଡ଼ିଆ ରାମ ସାହିତ୍ୟ (ଆକୃତ ବୈଶିଷ୍ଟ୍ୟ)— ୧୭୫—୧୮୮

ଧର୍ମ ଓ ରସ ସାହିତ୍ୟ—୧୭୫ । ଲୋକ ସାହିତ୍ୟ ଓ
ବିଦଗ୍ଧ ସାହିତ୍ୟ—୧୭୬ । ଲୌକିକ ରାମ ସାହିତ୍ୟ—
୧୭୬ । ପୌରାଣିକ ରାମ ସାହିତ୍ୟ—୧୭୭ । ସନ୍ଦର୍ଭ
ପର୍ଯ୍ୟାୟରେ ରାମ ସାହିତ୍ୟ—୧୭୮ । ରାମ ସାହିତ୍ୟର
କାବ୍ୟିକ ରୂପ—୧୭୯ । ରାମ ସାହିତ୍ୟର ସଙ୍ଗୀତ ଓ
ନାଟ୍ୟ ରୂପ—୧୮୧ । କୋଇଲି ଓ ଚଉତିଶା—୧୮୧ ।
ପୋଇ ଓ ପଢ଼—୧୮୩ । ଲୀଳା ଓ ତାହାର ପରବର୍ତ୍ତୀ
ବିକାଶ—୧୮୪ । ରାମ ସାହିତ୍ୟର ଅମରପ୍ରଭାବ—୧୮୬ ।

୨୫ । ଆଧୁନିକ ଭାରତୀୟ ଭାଷାରେ ରାମ ସାହିତ୍ୟ ୧୮୯—୧୯୯

କେତୋଟି ବିଶିଷ୍ଟ ରାମାୟଣ—୧୮୯ । ତୁଳନାତ୍ମକ
ଆଲୋଚନାର ଉପଯୋଗିତା ଓ ଏଥିରେ ପ୍ରତିବନ୍ଧକ—
୧୯୦ । ଦାଣ୍ଡି ରାମାୟଣର ପ୍ରାଚୀନତା—୧୯୨ । ଏବର
କୃତ୍ତିବାସ ରାମାୟଣ—୧୯୨ । ରାମଚରିତ ମାନସ ଓ
ତୁଳସୀ ଦାସ—୧୯୩ । ଭକ୍ତିବାଦ ଓ ଧାର୍ମିକରଙ୍ଗ
—୧୯୪ । ଚରିତ୍ର ଚିତ୍ରଣ—୧୯୬ । ତୁଳସୀ ଦାସଙ୍କ
ସମାଜ—୧୯୭ । ତୁଳନାରେ ଦାଣ୍ଡି ରାମାୟଣର
ବିଶେଷତ୍ୱ ୧୯୭ ।

୨୬ । ସହାୟକ ଗ୍ରନ୍ଥପଞ୍ଜୀ ୨୦୦—୨୦୩

୨୭ । ସାଧାରଣ ନାମ-ସୂଚୀ ୨୦୫

# ପ୍ରସ୍ତାବନା

## ପୂର୍ବସୂରୀ—

ଓଡ଼ିଆ ସାହିତ୍ୟର ସମ୍ପୂର୍ଣ୍ଣ ଇତିହାସ ଏପର୍ଯ୍ୟନ୍ତ ଲେଖା ହୋଇ ନାହିଁ । ତେବେ ଅଳ୍ପ ବହୁତ ଏ ସମ୍ବନ୍ଧରେ ଯେଉଁଠି ଯାହା ଲେଖା ହୋଇଛି, ସେଥିରେ ଦାଣ୍ଡିରାମାୟଣ ଓ ବଳରାମ ଦାସଙ୍କ ବିଷୟ ଏକ ଅବିଚ୍ଛେଦ୍ୟ ଅଂଶ ବିଶେଷ ହୋଇ ରହିଅଛି । ଓଡ଼ିଆ ସାହିତ୍ୟରେ ଏହି କବି ଓ ଗ୍ରନ୍ଥର ସ୍ଥାନ କେତେ ବଡ଼, ଏଥିରୁ ତାହାର ସୂଚନା ମିଳେ । ଏବେ ଏଠାରେ ଏ ବିଷୟରେ ବିଭିନ୍ନ ଦିଗରୁ ଆଲୋଚନାର ଉଦ୍ୟମ ହେଉଅଛି । ପୂର୍ବବର୍ତ୍ତୀ ଆଲୋଚନା ସବୁ ଅତି ଖଣ୍ଡିତ । ସେଗୁଡ଼ିକ ହୁଏତ ସେଥିଲାଗି ଏଠାରେ ଏକ ବଡ଼ ପରିପୂରକ ଅଂଶ ହୋଇ ପାରିବ ନାହିଁ । କିନ୍ତୁ ଅତୀତ ତୁଳନାରେ ବର୍ତ୍ତମାନର କଳନା ସହଜ ହୁଏ । ଏଣୁ ଏହି ପରବର୍ତ୍ତୀ ଆଲୋଚନା ସମ୍ବନ୍ଧରେ କିଛିତ ଧାରଣା ଥିଲେ, ବର୍ତ୍ତମାନ ହେଉଥିବା ଆଲୋଚନାର ପ୍ରକୃତ ମୂଲ୍ୟ ନିରୂପଣ ସମ୍ଭବ ହେବ । ଅଧିକନ୍ତୁ ପୂର୍ବସୂରୀମାନେ ପରମ ସମ୍ମାନର ପାତ୍ର । ଏଥିଲାଗି ଦେଶ ବିଦେଶର ଯେଉଁ ପଣ୍ଡିତମାନେ ଓଡ଼ିଆ ସାହିତ୍ୟ ପ୍ରତି ଆପଣାର ଅସୀମ ପ୍ରେମର ପୁଣ୍ୟ ପ୍ରେରଣାରେ ପରିଚାଳିତ ହୋଇ ବଳରାମ ଦାସଙ୍କ ବିଷୟରେ ଲେଖନୀ ଚାଳନା କରିଅଛନ୍ତି, ପ୍ରଥମେ ସେମାନଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରିବା ଉଚିତ ।

## ପାଶ୍ଚାତ୍ୟ ପଣ୍ଡିତଙ୍କ କାର୍ଯ୍ୟ—

ଗତ ଶତକରେ ଭାରତବର୍ଷର ଇତିହାସ, ସାହିତ୍ୟ, ସଂସ୍କୃତିର ସବୁ ଦିଗରେ ପ୍ରଥମେ ପାଶ୍ଚାତ୍ୟ ପଣ୍ଡିତମାନେ ଆଲୋକପାତର ଉଦ୍ୟମ କରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ବି ଏହିମାନେ ଆଲୋଚନା ଆରମ୍ଭ କରିଥିଲେ । ବର୍ତ୍ତମାନ ଦୃଷ୍ଟିରେ ଦେଖିଲେ, ଏମାନଙ୍କ ଆଲୋଚନାକୁ

ହୁଏତ ବିଶେଷ ମୂଲ୍ୟ ଦେଇ ହେବ ନାହିଁ । କିନ୍ତୁ କେତେ ବଡ଼ ପ୍ରତିବନ୍ଧକ ଭିତରେ ଏମାନଙ୍କୁ ଆଗେଇବାକୁ ହୋଇଥିଲା, ତାହା ଭାବି ବସିଲେ ବିସ୍ମୟ ଲାଗେ । ଆମ ଦେଶ ଓ ସମାଜ ବିଷୟରେ ଏମାନଙ୍କର ଭଲ ଧାରଣା ନ ଥିଲା । ଭାଷା ଭଲଭାବରେ ଜଣା ନ ଥିଲା । ପୁଣି ଆଲୋଚନା ଲାଗି ତାଳପତ୍ର ପୋଥିଗୁଡ଼ିକୁ ପଢ଼ିବା ଅପେକ୍ଷା ପାଇବା ଅଦ୍ଭୁତ କଠିନ ଥିଲା । ତେଣୁ ଏହି ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଆଲୋଚନା କପଟେ ପ୍ରମାଦମୂଳକ ଓ ଅସଂପୂର୍ଣ୍ଣ ହେଉନା କାହିଁକି, ସେମାନେ ଆମର ଚିରସ୍ମରଣୀୟ ।

**ହଣ୍ଟରଙ୍କ ଇତିହାସ—**

ଆଧୁନିକ ଭାରତୀୟ ଭାଷା ସମ୍ବନ୍ଧରେ ଆଲୋଚନା ବେଳେ ବିମ୍ସ ଓ ଗ୍ରୀୟର୍ସନ ଓଡ଼ିଆ ଭାଷାର ଆଲୋଚନା କରିଥିଲେ । କିନ୍ତୁ ହଣ୍ଟର-ସାହେବ ଓଡ଼ିଆ ସାହିତ୍ୟର ଇତିହାସ ଦେବାକୁ ପ୍ରଥମେ ଉଦ୍ୟମ କରିଥିଲେ । ୧୮୭୨ ଖ୍ରୀ: ଅ: ରେ ପ୍ରକାଶିତ ନିଜର ଓଡ଼ିଶା ଇତିହାସ ଗ୍ରନ୍ଥର ଦ୍ୱିତୀୟ ଭାଗରେ ନବମ ପରିଶିଷ୍ଟରୂପେ ସେ ଓଡ଼ିଆ ସାହିତ୍ୟ ବିଷୟକ ଆଲୋଚନା ସନ୍ନିବିଷ୍ଟ କରିଥିଲେ । ଏଥିରେ ପ୍ରାଚୀନ ଓଡ଼ିଆ କବିମାନଙ୍କର ନାମ ଓ ଗ୍ରନ୍ଥର ଗୋଟିଏ ତାଲିକା ଦିଆ ହୋଇଅଛି । କବିମାନଙ୍କର ଆନୁମାନିକ କାଳ ନିର୍ଦ୍ଧାରଣ କରି ଯାଇଅଛି । ସେ ସମୟରେ ଓଡ଼ିଶାର କମିଶନର ରେଭେନ୍‌ସା ସାହେବଙ୍କଠାରୁ ଏ ବିବରଣୀ ସଂଗ୍ରହ କରିଥିବା କଥା ହଣ୍ଟର ଉଲ୍ଲେଖ କରିଛନ୍ତି । "ଲଢ଼େ ସିପାହୀ ନାମ ସେନାପତିର" ନ୍ୟାୟରେ ରେଭେନ୍‌ସାଙ୍କ ପଛରେ କାହାର ପ୍ରକୃତ ଶ୍ରମ ନିହିତ ଥିଲା, ତାହା ଏବେ ଜାଣିବାର ଉପାୟ ନାହିଁ । ଓଡ଼ିଆ ସାହିତ୍ୟର ଇତିହାସରେ ହଣ୍ଟରଙ୍କ ଏହି ଆଲୋଚନା ବଡ଼ ମୂଲ୍ୟବାନ୍ । କାରଣ ତାରିଣୀ ରଥ, ଜଗବନ୍ଧୁ ସିଂହ ଆଦି ଏହାକୁ ସେମାନଙ୍କ ଆଲୋଚନାର ଭିତ୍ତି ରୂପେ ଗ୍ରହଣ କରିଥିଲେ । ଏ ଋଣ ସେମାନେ ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ଜଗବନ୍ଧୁ ସିଂହଙ୍କ ଭାଷାରେ "ହଣ୍ଟର ସାହେବଙ୍କ ଅନୁଗ୍ରହରୁ ଆଜ ଆମ୍ଭେ-ମାନେ ପ୍ରାଚୀନ ଉତ୍କଳ ସାହିତ୍ୟର ଏ କେତେଖଣ୍ଡି ପୁସ୍ତକର ନାମ ଶୁଣିବାକୁ ପାଇଲୁ । ସେ ମହାତ୍ମାଙ୍କ ଲେଖାରେ କେତେକ ଭ୍ରମ ଥାଇପାରେ, ତଥାପି ଉତ୍କଳ ଅଜ ତାଙ୍କଠାରେ ଋଣୀ" (୧)।

(୧) ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ, ଖଣ୍ଡ—୧୯୨୯—ପୃ: ୯୫ ।

ପ୍ରକୃତରେ ଦେଖିଲେ, ବଳରାମ ଦାସଙ୍କ ବିଷୟରେ ବିଶେଷ କିଛି ଉପାଦାନ ହଣ୍ଟର ସଂଗ୍ରହ କରି ପାରି ନାହାନ୍ତି । ଏହି କବିଙ୍କର କୃତି ବୋଲି ସେ ବହୁ ଗ୍ରନ୍ଥର ତାଲିକା ଦେଉଛନ୍ତି । ଏହା ପ୍ରମାଦମୂଳକ । କବିଙ୍କୁ ସେ ୩୦୦ ବର୍ଷ ପୂର୍ବବର୍ତ୍ତୀ ବୋଲି କହୁଛନ୍ତି । କବିଙ୍କ ପ୍ରଧାନ କୃତି ଦାଣ୍ଡି ରାମାୟଣ ସମ୍ବନ୍ଧରେ ଲେଖିଛନ୍ତି—"ଏହି ନାମରେ ସଂସ୍କୃତ ଗ୍ରନ୍ଥର ଏହା ଓଡ଼ିଆ ରୂପାନ୍ତର ମାତ୍ର" (୧) । କେବଳ ନାମ ଜାଣି ଗ୍ରନ୍ଥ ବିଷୟରେ ଯାହା ଧାରଣା ହୋଇଛି, ତାହାହିଁ ହଣ୍ଟର ଲେଖିଥିବା ମନେ ହୁଏ ।

## ମନମୋହନ ଚକ୍ରବର୍ତ୍ତୀଙ୍କ ଦୃଷ୍ଟିକୋଣ—

ପୁରୀର ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ମନମୋହନ ଚକ୍ରବର୍ତ୍ତୀ ମହାଶୟ ୧୮୯୭ ଖ୍ରୀ:ଅ:ରେ 'ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ୍'ର ଗୋଟିଏ ବିଶେଷ ଅଧିବେଶନରେ 'ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ଟିପ୍ପଣୀ' (୨) ନାମରେ ଇଂରେଜୀରେ ଲେଖା ପ୍ରବନ୍ଧଟିଏ ପାଠ କରିଥିଲେ । ତାହା ୧୮୯୮ ଖ୍ରୀ: ଅ: ରେ ଉକ୍ତ ସୋସାଇଟିର ପତ୍ରିକାରେ କମିକ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧଟି ପଢ଼ିଲେ, ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଓ ବିକାଶକ୍ରମ ବିଷୟରେ ମୌଳିକ ଭାବରେ ଆଲୋଚନା ଲାଗି ଶ୍ରୀଯୁକ୍ତ ଚକ୍ରବର୍ତ୍ତୀ ଉଦ୍ୟମ କରିଥିବାର ମନେହୁଏ । କେବଳ ହଣ୍ଟରଙ୍କ ଉପାଦାନ ଉପରେ ନିର୍ଭର ନ କରି, ବହୁ ତାଳପତ୍ର ପୋଥିରୁ ଉପାଦାନ ସଂଗ୍ରହ କରିଥିବାର ସୂଚନା ବି ଏଥିରୁ ମିଳେ ।

ସାରଳା, ବଳରାମ ଓ ଜଗନ୍ନାଥ ଆଦିଙ୍କ ଧର୍ମଗ୍ରନ୍ଥ ତଥା ଓଡ଼ିଆ ସାହିତ୍ୟ ଅଭ୍ୟୁଦୟର କାରଣମାନ ଚକ୍ରବର୍ତ୍ତୀ ମହାଶୟ ନିର୍ଣ୍ଣୟ କରିଛନ୍ତି । ସେଥିରୁ ଉଲ୍ଲେଖଯୋଗ୍ୟ ହେଉଛି— ସାଧାରଣ ପାଠକଠାରେ ସଂସ୍କୃତ ବ୍ୟାକରଣ ଓ ଅଳଙ୍କାର ଶାସ୍ତ୍ରର ଦୁର୍ବୋଧତା, ସୌଖୀନ ସାହିତ୍ୟପ୍ରେମୀଙ୍କର

(୧) "An Oriya version of the Sanskrit epic of the same name"—W. W. Hunter's Orissa, Vol II, Appendix, IX, p. 200—1872

(୨) Notes on the language and literature of Orissa. J. A. S. B. No. 4—1898.

ସଂସ୍କୃତ ପାଠରେ ଅଶ୍ରଦ୍ଧା, ଜନ୍ମଗତ କୃଷ୍ଟି ହାସଲ ଲାଗି ଅବ୍ରାହ୍ମଣ ପଣ୍ଡିତ-ମାନଙ୍କର ସଂସ୍କୃତ ପାଠ ଓ ଦେଶୀଭାଷାରେ ଲେଖିବାର ଉଦ୍ୟମ, ଏ ଦିଗରେ ତେଲଗୁ ସାହିତ୍ୟର ଅଗ୍ରଗତି ଓ ଓଡ଼ିଆ ସାହିତ୍ୟ ଉପରେ ତାର ପ୍ରଭାବ, ବୈଷ୍ଣବଧର୍ମର ପ୍ରସାର ଲାଗି ବୈଷ୍ଣବ ଗୁରୁମାନଙ୍କର ପଣ୍ଡିତଙ୍କ ସହ ସଂସ୍କୃତରେ ତର୍କ ଓ ସାଧାରଣଙ୍କ ମଧ୍ୟରେ ଦେଶୀଭାଷାରେ ଉପଦେଶ ଦେବାର ଉଦ୍ୟମ, ସଂସ୍କୃତ ଅନଭିଜ୍ଞ ତଳଶ୍ରେଣୀର ବୈଷ୍ଣବ ଶିଷ୍ୟମାନଙ୍କର ଜ୍ଞାନ ସାଧନା ଓ ଦେଶୀଭାଷାରେ ଗ୍ରନ୍ଥ ରଚନାର ଉଦ୍ୟମ, ଏଥିଲାଗି ଦେଶରେ ବୈଷ୍ଣବ ଗୁରୁ ଓ ମହାନ୍ତମାନଙ୍କର ପ୍ରଭାବ ବିସ୍ତାର ସଙ୍ଗେ ସଙ୍ଗେ ଦେଶୀଭାଷାର ପ୍ରାଧାନ୍ୟ ବୃଦ୍ଧି, ମୁସଲମାନ ଶକ୍ତିର ପ୍ରତିଷ୍ଠା ଦ୍ୱାରା ରାଜଦରବାରରେ ପରିପୋଷିତ ହୋଇ ଦେଶୀଭାଷାକୁ ଘୃଣା କରୁଥିବା ବ୍ରାହ୍ମଣମାନଙ୍କ ପ୍ରତିପତ୍ତି ହ୍ରାସ ଇତ୍ୟାଦି ।

ଉକ୍ତ ଧର୍ମମୂଳକ ପୁରାଣ ଗ୍ରନ୍ଥଗୁଡ଼ିକର ସାଧାରଣ ପ୍ରକୃତି ଶ୍ରୀଯୁକ୍ତ ଚକ୍ରବର୍ତ୍ତୀ କହିଁର ବିସ୍ତାରିତ ଭାବରେ ଆଲୋଚନା କରିଅଛନ୍ତି । ତାଙ୍କ ମତରେ, "ଏହି ଗ୍ରନ୍ଥଗୁଡ଼ିକ ମୂଳ ସଂସ୍କୃତ ଗ୍ରନ୍ଥମାନଙ୍କ ଅକ୍ଷରିକ ଅନୁବାଦ ନୁହେଁ, ସଂକ୍ଷେପୀକରଣ ବା ସ୍ୱାଧୀନ ଅନୁସରଣରେ ଲେଖା । ଏ ପଦ୍ୟ ସ୍ୱଭାବତଃ ସରଳ, ଅନଳଂକୃତ, ଦୀର୍ଘ ଓ ବିରକ୍ତିକର । ଏଥିରେ ଅବଶ୍ୟ ସ୍ଥାନେ ସ୍ଥାନେ ସୁନ୍ଦର ବର୍ଣ୍ଣନା ଓ ରସାଳ ରଚନା ମିଳେ । ତଥାପି ଏହାକୁ ସାହିତ୍ୟଭାବରେ ଉଚ୍ଚସ୍ଥାନ ଦେଇ ହେବନାହିଁ । ତେବେ ଏଥିର ମହତ୍ତ୍ୱ ହେଉଛି, ପ୍ରଥମରେ, ଗୋଟିଏ ପ୍ରବଳ ଧର୍ମବିଶ୍ୱାସୀ ଜାତିକୁ ଧାର୍ମିକ ଓ ପୌରାଣିକ କାହାଣୀମାନ ଏହା ଯୋଗାଇ ଆସିଅଛି; ସବୁଜାତିର ଲୋକଙ୍କୁ ସର୍ବଦା ପ୍ରଭାବିତ କରି ଆସିଅଛି । ଅସୀମ ଆଗ୍ରହରେ ପିଲାମାନେ ଏ କାହାଣୀ ଶୁଣନ୍ତି, ବୟସ୍କମାନେ ଏହା ଶିଖି ନିଜମଧ୍ୟରେ ଆଲୋଚନା କରନ୍ତି, ନାରୀ ଓ ବୃଦ୍ଧମାନେ ପୂର୍ଣ୍ଣ ଆଗ୍ରହରେ ନିଶ୍ଚଳଭାବରେ ଏହାକୁ ମାସ ମାସ ଧରି ଶୁଣନ୍ତି । କାରଣ ଇହଜନ୍ମରେ ପୁଣ୍ୟ ଆଉ ମୃତ୍ୟୁପରେ ସ୍ୱର୍ଗଲାଭ ଲାଗି ଏହାକୁ ଆଦ୍ୟସୋପାନ ବୋଲି ସେମାନେ ମନେ କରନ୍ତି । ଦ୍ୱିତୀୟରେ, ଓଡ଼ିଆ ସାହିତ୍ୟର ବିକାଶ ପଥରେ ଏଗୁଡ଼ିକ ପ୍ରଥମ ନିଶାଣଖୁଣ୍ଟି । ଏହା ପୂର୍ବରୁ ଓଡ଼ିଆ ଗୋଟିଏ ଅଜ୍ଞାତ, ଅବହେଳିତ, ଶବ୍ଦସମ୍ଭାରଦରିଦ୍ର, ଆଦରହୀନ ଭାଷା ଥିଲା । ଏହି ଧାର୍ମିକ କବିଗଣ ଏହାକୁ ଲାଳନ କଲେ, ଆହରଣ ଓ ଉଦ୍ଭାବନରେ

ଶବ୍ଦସମୃଦ୍ଧ ତଥା ସୌନ୍ଦର୍ଯ୍ୟଶାଳୀ କଲେ । ସେମାନେ ଦେଖାଇ ଦେଲେ, ଗୂଢ଼ ଭାବରାଶି ଓ ସୂକ୍ଷ୍ମ ଅନୁଭୂତିରାଜି ପ୍ରକାଶ ଲାଗି ଓଡ଼ିଆ ଭାଷା ଅସମର୍ଥ ନୁହେ । ଏମାନେ ନିଜର ଅସମ୍ପୂର୍ଣ୍ଣ ଉଦ୍ୟମ ଦ୍ୱାରା ଭବିଷ୍ୟତକୁ ବିଚିତ୍ର କାବ୍ୟ ରଚନା ଲାଗି ଏ ଭାଷାକୁ ଉପଯୋଗୀ କରିବାକୁ ସକ୍ଷମ ହେଲେ । ବସ୍ତୁତଃ ଦୀନକୃଷ୍ଣ, ଉପେନ୍ଦ୍ର ଆଦି ପରବର୍ତ୍ତୀ କବିମାନଙ୍କ ଲାଗି ଏଥିଦ୍ୱାରା ପଥ ନିର୍ମିତ ହୋଇଥିଲା । ଓଡ଼ିଆ ବୌଦ୍ଧିକ ବିକାଶର କୌଣସି ଆଲୋଚନାରେ ଯଦି ଏହି ମହାନ୍ ଗ୍ରନ୍ଥ ଗୁଡ଼ିକର କିଞ୍ଚିତ ବିବରଣୀ ନ ରହେ, ତେବେ ତାହା ସମ୍ପୂର୍ଣ୍ଣ ହେବ ନାହିଁ"(୧) । ଓଡ଼ିଆ ପୁରାଣ ଗ୍ରନ୍ଥଗୁଡ଼ିକର ଜନପ୍ରିୟତା ସମ୍ବନ୍ଧରେ ଶ୍ରୀଯୁକ୍ତ ଚକ୍ରବର୍ତ୍ତୀ ମହାଶୟଙ୍କ ଉକ୍ତି ବହୁ ପରିମାଣରେ ଯୁକ୍ତିସଙ୍ଗତ । କିନ୍ତୁ ଏହାର 'ସାହିତ୍ୟ-ମୂଲ୍ୟ' ସମ୍ବନ୍ଧରେ ସେ ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି, ତାହା ସବୁଠାରେ ସତ୍ୟ ମନେ ହୁଏ ନାହିଁ; ଅନ୍ତତଃ ଦାଣ୍ଡି ରାମାୟଣ ପକ୍ଷରେ ଏହା କଦାପି ସତ୍ୟ ହୋଇ ନ ପାରେ । ଏହି କବିମାନଙ୍କର ଅନଳଂକୃତ କାବ୍ୟଧାରାରେ ଯେଉଁ ସ୍ୱାଭାବିକ କବିତ୍ୱ ସ୍ଫୂର୍ତ୍ତିର ପୁଷ୍କଳ ପ୍ରକାଶ ଘଟିଛି, ତାହାର ମର୍ମ ବୁଝିବାକୁ ସେ ଯଥାର୍ଥ ପ୍ରୟାସ କରି ନାହାନ୍ତି, କରିଥିଲେ ବୁଝିବାକୁ ସମର୍ଥ ହୋଇ ନାହାନ୍ତି ।

କବି ବଳରାମ ଦାସଙ୍କ ବିଷୟରେ ଆଲୋଚନା କରିବାକୁ ଯାଇ ପ୍ରଥମେ ସମୟ ନିର୍ଦ୍ଧାରଣ ଲାଗି ଚେଷ୍ଟା କରିଛନ୍ତି । ୧୬୫୭ ଖ୍ରୀ: ଅ: ର ଗୋଟିଏ ପାଣ୍ଡୁଲିପି ଓ ବୈଦେହୀଶ ବିଳାସରେ ବଳରାମଙ୍କ ପ୍ରସଙ୍ଗକୁ ଏଥିଲାଗି ସେ ବ୍ୟବହାର କରିଛନ୍ତି । ଦାଣ୍ଡି ରାମାୟଣର ଭଣିତା ଓ ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ'ର ତଥ୍ୟକୁ ଅବଲମ୍ବନ କରି କବିଙ୍କ ଜୀବନୀ ସମ୍ବନ୍ଧରେ କିଞ୍ଚିତ ଆଲୋଚନା କରିଛନ୍ତି । ହଣ୍ଟରଙ୍କ ତାଲିକାରୁ ସମାଲୋଚନା ଦୃଷ୍ଟିରେ କେତୋଟି ଗ୍ରନ୍ଥକୁ ବଳରାମ ଦାସଙ୍କ ରଚନା ବୋଲି ଗ୍ରହଣ କରି ସେଗୁଡ଼ିକର ସଂକ୍ଷିପ୍ତ ପରିଚୟ ଦେଇଛନ୍ତି । ଦାଣ୍ଡି ରାମାୟଣ ବିଷୟରେ ଲେଖିଛନ୍ତି—ଗୋଟିଏ ପ୍ରକାର ପଦ୍ୟ ରୀତିରେ ସରଳ ଭାବରେ ଏହା ରଚିତ । ଭାଷାର ବିଶେଷତ୍ୱ ସମ୍ବନ୍ଧରେ କିଛି ସୂଚନା ଦେଇ, ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଉପରେ ଏହାର ପ୍ରଭାବ ଦେଖାଇବାକୁ ଯତ୍ନ କରିଅଛନ୍ତି । ବୈଦେହୀଶ ବିଳାସ, ବିଚିତ୍ରରାମାୟଣ

(୧) J. A. S. B. 1898—No 4, page. 344.

ଓ ସଦାଶିବ ଦାସଙ୍କ ରାମଲୀଳା ଉପରେ ଦାଣ୍ଡି ରାମାୟଣର ବିଷୟଗତ ପ୍ରଭାବ ସେ ଲକ୍ଷ୍ୟ କରିଅଛନ୍ତି (୧)।

ପୂର୍ବବର୍ତ୍ତୀ ଆଲୋଚନାର ସ୍ୱଳ୍ପତା ଓ ଅଗଭୀରତା ଦୃଷ୍ଟିରୁ ଶ୍ରୀଯୁକ୍ତ ଚକ୍ରବର୍ତ୍ତୀ ମହାଶୟଙ୍କ ଉଦ୍ୟମ ବିଶେଷ ପ୍ରଶଂସନୀୟ । କିନ୍ତୁ କବି ବଳରାମ ଦାସ ବା ଦାଣ୍ଡି ରାମାୟଣ ବିଷୟରେ ବିଶଦ ଆଲୋଚନା ଲାଗି ଏହି ସ୍ୱଳ୍ପକାୟ ପ୍ରବନ୍ଧ ମଧ୍ୟରେ ସେ ଯଥେଷ୍ଟ ଅବସର ପାଇ ନାହାନ୍ତି । ଏଥିରୁ କବିଙ୍କର ଧର୍ମମତ, ସମାଜଚିନ୍ତା ବା ସାହିତ୍ୟ ସମ୍ବନ୍ଧରେ କୌଣସି ସ୍ପଷ୍ଟ ଧାରଣା ମିଳିବା ସମ୍ଭବ ନୁହେଁ ।

## ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରବନ୍ଧ (୨)—

ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁଙ୍କର "ବଳରାମ ଦାସ ( ରାମାୟଣ-ରଚୟିତା )" ପ୍ରବନ୍ଧ ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ । ଏହି ପ୍ରବନ୍ଧ ରାଜଗୁରୁ ମହାଶୟ କେବେ ରଚନା କରିଥିଲେ ତାହା ଏବେ ଠିକ୍ ଭାବେ କହି ହେଉ ନାହିଁ । ତେବେ ଗ୍ରନ୍ଥାକାରରେ ରାଜଗୁରୁଙ୍କର ସମସ୍ତ ପ୍ରବନ୍ଧ ତାଙ୍କ ମୃତ୍ୟୁର ଆଠବର୍ଷ ପରେ ୧୯୧୭ ମସିହାରେ ପ୍ରକାଶିତ ହୋଇଥିଲା । ରାଜଗୁରୁଙ୍କ ପ୍ରବନ୍ଧର ବିଶେଷତ୍ୱ ହେଉଛି—ସେ ମୁଖ୍ୟତଃ ଦାଣ୍ଡି ରାମାୟଣର କବି ଭାବରେହିଁ ବଳରାମ ଦାସଙ୍କ ବିଚାର କରିଅଛନ୍ତି । ବଙ୍ଗଳାର କୃତ୍ତିବାସ, ଉତ୍ତରଭାରତର ତୁଳସୀ ଦାସ ଓ ଦକ୍ଷିଣ ଭାରତର କାମ୍ବରଙ୍କ ତୁଳନାରେ ବଳରାମ ଦାସଙ୍କୁ ଉତ୍କଳର ବାଲ୍ମୀକି ବୋଲି କହୁଛନ୍ତି । 'ଗୁପ୍ତଗୀତା', ଲଙ୍କା-କାଣ୍ଡର ଭଣିତ ଓ 'ଦାର୍ଢ୍ୟତାଭକ୍ତି ରସାମୃତ' ଆଦିର ଉପାଦାନ ଅବଲମ୍ବନରେ କବିଙ୍କ ଜୀବନୀ ସଙ୍କଳନର ଉଦ୍ୟମ କରିଅଛନ୍ତି । କାଳ ନିର୍ଣ୍ଣୟ କରିବାକୁ ଯାଇ ଚୂଡ଼ଙ୍ଗଗଡ଼ର ରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ୧୬ଶ ଶତକରେ କବି ଜୀବିତ ଥିବାର ସିଦ୍ଧାନ୍ତ ସେ କରି ପାରିଛନ୍ତି । କିନ୍ତୁ

---

(୧) ଚକ୍ରବର୍ତ୍ତୀ ମହାଶୟ 'ହରିହର ଦାସ'ଙ୍କ 'ବିଚିତ୍ର ରାମାୟଣ ବୋଲି ଲେଖିଛନ୍ତି । ବିଚିତ୍ର ରାମାୟଣରେ ମିଳୁଥିବା ବହୁନାମର ଭଣିତାରୁ 'ହରିହର ଦାସ' ଗୋଟିଏ ନାମ ହୋଇ ପାରେ ।

(୨) ପ୍ରବନ୍ଧାବଳୀ—ଶ୍ୟାମସୁନ୍ଦର ରାଜଗୁରୁ । ପାରଳା ରାଜାଧିରାଜ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦ୍ୱାରା ପ୍ରକାଶିତ, ୧୯୧୭—ପୃଃ ୫୭—୭୨

ପଞ୍ଚସଖାଙ୍କ ଆପେକ୍ଷିକ କାଳ ନିର୍ଣ୍ଣୟର କୌଣସି ସିଦ୍ଧାନ୍ତରେ ସେ ପହଞ୍ଚି ପାରି ନାହାନ୍ତି । ସେଥିଲାଗି ଉତ୍ତରକାଣ୍ଡର ନିମ୍ନ ପଂକ୍ତିଟିକୁ ସେ ଭୁଲ ଭାବରେ ଅର୍ଥ କରିଛନ୍ତି । "ଜଗନ୍ନାଥଙ୍କର ଦାସର ଅଟଇ ମୁଁ ଭୃତ୍ୟ" ଏ ପଂକ୍ତିଟି କବିଙ୍କର ଜଗନ୍ନାଥ ଭକ୍ତିର ପରିଚାୟକ । କିନ୍ତୁ ଏଥିରୁ କବି ଜଗନ୍ନାଥ ଦାସ ବଳରାମ ଦାସଙ୍କର ଗୁରୁ ଥିବା କଥା ସେ ଅନୁମାନ କରିଅଛନ୍ତି । ରାମାୟଣରେ ନାରୀରୂପ ବର୍ଣ୍ଣନାମାନ ଓ ରାମଦାସଙ୍କ ଦାର୍ଢ୍ୟତାଭକ୍ତିରେ ବଳରାମ ଦାସଙ୍କ ବେଶ୍ୟାଘର ଯିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଥିବାର ଦେଖି କବିଙ୍କ ଚରିତ୍ର ମନ୍ଦ ଥିଲା ବୋଲି ରାଜଗୁରୁ ମହାଶୟ ପ୍ରତିପାଦନ କରିଅଛନ୍ତି । ଏହା ଯୁକ୍ତିଯୁକ୍ତ ମତ ନୁହେଁ ନାହିଁ । ରାମାୟଣର ନାରୀରୂପ ବର୍ଣ୍ଣନା ଉପରେ ରାଜଗୁରୁଙ୍କ ମନ୍ତବ୍ୟ ପରମ୍ପରାର ପ୍ରଭାବକୁ ଧାରଣାରେ ରଖି କରା ହୋଇ ନାହିଁ । ପୁଣି ରାମଦାସଙ୍କ ଦାର୍ଢ୍ୟତାଭକ୍ତିକୁ ଏତେ ଗୁରୁତ୍ୱ ଦେବାର କାରଣ ସେ ଦେଇ ନାହାନ୍ତି । ତଥାପି ସାରଳା ଦାସଙ୍କ ତୁଳନାରେ ରାମାୟଣକାର କବିଙ୍କ କବିତ୍ୱ, ଭାଷା ଓ ଛନ୍ଦ ବିଷୟରେ ଉପଯୁକ୍ତ ଉଦାହରଣ ସହ ରାଜଗୁରୁ ମହାଶୟ ଯେଉଁ ଆଲୋଚନା କରିଅଛନ୍ତି ତାହା ଯେତେ ସଂକ୍ଷିପ୍ତ ହେଉନା କାହିଁକି ପରବର୍ତ୍ତୀ ଆଲୋଚନା ପାଇଁ ମୂଲ୍ୟବାନ ଅଟେ ।

### ବିଜୟଚନ୍ଦ୍ର ମଜୁମଦାର ଓ ଅନ୍ୟାନ୍ୟ ଆଲୋଚକଗଣ—

୧୯୨୧ ମସିହାରେ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ମହାଶୟ ସୋନପୁରର ମହାରାଜା ବୀର ମିତ୍ରୋଦୟ ସିଂହଙ୍କ ପୃଷ୍ଠପୋଷକତାରେ କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ "ଓଡ଼ିଆ ସାହିତ୍ୟରୁ ଏକ ପ୍ରତିନିଧି ସ୍ଥାନୀୟ ସଂକଳନ" (Typical selections from Oriya literature) ପ୍ରକାଶ କରିଥିଲେ । ଏହି ସଙ୍କଳନର ପ୍ରଥମଭାଗରେ ସେ ଦାଣ୍ଡିରାମାୟଣକୁ କେବଳ ପ୍ରାଧାନ୍ୟ ଦେଇ ନାହାନ୍ତି, ବରଂ ଇଂରେଜୀ ଭୂମିକାରେ ବଳରାମ ଦାସ ଓ ଦାଣ୍ଡିରାମାୟଣ ବିଷୟରେ ଅଳ୍ପବିସ୍ତର ଆଲୋଚନା ମଧ୍ୟ କରିଅଛନ୍ତି । ଶ୍ରୀଯୁକ୍ତ ମନମୋହନ ଚକ୍ରବର୍ତ୍ତୀ ସାରଳା ଦାସ ଓ ବଳରାମ ଦାସଙ୍କ ଆପେକ୍ଷିକ କାଳ ନିର୍ଣ୍ଣୟରେ ଯେଉଁ ଭ୍ରମ କରିଥିଲେ, ସେ ତାହାର ନିରାକରଣ କରିପାରିଛନ୍ତି (୧) । କବିଙ୍କ ଜୀବନୀ ସମ୍ବନ୍ଧରେ ଗୁପ୍ତଗୀତା ଓ

---

(୧) ଚକ୍ରବର୍ତ୍ତୀ ମହାଶୟ ବଳରାମ ଦାସଙ୍କୁ ସାରଳା ଦାସଙ୍କ ପୂର୍ବବର୍ତ୍ତୀ ମନେକରିଥିଲେ । ଦ୍ରଷ୍ଟବ୍ୟ—J.B.A.S, 1898—p.332. ଓ T.S.O.L. XXII. Vol. I.

ଦାଣ୍ଡି ରାମାୟଣର ଭଣ୍ଡାରୁ ମିଳୁଥିବା ତଥ୍ୟଗୁଡ଼ିକର ସେ ଯଥାଯଥ ବିଶ୍ଳେଷଣ କରିଅଛନ୍ତି । ଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ତରୁଣ ବଳରାମ ଗୃହସ୍ଥାଶ୍ରମରେ ରାମାୟଣ ରଚନା କରିଥିବା କଥା ଉଲ୍ଲେଖ କରିଛନ୍ତି । ବଳରାମ ଦାସଙ୍କ ରାମାୟଣର ସହଜ ଓ ସ୍ୱାଭାବିକ କବିତ୍ୱର ମର୍ମ ସେ ଠିକ୍ ଭାବରେ ହୃଦୟଙ୍ଗମ କରିପାରିଥିବା ମନେ ହୁଏ । ସଂସ୍କୃତ ଗ୍ରନ୍ଥର ଅନୁକରଣ ବା ଅନୁସରଣ ଭାବରେ ନୁହେ, ସାରଳା ବଳରାମ ଆଦିଙ୍କ କୃତିକୁ ମୌଳିକ ଗ୍ରନ୍ଥଶ୍ରେଣୀରେ ବିଚାର କରିବା ଉଚିତ ବୋଲି ତାଙ୍କର ଦୃଢ଼ ମନ୍ତବ୍ୟରୁ ଏହା ସ୍ପଷ୍ଟ ହୁଏ (୧) । ସେ ଆଲୋଚିତ କବିଙ୍କ ବିଷୟରେ ଯଥାର୍ଥ କହୁଛନ୍ତି—"ଜାତୀୟ କବି ଭାବରେ ବଳରାମ ଦାସ ଲୋକଙ୍କ ପାଇଁ ଗାଇଛନ୍ତି, ଓଡ଼ିଶାକୁ ପୃଥିବୀର ଏକ ସଂକ୍ଷିପ୍ତସାର ରୂପେ ପ୍ରତିପାଦିତ କରି ଆପଣା ଦେଶବାସୀଙ୍କୁ ସ୍ୱଦେଶ ପ୍ରେମ ଶିଖାଇଛନ୍ତି" (୨) । ସଙ୍କଳନରେ ରାମାୟଣରୁ ଉପଯୁକ୍ତ ଅଂଶ ନିର୍ବାଚନ ଓ ମୁଖବନ୍ଧରେ ଆଲୋଚନା ସନ୍ନିବିଷ୍ଟ କରି କବିଙ୍କର ପ୍ରଧାନ କୃତିର ମହତ୍ତ୍ୱ ସେ ସ୍ୱୀକାର କରିଅଛନ୍ତି । ତଥାପି ଆଲୋଚନାର ସଂକ୍ଷିପ୍ତ ପରିସର ଭିତରେ ବଳରାମ ଦାସଙ୍କ କବିତ୍ୱର ବିଭିନ୍ନ ଦିଗର ସୂଚନା ଦେବାକୁ ଅବସର ପାଇ ନାହାନ୍ତି ।

ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା ପ୍ରସଙ୍ଗରେ ସ୍ୱର୍ଗୀୟ ତାରିଣୀ ରଥ ଓ ଜଗବନ୍ଧୁ ସିଂହ ବଳରାମ ଦାସଙ୍କ ପ୍ରସଙ୍ଗରେ କେତେକ ଆଲୋଚନା କରିଅଛନ୍ତି । ରାମାୟଣର କବି ରୂପେ ବଳରାମ ଦାସଙ୍କୁ ଏମାନେ କୌଣସି ବିଶେଷତ୍ୱ ଦେଇ ନାହାନ୍ତି । ହଣ୍ଟରଙ୍କ ଇତିହାସ ପ୍ରଦତ୍ତ ଉପାଦାନ ଏମାନଙ୍କ ଆଲୋଚନାର ଭିତ୍ତି ରୂପେ ବହୁ ପରିମାଣରେ ଅବଲମ୍ବିତ । ତେବେ ଜଗବନ୍ଧୁ ସିଂହ କବିଙ୍କ ଜୀବନୀ ଆଲୋଚନା ପ୍ରସଙ୍ଗରେ ଲୋକପ୍ରଚଳିତ କିଂବଦନ୍ତୀଗୁଡ଼ିକ ପ୍ରତି ଧ୍ୟାନ ଦେଇ ଦୂରଦୃଷ୍ଟିର ପରିଚୟ ଦେଇଛନ୍ତି । ତାଙ୍କ ପ୍ରଦତ୍ତ 'ଏବରଙ୍ଗ' ମଠ ସମ୍ବନ୍ଧୀୟ ବିବରଣୀ

(୧) 'None of these works is a translation; the authors have retold the Ramayan, the Bhagabat Puran and Mahabharata in their own way, and they may be regarded as the original works of the authors. T.S.O.L. Introduction to Vol. I—XXII.

(୨) Ibid. page XXV.

ଉଲ୍ଲେଖ ଯୋଗ୍ୟ (୧)। ପଣ୍ଡିତ ବିନାୟକ ମିଶ୍ରଙ୍କର "ଓଡ଼ିଆ ସାହିତ୍ୟ ଇତିହାସ"ରେ ବଳରାମ ଦାସଙ୍କ ବିଷୟକ ଆଲୋଚନା ସାମାନ୍ୟ ପରିବର୍ତ୍ତିନ ବ୍ୟତୀତ ମଜୁମଦାରଙ୍କ ଆଲୋଚନାକୁ ଅନୁସରଣ କରିଅଛି (୨) । ବିନାୟକ ମିଶ୍ରଙ୍କ ଇତିହାସଟି ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ୍‌ଙ୍କ ଓଡ଼ିଶା ଇତିହାସର ପରିଶିଷ୍ଟ ପ୍ରଦତ୍ତ ଓଡ଼ିଆ ସାହିତ୍ୟ ଶୀର୍ଷକ ଆଲୋଚନାର ଅବଲମ୍ବନ । ଏଥିରେ କୌଣସି ନୂତନ ଉପାଦାନ ନ ରହିବା ସ୍ୱାଭାବିକ (୩) । "ଓଡ଼ିଶାରେ ମଧ୍ୟକାଳୀନ ବୈଷ୍ଣବଧର୍ମର ଇତିହାସ" (୪) ନାମରେ ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ଇଂରେଜୀ ଭାଷାରେ ଏକ ଗ୍ରନ୍ଥ ରଚନା କରିଛନ୍ତି । ଏଥିରେ ବଳରାମ ଦାସଙ୍କୁ ଜଣେ ପ୍ରଧାନ ମଧ୍ୟକାଳୀନ ବୈଷ୍ଣବ ଲେଖକ ବୋଲି ଗ୍ରହଣ କରି କବିଙ୍କର କେତୋଟି କୃତିର ସଂକ୍ଷିପ୍ତ ପରିଚୟ ଦେଇଅଛନ୍ତି । ଦାଣ୍ଡି ରାମାୟଣ ବିଷୟରେ ଏଥିରେ କୌଣସି ଉଲ୍ଲେଖଯୋଗ୍ୟ ଆଲୋଚନା ନାହିଁ ।

## ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ଆଲୋଚନା ପଦ୍ଧତି ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଆଲୋଚନା—

ବଳରାମ ଦାସ ଓ ଦାଣ୍ଡି ରାମାୟଣ ବିଷୟରେ ଏପର୍ଯ୍ୟନ୍ତ ଯେଉଁସବୁ ଆଲୋଚନା ହୋଇଛି, ସେଥିମଧ୍ୟରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କର 'ଓଡ଼ିଆ ସାହିତ୍ୟ ପରିଚୟ'ରେ ପ୍ରଦତ୍ତ ଆଲୋଚନା ହିଁ ସବୁଠାରୁ ବିସ୍ତୃତ (୫) । ଜୀବନୀ ଓ ସମୟ ନିରୂପଣ ଲାଗି କବିଙ୍କ ନାମରେ ଭଣିତ ସମସ୍ତ ଗ୍ରନ୍ଥ, ସମସାମୟିକ ଓ ପରବର୍ତ୍ତୀ ସାହିତ୍ୟର ଉପାଦାନମାନ ସେ ବିନିଯୋଗ କରିଅଛନ୍ତି । କବିଙ୍କ ନାମରେ ଭଣିତ ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକର

---

(୧) ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ; ଖ୍ରୀ : ଅ : ୧୯୨୯ : ପୃ—୧୨୭

(୨) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର —ପୃ ୪୨-୪୭

(୩) ଓଡ଼ିଶାର ଇତିହାସ—ହରେକୃଷ୍ଣ ମହତାବ—୧୯୪୮ ଖ୍ରୀ: ଅ: ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ—ପରିଶିଷ୍ଟ—ଗ-ପୃ : ୪୦୭

(୪) The History of Medieval Vaishnavism in Orissa—1940, Chap. VI. page. 75.

(୫) ଓଡ଼ିଆ ସାହିତ୍ୟର ପରିଚୟ [ପ୍ରଥମଖଣ୍ଡ] ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଦ୍ୱିତୀୟ ସଂସ୍କରଣ—୧୯୫୧, ପୃ ୨୧୭—୨୩୭

ପରିଚୟ ଦେବାବେଳେ ଦାଣ୍ଡି ରାମାୟଣରେ ପରିଚୟ ଟିକଏ ବିସ୍ତାରିତ ଭାବରେ ଦେଇଅଛନ୍ତି । ଏଠାରେ ଶ୍ରୀଯୁକ୍ତ ଦାସ ବଳରାମ ଦାସଙ୍କ ରାମାୟଣର ଆଲୋଚନା ଲାଗି ଯେଉଁ ରୀତି ଗ୍ରହଣ କରିଅଛନ୍ତି, ତାହା ମୁଖ୍ୟତଃ ସାରଳା ଦାସଙ୍କ ମହାଭାରତର ଆଲୋଚନା ଲାଗି ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ଗୃହୀତ ପନ୍ଥାର ଅନୁସରଣ । ଆପଣା ଆଲୋଚନା ପଦ୍ଧତି ସମ୍ବନ୍ଧରେ ନନ୍ଦ ଶର୍ମା ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି, "ପ୍ରଥମତଃ ମୂଳଗ୍ରନ୍ଥକୁ (ସଂସ୍କୃତ ଗ୍ରନ୍ଥକୁ) ଜ୍ଞାନର ସମ୍ମୁଖରେ ଆଦର୍ଶ କରି ରଖିବାକୁ ହୁଏ; ଅଥଚ ସମାଲୋଚ୍ୟ ଗ୍ରନ୍ଥଟିର ଆମୂଳାନ୍ତ ନିର୍ବିଶେଷ ଭାବରେ ସମ୍ୟକ୍ ପଠନ ଓ ମନନ କରିବାକୁ ହୁଏ" (୧) । ଏଭଳି ଆଲୋଚନା ବିଭିନ୍ନ ସମୟରେ ଓ ଭିନ୍ନ ପରିବେଶରେ ଲିଖିତ ଦୁଇଟି ଗ୍ରନ୍ଥର ତୁଳନାତ୍ମକ ବିଶ୍ଳେଷଣରେ ହିଁ ସୀମିତ ରହେ । ଅଥଚ ଆଲୋଚ୍ୟ ଗ୍ରନ୍ଥର ପ୍ରକୃତ ମୂଲ୍ୟ ନିରୂପଣ ଲାଗି ସୁଯୋଗ ମିଳେ ନାହିଁ । ସାରଳା ମହାଭାରତ ଆଲୋଚନା ପ୍ରସଙ୍ଗରେ ଏଭଳି ପଦ୍ଧତିର ଅସାରତା ହୃଦୟଙ୍ଗମ କରି ପଣ୍ଡିତ ନୀଳକଣ୍ଠ ଯଥାର୍ଥ କହିଛନ୍ତି, "ସାରଳା ଦାସଙ୍କ ସାହିତ୍ୟର ମୁଖ୍ୟ ଓ ଅବାନ୍ତର ଭାବରେ ଯାହା କିଛି ସମାଲୋଚନା ହୋଇଚି, ସେଥିରେ ସଂସ୍କୃତ ମହାଭାରତ ସଙ୍ଗେ କେଉଁଠାରେ କେତେ ସାମ୍ୟ ଓ ବୈଷମ୍ୟ ଅଛି ସେଇ କଥା ଢେର ବହୁ ଲେଖା ହୋଇଚି । ମାତ୍ର ସାରଳା ସାହିତ୍ୟକୁ ମାପି ବୁଝିବାର ଏ ପ୍ରକାର ପ୍ରାଣହୀନ ସମାଲୋଚନାର ସ୍ଥାନ ଏତେ ବଡ଼ ନୁହେଁ" (୨) । ଠିକ୍ ଏହି କଥା ପଣ୍ଡିତ ସୂର୍ଯ୍ୟନାରାୟଣଙ୍କର ଦାଣ୍ଡି ରାମାୟଣ ଆଲୋଚନା ପ୍ରତି ପ୍ରଯୁଜ୍ୟ । ଏକ କ୍ଷୁଦ୍ର ପରିସର ମଧ୍ୟରେ ସେ ବାଲ୍ମୀକିଙ୍କ ରାମାୟଣକୁ ଜ୍ଞାନର ଆଦର୍ଶରେ ରଖି, ଦାଣ୍ଡି ରାମାୟଣର ଆଲୋଚନା କରିଛନ୍ତି । ଏଥିରେ ମହାକବି ବଳରାମ ଦାସଙ୍କ ଗ୍ରନ୍ଥର ମର୍ମ ଫୁଟି ନାହିଁ । "ମୂଳ ଗ୍ରନ୍ଥର ଗାମ୍ଭୀର୍ଯ୍ୟ ପଦମାଧୁରୀ, ସୁସ୍ପଷ୍ଟ ଓ ବଳିଷ୍ଠ ଚରିତ୍ର ଗଠନ ଏଥିରେ ନାହିଁ । ମୂଳର ନୀତିକଥା ମଧ୍ୟ ଏଥିରେ ଖୁବ୍ ଅଳ୍ପ ଅଛି । ବାଲ୍ମୀକିଙ୍କର କାବ୍ୟପ୍ରତିଭାର ଶତାଂଶ ସୁଦ୍ଧା ଦାସଙ୍କ ରାମାୟଣରେ ନାହିଁ" (୩) । ଓଡ଼ିଆ ରାମାୟଣ ଆଲୋଚନା ପ୍ରସଙ୍ଗରେ ଶ୍ରୀଯୁକ୍ତ ଦାସଙ୍କର ଏ ଉକ୍ତିରୁ ଏହାହିଁ ପ୍ରତିପାଦିତ ହୁଏ । ଏହା

(୧) 'ଶ୍ରୀ ଭାରତ ଦର୍ପଣ'—ପୃ ୨—ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା—୧୯୨୮ରେ ପ୍ରକାଶିତ ।

(୨) ଓଡ଼ିଆ ସାହିତ୍ୟର କ୍ରମପରିଣାମ (୨ୟ ଭାଗ)—ପଣ୍ଡିତ ନୀଳକଣ୍ଠ ଦାସ ପୃ: ୨୬୧

(୩) ଓ. ସା: ପ.—ପୃ ୨୩୨—୨୩୩ ।

ବଳରାମ ଦାସଙ୍କ ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ଆଲୋଚନା ନୁହେ, 'ଓଡ଼ିଆ ସାହିତ୍ୟ ପରିଚୟ'ରେ ପ୍ରସଙ୍ଗତଃ ସୂଚନା ମାତ୍ର । ଏଣୁ ଏ ବିଷୟ ଅଧିକ କହିବା ଅବଶ୍ୟକ ନାହିଁ ।

ବିଦେଶରେ ଆଲୋଚନା—

ଭାରତବର୍ଷର ଅଧୁନିକ ସାହିତ୍ୟ ଓ ସଂସ୍କୃତି ବିଷୟରେ ଆମ ଦେଶ ବାହାରେ ମଧ୍ୟ ଅନେକ ଆଲୋଚନା ପ୍ରକାଶ ପାଉଅଛି । ବିଦେଶୀ ପଣ୍ଡିତ-ମାନେ ଆମର ପ୍ରଦତ୍ତ ତଥ୍ୟାବଳୀର ଅବଲମ୍ବନରେ ଗ୍ରନ୍ଥ ରଚନା କରୁ-ଅଛନ୍ତି । ବର୍ତ୍ତମାନ ଆଲୋଚନାରୁ ସ୍ପଷ୍ଟ ହେଉଛି, ବଳରାମ ଓ ଦାଣ୍ଡି ରାମାୟଣ ବିଷୟରେ ପରିପୂର୍ଣ୍ଣ ଆଲୋଚନା ଲାଗି ଏ ପର୍ଯ୍ୟନ୍ତ କୌଣସି ଉଦ୍ୟମ ହୋଇ ନାହିଁ, ଆଉ ଖଣ୍ଡିତ ଭାବେ ଯାହା ହୋଇଅଛି, ତାହା ଯଥାର୍ଥ ଦୃଷ୍ଟିରେ ହୋଇ ନାହିଁ । ଆମେ ଯଥାର୍ଥ ଦୃଷ୍ଟିରେ ଆଲୋଚନା ନ କଲେ, ବିଦେଶୀ ପଣ୍ଡିତଙ୍କ ଗ୍ରନ୍ଥରେ ଆମ ସାହିତ୍ୟକୁ ଉପଯୁକ୍ତ ସ୍ଥାନ ମିଳିବ ନାହିଁ । ପାରିର 'ବିଜ୍ଞାନ ଗ୍ରନ୍ଥାଗାର' ପକ୍ଷରୁ ପ୍ରାଚ୍ୟ ଭାଷାବିଦ୍ ପିଏର୍ ମେୟୁ ଓ ଲୁଇ ରୁ୍ୟନୋ ଆଦିଙ୍କ ପ୍ରଣୀତ ଭାରତୀୟ ସାହିତ୍ୟ ବିଷୟକ ଗ୍ରନ୍ଥ ଏହାର ଏକ ଦୃଷ୍ଟାନ୍ତ । ଆଧୁନିକ ଭାରତୀୟ ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ବଙ୍ଗଳା ଓ ଅନ୍ୟାନ୍ୟ ସାହିତ୍ୟ ସମ୍ବନ୍ଧରେ ପୃଷ୍ଠା ପରେ ପୃଷ୍ଠା ଲେଖା ହୋଇଛି, ଅଥଚ ଓଡ଼ିଆ ସାହିତ୍ୟର ଆଲୋଚନା ଲାଗି ପୂରା ପୃଷ୍ଠାଟିଏ ବି ଦିଆ ହୋଇ ନାହିଁ । କୃତ୍ତିବାସ ଓ ତୁଳସୀ ଦାସଙ୍କ ଦୀର୍ଘ ପରିଚୟ ଦିଆଯିବା ବେଳେ, "ସେ ରାମାୟଣ ଓ ଗୀତା ଲେଖିଥିଲେ, ତଥା ଚୈତନ୍ୟଙ୍କ ଶିଷ୍ୟ ଥିଲେ" ଏହି ମର୍ମରେ ଗୋଟିଏ ଧାଡ଼ିରେ ବଳରାମ ଦାସଙ୍କ ପରିଚୟ ଦିଆ ଯାଇଅଛି (୧) । ଅନ୍ୟ ସଭ୍ୟ ଦେଶରେ ବି ଏହି ଧରଣର ଗ୍ରନ୍ଥ ଲେଖା ହେଉଥିବ ଓ ଏଥିରେ ଆମ ସାହିତ୍ୟ ସମ୍ବନ୍ଧରେ ପ୍ରକୃତ ତଥ୍ୟ ଅପ୍ରକାଶିତ ରହୁଥିବ । ଦାଣ୍ଡି ରାମାୟଣ ଆମ ସାହିତ୍ୟର ଏକ ବଳିଷ୍ଠ ସମ୍ପଦ ହୋଇଥିବାରୁ ତାହାର ଆଲୋଚନା ଦ୍ୱାରା ଏ ଦିଗରେ ଆମେ ଅନ୍ତତଃ ଗୋଟିଏ ସୋପାନ ନିର୍ଭର ଭାବରେ ଅଗେଇ ପାରିବା ।

---

(୧) L'INDE Class'ique. Bibliotheque Scientifique, Paris—1947, seq. 955, page. 470.

**ବର୍ତ୍ତମାନ ଆଲୋଚନାର ପରିସର—**

ଦାଣ୍ଡି ରାମାୟଣ ଓ କବି ବଳରାମ ଦାସଙ୍କ ବିଷୟରେ ଯଥାସମ୍ଭବ ବିଶଦ ଆଲୋଚନା ଲାଗି ଉଦ୍ୟମ କଲାବେଳେ ମୁଁ ଉକ୍ତ ଆଲୋଚକମାନଙ୍କ ଦୃଷ୍ଟିକୋଣରେ ଥିବା ଅଭାବ ଓ ଅସଙ୍ଗତିକୁ ଦୃଷ୍ଟିରେ ରଖିଅଛି । ସେହି ଅନୁସାରେ ମୋ ଆଲୋଚନାର ପରିସର ସ୍ଥିର କରିଅଛି । ଦାଣ୍ଡି ରାମାୟଣର ଆଲୋଚନା ଲାଗି ଦାଣ୍ଡି ରାମାୟଣ ହିଁ ମୋର ପ୍ରଧାନ ଅବଲମ୍ବନ । ସଂସ୍କୃତ ରାମାୟଣକୁ ଏଥିଲାଗି ଆଦର୍ଶ ରୂପେ ଗ୍ରହଣ କରି ନାହିଁ । ତେବେ କଥାବସ୍ତୁର ସାମ୍ୟ ଓ ସଂପର୍କ ଦୃଷ୍ଟିରୁ ବାଲ୍ମୀକି ରାମାୟଣକୁ ଏ ଆଲୋଚନାରେ ଯେତିକି ଗୁରୁତ୍ୱ ଦେବାର କଥା ତାହା ଦେଇଅଛି । ଓଡ଼ିଆ ରାମାୟଣର ପୃଷ୍ଠଭୂମି ରୂପେ ଲୌକିକ ଓ ଶାସ୍ତ୍ରୀୟ ଉଭୟ ପରମ୍ପରାକୁ ସ୍ୱୀକାର କରିଅଛି । ଶାସ୍ତ୍ରୀୟ ପରମ୍ପରାର ବିଶ୍ଳେଷଣ ପ୍ରସଙ୍ଗରେ ବୈଦିକ, ପୌରାଣିକ ଓ ଲଳିତ ସାହିତ୍ୟର ଉପାଦାନ ସବୁର ଯଥାସମ୍ଭବ ବିନିଯୋଗ କରିଅଛି । ଇତିହାସ ଦୃଷ୍ଟିରେ ସମାଜ, ଧର୍ମ ଓ ସାହିତ୍ୟ ଦିଗରୁ ଦାଣ୍ଡି ରାମାୟଣର ଅନୁଶୀଳନ ଲାଗି ଉଦ୍ୟମ କରିଅଛି । ଏହାହିଁ ଆଲୋଚନାର ମୁଖ୍ୟ ଅଂଶ ଗ୍ରହଣ କରିଅଛି ।

**ଭବିଷ୍ୟତ ଆଲୋଚନାର ଇଙ୍ଗିତ—**

ମୋର ଏହି ଆଲୋଚନା ସଂପୂର୍ଣ୍ଣ ନୁହେଁ । ଏଥିରେ ସଂସ୍ଥାପିତ ବିଷୟରେ କେତେକ ପ୍ରମାଦ ଓ ବିଷୟ ସଂସ୍ଥାପନରେ ସାମାନ୍ୟ ତ୍ରୁଟି ରହି ଯାଇ ଥିବା ହୁଏତ ସମ୍ଭବ । ତେବେ ଦାଣ୍ଡି ରାମାୟଣର ପରିପୂର୍ଣ୍ଣ ଆଲୋଚନା ଲାଗି ଥିବା ପ୍ରତିବନ୍ଧକମାନ ବିଚାରକୁ ଆଣିଲେ, ଏହା ବଡ଼ ମନେ ହେବ ନାହିଁ । ଭବିଷ୍ୟତରେ ଅଧିକ ସୁସଙ୍ଗତ, ପୁଷ୍କଳ ଓ ସଂପୂର୍ଣ୍ଣ ଆଲୋଚନା ଏହି କେତୋଟି କଥା ଉପରେ ନିର୍ଭର କରେ । ଦାଣ୍ଡି ରାମାୟଣର ଆଶାନୁରୂପ ବିଶ୍ଳେଷଣ ହେବା ପୂର୍ବରୁ ଏହାର ଉପଯୁକ୍ତ ପାଠୋଦ୍ଧାର ଓ ବୈଜ୍ଞାନିକ ସଙ୍କଳନ କରାଯିବା ପ୍ରଥମରୁ ଆବଶ୍ୟକ । ଦ୍ୱିତୀୟତଃ ଓଡ଼ିଆର ସମାଜ, ଧର୍ମ ଓ ସାହିତ୍ୟର ପରିପୂର୍ଣ୍ଣ ଇତିହାସ ପ୍ରଣୀତ ହେବା ପ୍ରୟୋଜନ । ଏହି କାର୍ଯ୍ୟ ଗୁଡ଼ିକରେ ଏବେ ବି ହାତ ଦିଆ ହୋଇ ନାହିଁ । ଏ ଦିଗରେ କାହାରି ସହାୟକ ହେଲେ, ମୋ ଉଦ୍ୟମ ସଫଳ ହେବ ।

---

# ଐତିହାସିକ ଭୂମିକା

"ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ଭାରତବର୍ଷରେ ସର୍ବତ୍ର ଆମର ଜୀବନ ରାଷ୍ଟ୍ରକେନ୍ଦ୍ରିକ ନ ଥିଲା । ଥିଲା ଏକାନ୍ତ ସମାଜ କେନ୍ଦ୍ରିକ । ଆମ ଦୈନନ୍ଦିନ ଜୀବନର ସକଳ କର୍ମକୃତ ସମସ୍ତ ସମାଜକୁ କେନ୍ଦ୍ର କରି ଆବର୍ତ୍ତିତ ହେଉଥିଲା ।"

ବାଙ୍ଗାଳୀର ଇତିହାସ ( ଆଦିପର୍ବ )—ଡା: ନିହାର ରଞ୍ଜନ ରାୟ ।

## ଓଡ଼ିଆ ସାହିତ୍ୟରେ ଭକ୍ତିଯୁଗ—

ପଞ୍ଚଦଶ ଶତକର ଦ୍ୱିତୀୟ ପାଦରୁ ଆରମ୍ଭ କରି ପ୍ରାୟ ଗୋଟିଏ ଶତାବ୍ଦୀ ଓଡ଼ିଶାରେ ସୂର୍ଯ୍ୟବଂଶ ରାଜୁତି କରିଥିଲେ (ଖ୍ରୀ: ୧୪୩୫-୧୫୩୪) । ଓଡ଼ିଆ ସାହିତ୍ୟର ଏହା ବିକାଶ କାଳ । ଏଇ ଯୁଗରେ ଆମର ତିନୋଟି ମହାଗ୍ରନ୍ଥ ରଚିତ ହୋଇଅଛି—ସାରଳା ମହାଭାରତ, ଦାଣ୍ଡି ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ । ସାରଳା, ବଳରାମ ଓ ଜଗନ୍ନାଥ—ଏଇ ତିନି ଜଣ ଯାକ ସାଧକ ଭକ୍ତ । ସେମାନଙ୍କ ଜୀବନ ଓ କୃତିରେ ଅନ୍ତର୍ନିହିତ ସାମ୍ୟ ରହିଛି । ଏ ତିନି ଜଣ ସେ ସମୟରେ ଆମର ଧର୍ମ ସଂସ୍କୃତି ତଥା ଜାତୀୟ ଜୀବନର ଅଧିନେତା ଥିଲେ । ଏମାନଙ୍କ ସୃଷ୍ଟିର ମୂଳ ପ୍ରେରଣା ଥିଲା, ସେ ସମୟର ଭକ୍ତିଧର୍ମ । ଏଥିଲାଗି ଓଡ଼ିଆ ସାହିତ୍ୟରେ ଏଇ ସାଧକ ଭକ୍ତମାନଙ୍କ ଯୁଗ 'ଭକ୍ତିଯୁଗ' ନାମରେ ପରିଚିତ ହେବା ସ୍ୱାଭାବିକ । ଏଇ ଯୁଗ ଉପରେ ତତ୍କାଳୀନ ରାଜନୀତିକ ପରିସ୍ଥିତିର ପ୍ରଭାବ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହେଲେ ବି, ଏ ଯୁଗରେ ଯେଉଁ ଧର୍ମସାଧନା, ସାମାଜିକତାର ଅଭିବ୍ୟକ୍ତି, ସାଂସ୍କୃତିକ ନବସୃଜନର ବିକାଶ ଦେଖା ଦେଇଥିଲା, ଐତିହାସିକ ପର୍ଯ୍ୟାୟରେ ତାହାର ଏକ ବିଶେଷ ଭୂମିକା ବିଦ୍ୟମାନ ।

## ସମାଜ ସଂସ୍ଥାନ—

ଏ ଭୂମିକାକୁ ବୁଝିବାଲାଗି, ସେ ସମୟର ସମାଜ ସଂସ୍ଥାନ ବିଷୟରେ ଏକ ସ୍ପଷ୍ଟ ଧାରଣା ଆବଶ୍ୟକ । ଆଜି ବ୍ୟକ୍ତି ଓ ରାଷ୍ଟ୍ର ଆମ

ଆଖିରେ ବଡ଼ ହୋଇ ଦେଖାଯାନ୍ତି । କିନ୍ତୁ ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ଦେଶରେ ରାଷ୍ଟ୍ରଗୁଡ଼ିକର ସତ୍ତା ଥିଲା ଦୁର୍ବଳ, ବ୍ୟକ୍ତିର ସତ୍ତା ଥିଲା କ୍ଷୀଣ । ସମାଜ ଥି ଅତ୍ୟନ୍ତ ଶକ୍ତିଶାଳୀ, ଜୀବନ୍ତ ଓ ସଚଳ ଅନୁଷ୍ଠାନ । ଏହା ଉପରେ ସ୍ଥି କରୁଥିଲା ପ୍ରାଚୀନ ସାମନ୍ତତନ୍ତ୍ର । କୌଣସି ରାଷ୍ଟ୍ରୀୟ ନିୟମ କାନୁନ୍ ଅପେ ସମାଜର ପ୍ରାଚୀନ ପାରମ୍ପରିକ ଧର୍ମଧାରଣା ଓ ନୀତିବନ୍ଧନ ଉପରେ ବହୁ ପରିମାଣରେ ପ୍ରତିଷ୍ଠିତ ହୋଇଥିଲା । ଧର୍ମ ଓ ଶାସ୍ତ୍ରର ଶାସନରେ ବ୍ରାହ୍ମଣ, କ୍ଷତ୍ରିୟ, କୃଷକ, କାରିଗର ଶୂଦ୍ର ଓ ବୈଶ୍ୟର ସ୍ଥାନ ସୁପ୍ରତିଷ୍ଠିତ ହୋଇଥିଲା । ଜାତିଭେଦ ଥିଲା ଧର୍ମର ଏକ ଅଙ୍ଗ । ସବୁ ପ୍ରକାର ପ୍ରତିକ୍ରିୟା ଓ ଦୁର୍ବଳତା ଭିତରେ ସାମନ୍ତତନ୍ତ୍ର ଓ ପାରମ୍ପରିକ ସମାଜ ପଦ୍ଧତିକୁ ବଞ୍ଚାଇ ରଖିବା ଲାଗି ଏହା ଥିଲା ସର୍ବଶ୍ରେଷ୍ଠ ରକ୍ଷାକବଚ ।

## ବ୍ରାହ୍ମଣ୍ୟ ସଂସ୍କୃତିର ଅଧୋଗତି—

ପ୍ରାଚୀନ ଭାରତରେ ବ୍ରାହ୍ମଣମାନେ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଏକ ପ୍ରକାର ରାଜୁତି କରୁଥିଲେ । କୃଷି ଓ ଶିଳ୍ପର ବିକାଶ ସହିତ ପ୍ରାଚୀନ ଭାରତରେ ଯେତେବେଳେ ପ୍ରଗତିଶୀଳ ରାଜତନ୍ତ୍ର ଗଢ଼ି ଉଠିଥିଲା, ସେତେବେଳେ ବ୍ରାହ୍ମଣମାନେ ଏହାର ମୁଖପାତ୍ର ରୂପେ ସମାଜର ନେତୃତ୍ୱ ଗ୍ରହଣ କରିଥିଲେ । ଏହି ସମାଜ, ସଭ୍ୟତାର ଆଦର୍ଶ, ଆସ୍ପୃହା ଏମାନଙ୍କ ଦ୍ୱାରା ସୃଷ୍ଟ ରାମାୟଣ ମହାଭାରତ ଭଳି ମହାଗ୍ରନ୍ଥ ଓ ପ୍ରାଚୀନ ପୁରାଣ-ଗୁଡ଼ିକରେ ଫୁଟି ଉଠିଥିଲା ।

ବ୍ରାହ୍ମଣ୍ୟ ସଂସ୍କୃତିର ଏ ସ୍ୱର୍ଣ୍ଣଯୁଗ ବେଶି ଦିନ ତିଷ୍ଠି ନ ଥିଲା । ଭିତରର ଅନ୍ତର୍ବିରୋଧ ଓ ଦୁର୍ବଳତା ହେତୁ ଏହି ପ୍ରଗତିର ଧାରା ବିପରୀତ-ମୁଖୀ ହେବାକୁ ଲାଗିଲା । ବୈଦେଶିକ ଆକ୍ରମଣ, ବାଣିଜ୍ୟହାନି, ଆର୍ଥିକ ଦୁର୍ଗତି, ଉତ୍ପାଦନ କ୍ଷେତ୍ରରେ କୌଣସି ନୂତନ ଉଦ୍ଭାବନ ଓ ଅଗ୍ରଗତିର ଅଭାବ ଆଦି ବହୁ କାରଣ ଏହା ପଛରେ କାର୍ଯ୍ୟ କରୁଥିବାର ଅନୁମାନ କରାଯାଇ ପାରେ । ଉପର ଶ୍ରେଣୀର ବିଳାସ ଓ ଖିଆଲି ଶାସନ ନିମ୍ନ ସମାଜକୁ ଛିନ୍ନଭିନ୍ନ କରି ଦେଶକୁ ଦୁର୍ବଳ କରିଦେଇଥିଲା । ବ୍ରାହ୍ମଣମାନଙ୍କର ନୈତିକ ପତନ ଦେଶକୁ ଅଜ୍ଞାନତା ଓ ଅଧୋଗତି ଦିଗରେ ଆଗେଇ ନେଇଥିଲା । ଏହି ଯୁଗରେ ଦୁର୍ଗତିର ଚିତ୍ର ପରବର୍ତ୍ତୀ ପୁରାଣଗୁଡ଼ିକରେ ପୂରି ରହିଅଛି । ଏ ଗୁଡ଼ିକ ବିଶ୍ଳେଷଣ କଲେ ଜଣାପଡ଼େ—"ଜନସାଧାରଣ ଅଜ୍ଞ ଥିଲେ ।

ଅର୍ଥହୀନ ପୂଜା ପାର୍ବଣରେ ସାରା ଦେଶ ମଜ୍ଜି ରହିଥିଲା । ଚତୁର୍ଦ୍ଦିଗର ...ଭେଦ ଓ ପରାଭବର ବାତାବରଣ ଭିତରେ ଜାତୀୟ ଜୀବନ ଅସ୍ତମିତ ...ଇ ଆସିଥିଲା" (୧) ।

## ...ଧର୍ମର ଅଭ୍ୟୁଦୟ—

ଜାତୀୟ ଜୀବନର ଏଇ ଦୁର୍ଦ୍ଦିନରେ ଦକ୍ଷିଣ ଭାରତରୁ ଏକ ନୂତନ ଆଲୋକ ଦେଖା ଦେଇଥିଲା । ସେ ହେଉଛି ଭକ୍ତିଧର୍ମ । କ୍ରମେ ଏହା ଦ୍ରାବିଡ଼, କର୍ଣ୍ଣାଟ, କଳିଙ୍ଗ, ବଙ୍ଗ ଆଦିରେ ବ୍ୟାପ୍ତ ହୋଇ ସାରା ଭାରତବର୍ଷରେ ଏକ ପ୍ରଗତିର ପ୍ରବାହ ଖେଳାଇ ଦେଲା (୨) । ଏଇ ପ୍ରଗତିର ଧାରା ଦ୍ୱିବିଧ । ପ୍ରଥମରେ ଜାତିଭେଦର ବିରୋଧ, ଦ୍ୱିତୀୟରେ ନିମ୍ନ ସଂସ୍କୃତି ଓ ଉଚ୍ଚ ସଂସ୍କୃତିର ସମନ୍ୱୟ । ଏଇ ଅଧୋଗତି ଯୁଗରେ ଭକ୍ତିର ଆବରଣ ତଳେ ସତ୍ୟର ପ୍ରଚାର, ପରସ୍ପର ଶ୍ରଦ୍ଧା ଓ ଆକର୍ଷଣ ବଳରେ ସାଂପ୍ରଦାୟିକ ଓ ଜାତିଗତ ବିଦ୍ୱେଷର ଅବସାନ ଘଟାଇ ଅଗ୍ରଗତିର ବାଟ ଫିଟାଇବା ଏହାର ଲକ୍ଷ୍ୟ ଥିଲା । ଏଇ ସମୟରେ ଏଭଳି ଏକ ଉଦ୍ୟମର ଆବଶ୍ୟକତା ଐତିହାସିକ ପରିସ୍ଥିତି ଦୃଷ୍ଟିରୁ ଖୁବ୍ ଜରୁରୀ ହୋଇ ପଡ଼ିଥିଲା । ଭାରତ-ବର୍ଷରେ ମୁସଲମାନ ଶକ୍ତିର ପ୍ରତିଷ୍ଠା ଓ ବିଜାତି ଉଚ୍ଚଶ୍ରେଣୀର ହିନ୍ଦୁମାନଙ୍କୁ ଏକ ଅନିଶ୍ଚୟତା ଭିତରେ ପକାଇଥିଲା । ରାଷ୍ଟ୍ରରେ ସବୁ ପ୍ରକାର କର୍ତ୍ତୃତ୍ୱ ଏମାନେ ହରାଇଥିଲେ । ଏମାନେ ରାଜନୈତିକ କ୍ଷେତ୍ରରେ ଆପଣାର ସ୍ଥାନ ହରାଇ, ସାମାଜିକ କ୍ଷେତ୍ରରେ ଆପଣାର ଅସ୍ଥାନ ଦୃଢ଼ କରିବାକୁ ଚାହିଁଥିଲେ । ସମାଜରେ ଏମାନଙ୍କ ସ୍ଥାନ ଅମର ପାରମ୍ପରିକ ଶାସ୍ତ୍ର ଓ ପୁରାଣଗ୍ରନ୍ଥଙ୍କର ନିର୍ଦ୍ଧାରଣ ଅନୁସାରେ ଦୃଢ଼ ହୋଇଥିଲା । ଏଣୁ ସମାଜ ମନରେ ଏଇ ପାର-ମ୍ପରିକ ଧର୍ମଧାରଣାକୁ ଜାଗ୍ରତ କରିବା ଲାଗି ସମସ୍ତେ ବ୍ରତୀ ହୋଇଥିଲେ । ଅଜ୍ଞ ଓ ଅସଂସ୍କୃତ ଜନସାଧାରଣଙ୍କୁ ଏକ ସାଂସ୍କୃତିକ ପରିବେଶ ଦେବାର ଆବଶ୍ୟକତା ବିଶେଷ ଭାବରେ ଅନୁଭୂତ ହୋଇଥିଲା । ପୁଣି ଦେଶ ସଂଘର୍ଷ

(୧) A History of civilization in ancient India—R.C.Dutt—Chap. XV.

(୨) ଭକ୍ତିର ଜନ୍ମ ସମ୍ବନ୍ଧରେ ପଦ୍ମପୁରାଣରେ କୁହାଯାଇଅଛି—
ଉତ୍ପନ୍ନା ଦ୍ରାବିଡ଼େ ସାହଂ କର୍ଣ୍ଣାଟେ ବୃଦ୍ଧିମାଗତା
ସ୍ଥିତା କିଞ୍ଚିତ୍ ମହାରାଷ୍ଟ୍ରେ ଗୁର୍ଜରେ ଜୀର୍ଣ୍ଣତାଂ ଗତା ।

ଓ ଆଶଙ୍କା ଭିତରେ ତିଷ୍ଠି ରହିଥିବା ବେଳେ ଚିନ୍ତାଶୀଳ ଲୋକେ ସମାଜ ଭିତରେ ଏକ ସାଧାରଣ ଐକ୍ୟର ପକ୍ଷପାତୀ ଥିଲେ । ଏଥିଲାଗି ନିମ୍ନଶ୍ରେଣୀର ଜନସାଧାରଣଙ୍କ ସକ୍ରିୟ ସହଯୋଗ ଓ ସଚେତନତା ଲୋଡ଼ା ହୋଇଥିଲା । ଅନ୍ୟକଥାରେ କହିଲେ, ତତ୍କାଳୀନ ସମାଜନେତାଙ୍କର ଏହା ଏକ ପ୍ରକାର ଆତ୍ମସଂରକ୍ଷଣ କୌଶଳ ଥିଲା । ଆତ୍ମରକ୍ଷା ଅର୍ଥ ସମାଜରକ୍ଷା, ସମାଜର ଧର୍ମ କର୍ମ, ଶିକ୍ଷା ଦୀକ୍ଷା ଆଦିର ପୁନରୁଜ୍ଜୀବନ । ଏହାର କାରଣ ହେଉଛି—ସମାଜ ଗୋଟିଏ ସଚଳ ଜୀବନ୍ତ ଅନୁଷ୍ଠାନ ଥିଲା । ରାଷ୍ଟ୍ରଠାରୁ ବି ଏହାର ଶକ୍ତି ଥିଲା ଅଧିକ ।

ପୌରାଣିକ ଯୁଗରେ ଯେପରି ଉଚ୍ଚ ସମାଜ ରାଜ ଅନୁଗ୍ରହ ଲଭି ସାଧାରଣଙ୍କଠାରୁ ବିଚ୍ଛିନ୍ନ ହୋଇ ରହିଥିଲା, ତାହା ସବୁବେଳେ ସମ୍ଭବ ହୋଇ ନ ଥିଲା ଉଚ୍ଚ ଓ ନୀଚ ଉଭୟେ ଉଭୟର ସହାୟତା ଲୋଡ଼ୁଁଥିଲେ । ଚିନ୍ତାଶୀଳ ଲୋକମାନେ ନିମ୍ନ ସମାଜର ପୂଜା ପାର୍ବଣ, ବ୍ରତ ଓଷା ବିଷୟରେ କୌତୁହଳ ପ୍ରକାଶ କରିଥିଲେ । ସେଥିରୁ ଅନେକକୁ ପରିମାର୍ଜିତ କରି ଲୌକିକଭାଷାରେ ନିଜେ ଲେଖୁଥିବା ପୁରାଣ ଗ୍ରନ୍ଥଗୁଡ଼ିକରେ ସ୍ଥାନ ଦେଲେ । କ୍ରମେ ଏହି ଲୌକିକ ପୂଜା ପାର୍ବଣମାନ ସାର୍ବଜନୀନ ଓ ପରମ୍ପରାନୁଗତ ହୋଇ ପଡ଼ିଲା । ଏହି ନୀଚ ଶ୍ରେଣୀର ଲୋକେ ଉଚ୍ଚଶ୍ରେଣୀର ଲୋକଙ୍କଠାରୁ ଦୂରରେ ରହିଥିବାରୁ, ପୁରାଣ ଓ ଧର୍ମଶାସ୍ତ୍ରମାନ ସଂସ୍କୃତରେ ଲେଖା ହୋଇଥିବାରୁ ସେଥିରୁ ବଞ୍ଚିତ ଥିଲେ । ସେମାନଙ୍କ ମଧ୍ୟରେ ଗୁଣି-ଗାରଡ଼ି ଜାଣିଥିବା ଲୋକଙ୍କର, କାପାଳିକ, ଭଣ୍ଡସାଧୁ ଓ ସିଦ୍ଧଙ୍କର ପ୍ରଭାବ ଖୁବ୍ ବେଶି ଥିଲା । ଏଥିଲାଗି ବଳରାମ ଦାସ ଆଦିଙ୍କ ଲେଖାରେ ଭଣ୍ଡମାନଙ୍କ ମଧ୍ୟରୁ ପ୍ରକୃତ ସାଧୁଙ୍କୁ ଚିହ୍ନିବା ଲାଗି ସାଧୁ ଲକ୍ଷଣମାନ ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି । ତେବେ ଏମାନଙ୍କ ମଧ୍ୟରେ ପୁରାଣ ଆଦିର ଚର୍ଚ୍ଚା ଯେ ମୋଟେ ହେଉ ନ ଥିଲା, ତାହା ନୁହେଁ । ଗ୍ରାମ ଭାଗବତଟୁଙ୍ଗୀଗୁଡ଼ିକରେ ପୁରାଣ-ପଣ୍ଡାମାନଙ୍କ ଦ୍ୱାରା ସାମୟିକ ଭାବରେ ପୁରାଣ କାହାଣୀମାନ ବୋଲା ହେଉଥିଲା । ଗାଆଁ ଗହଳରେ ଅନେକ ସ୍ଥାନରେ ପ୍ରକୃତ ସନ୍ଥ ଓ ସାଧୁମାନଙ୍କ ଦ୍ୱାରା ମନ୍ଦିର ମଠ ପ୍ରଭୃତି ପ୍ରତିଷ୍ଠାର ଉଦ୍ୟମ ହେଉଥିଲା । ଏଠାରେ ସାଧାରଣ ଲୋକଙ୍କର ଧର୍ମଶିକ୍ଷା ହେଉଥିଲା । ସାରଳା ଦାସଙ୍କର ଝଙ୍କଡ଼ ବୋଧହୁଏ ଏଇଭଳି ଏକ ପୀଠ ଥିଲା । ସେଠାରେ ମହାଭାରତ ଭଳି ବିରାଟ ଗ୍ରନ୍ଥ ରଚନା ସମ୍ଭବ ହୋଇଥିଲା ।

## ଏ ଯୁଗର ଅଧିନେତାଗଣ—

ପଞ୍ଚଦଶ-ଷୋଡ଼ଶ ଶତକର ଏଇ ନୂତନ ସର୍ଜନକ୍ଷମ ଧର୍ମ, ପୁରାଣ ଓ ସାହିତ୍ୟକୁ ଜନ୍ମଦେବା ପଛରେ ଯେଉଁ ପରିବେଶ ଓ ସାମାଜିକ ସ୍ଥିତି କାମ କରୁଥିଲା, ତାହାର ସମ୍ୟକ୍ ଧାରଣା କରି ସାରିବା ପରେ, ବିଗ୍ଭର କରିବାର କଥା, ଏଇ ଉତ୍‌ଥାନର ଅଧିନେତା ଥିଲେ କେଉଁମାନେ । ଦେଶର ରାଜଶକ୍ତି ବା ରାଷ୍ଟ୍ର ସହିତ ଏମାନଙ୍କର ସଂପର୍କ ଥିଲା କଣ ? ସମାଜ ଉପରେ ଏମାନଙ୍କ ପ୍ରଭାବ ଥିଲା, କେତେ ଗମ୍ଭୀର ଓ ବ୍ୟାପକ ! ଭକ୍ତିଯୁଗର ପୁରାଣ ଗ୍ରନ୍ଥଗୁଡ଼ିକରେ କଳିଯୁଗର ବ୍ରାହ୍ମଣ ଓ ରାଜାମାନଙ୍କ ପ୍ରତି ଆକ୍ଷେପ ଦେଖି କେତେକ ପରିମାଣରେ ମନେ ହେବା ସ୍ୱାଭାବିକ ଯେ, ଏମାନେ ଥିଲେ ବ୍ରାହ୍ମଣେତର । କିନ୍ତୁ ପୂର୍ଣ୍ଣତଃ ଏହା ସତ୍ୟ ନୁହେଁ । ଏମାନେ ଥିଲେ ଯୁଗର ଚିନ୍ତାନାୟକ । ଏଥିରେ ବ୍ରାହ୍ମଣ ଅବ୍ରାହ୍ମଣର କୌଣସି ପ୍ରଶ୍ନ ନ ଥିଲା । କାରଣ ସମୟ ଓ ପରିବେଶର ଆବଶ୍ୟକତା ଭଲରୂପେ ବୁଝି, ଯେଉଁମାନେ ସାଂସ୍କୃତିକ ସମନ୍ୱୟ, ନିମ୍ନ ଜନସାଧାରଣଙ୍କ ପାଇଁ କଥିତ ଭାଷାରେ ଧର୍ମଶାସ୍ତ୍ରଗୁଡ଼ିକର ପ୍ରଚାର ଲାଗି ଉଦ୍ୟମ କରୁଥିଲେ ସେମାନେ ନୈଷ୍ଠିକମାନଙ୍କର ବିରୋଧରେ ଆସୁଥିଲେ । ଏଥିଲାଗି ନୈଷ୍ଠିକ ବ୍ରାହ୍ମଣ ସମାଜରେ ଅବ୍ରାହ୍ମଣ ସାରଳା, ବଳରାମ ବା ବ୍ରାହ୍ମଣ ଜଗନ୍ନାଥ କେହି ସ୍ୱତଃ ଆଦର ପାଇ ନାହାନ୍ତି । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଆପଣାର ଗ୍ରନ୍ଥମାନ ଲୋକସାଧାରଣଙ୍କ ମଧ୍ୟରେ ପ୍ରଚାର କରିବାକୁ ହୋଇଅଛି । ଜନତାର ଅସୀମ ଆଦର, ସ୍ନେହ ଓ ଶ୍ରଦ୍ଧାକୁ ପୁଞ୍ଜି କରି ରାଜଦରବାରର ପଣ୍ଡିତ ମଣ୍ଡଳୀଙ୍କ ଶୁଷ୍କ ବିତର୍କ ସଭା ପର୍ଯ୍ୟନ୍ତ ଉଠିବାକୁ ହୋଇଛି । ସାରଳାଙ୍କ ମହାଭାରତ ରଚନା ଏକାନ୍ତ ଆକସ୍ମିକ ନୁହେଁ । ଝଙ୍କଡ଼ର ମହାମାୟା ସାରଳାଦେବୀଙ୍କ ପୀଠରେ ପୁରାଣ କାହାଣୀର ଯେଉଁ ଚର୍ଚ୍ଚା ଚାଲିଥିଲା, ତାହା ଶିଶୁ ସାରଳାଙ୍କୁ ପୁରାଣ ପ୍ରତି ଆକୃଷ୍ଟ କରିଥିଲା । ସେ ବଡ଼ ହୋଇ ପୁରାଣ ଚର୍ଚ୍ଚାରେ ମନ ବଳାଇ ଏହି କୌତୂହଳ ସାର୍ଥକ କରିଥିଲେ । ତା’ ପରେ ଲୋକଙ୍କ ଶ୍ରଦ୍ଧା କପିଳେନ୍ଦ୍ର ଦେବଙ୍କ ରାଜ-ଦରବାରରେ ବି ତାଙ୍କୁ ସମ୍ମାନିତ କରିଥିଲା । ବଳରାମ ଦାସଙ୍କ ପକ୍ଷରେ ବି ଏକଥା ସତ । ସେ ସାରଳା ଦାସଙ୍କ ଭଳି ଜଣେ ଗାଉଁଲି ଚଷାର ପୁଅ ନ ଥାଇ, ଥିଲେ ଜଣେ ଉଚ୍ଚ କର୍ମଚାରୀଙ୍କ ପୁଅ । ଶାସ୍ତ୍ରଜ୍ଞାନର ବି ତାଙ୍କଠାରେ ଅଭାବ ନ ଥିଲା । ତଥାପି ସେ ରାଜଦରବାରର ପଣ୍ଡିତ ସଭାରେ ଆରମ୍ଭରୁ ପ୍ରବେଶ କରି ପାରି ନ ଥିଲେ । ବ୍ରାହ୍ମଣ ଓ ତତ୍କାଳୀନ ବିଦ୍ୱାନମଣ୍ଡଳୀର

ଅନାଦର ଓ ବିଦ୍ୱେଷ ପ୍ରତି ଭ୍ରୂକ୍ଷେପ ନ କରି, ସେ ଅନ୍ତର୍ଯ୍ୟାମୀ ଓ ଜଗତର ହିତ ପାଇଁ ରାମାୟଣ ରଚନା କରି ପ୍ରଚାର କରିଥିଲେ । ବେଦାନ୍ତ ଶାସ୍ତ୍ର ଓ ପୁରାଣ ବିଷୟକ ଜ୍ଞାନ ଅପଣ୍ଡାର ଚଉପାଶର ଜନସାଧାରଣଙ୍କୁ ପରିବେଷଣ କରିଥିଲେ । ଲୋକେ ଏହାକୁ ଆଦରରେ ଗ୍ରହଣ କରିଥିଲେ । ଏହି ଆଦର ଓ ଶ୍ରଦ୍ଧାକୁ ଭିତ୍ତିକରି ସେ ରାଜଦରବାରରେ ବ୍ରାହ୍ମଣ ସଭାରେ ଅତି ଅକସ୍ମିକ ଭାବରେ ବେଦାନ୍ତ ବ୍ୟାଖ୍ୟା କରିବା ପାଇଁ ଉପସ୍ଥିତ ହୋଇଥିଲେ । ଏହାର ସ୍ୱାଭାବିକ ପରିଣତି ହୋଇଥିଲା—କାରାବାସ । ଏହା ପରେ ରାଜାଙ୍କ ଆଗରେ ତାଙ୍କୁ ନିଜର ଯୌଗିଶକ୍ତିର ପରୀକ୍ଷା ଦେବାକୁ ହୋଇଥିଲା । ହରିଦାସ ନାମକ ଜଣେ ମୂର୍ଖ ମଥାରେ ହାତ ଦେବା ମାତ୍ରେ ସେ ବେଦାନ୍ତ କହିଥିଲା । "ବେଦାନ୍ତସାର ଗୀତା"ରେ ଏହି କାହାଣୀ ଭିତରେ ଉକ୍ତ ପରମ୍ପରାରେ ଯାହା ଅତିରଞ୍ଜନ ଥାଉ ନା କାହିଁକି, ଗୋଟିଏ କଥାର ସ୍ପଷ୍ଟ ଇଙ୍ଗିତ ଏଥିରୁ ମିଳେ । ତାହା ହେଉଛି, ମହାତ୍ମା ବଳରାମ ଦାସଙ୍କର ସାଧାରଣ ଲୋକଙ୍କ ଭିତରେ ଶାସ୍ତ୍ର ପ୍ରଚାର ଓ ତାହାର ସଫଳତାର ସୂଚନା । ଏହି ଧରଣର କାହାଣୀ ସାଧାରଣତଃ ସମସ୍ତ ଭକ୍ତ କବିଙ୍କ ସଂପର୍କରେ ମିଳିଥାଏ ।

## ରାଷ୍ଟ୍ର ସମ୍ପର୍କ—

ଏବେ ଦ୍ୱିତୀୟ ପ୍ରଶ୍ନ—ରାଷ୍ଟ୍ରଶକ୍ତି ବା ରାଜଦରବାର ସହିତ ଭକ୍ତକବିମାନଙ୍କର ସଂପର୍କ କଣ ଥିଲା ? ଯଦି ଅପଣାର ମନନଶୀଳ ମନ, କୁରବୁଦ୍ଧି ଓ ସାଧାରଣଙ୍କ ଶ୍ରଦ୍ଧା ଭକ୍ତକବିମାନଙ୍କ ଗ୍ରନ୍ଥ ରଚନା ପାଇଁ ଉପଯୁକ୍ତ ପରିବେଶ ଓ ପ୍ରେରଣା ଯୋଗାଇ ପାରୁଥିଲା, ତେବେ ସେମାନେ ରାଜଦରବାରରେ ପ୍ରବେଶ କରିବାକୁ ଚାହୁଁଥିଲେ କାହିଁକି ? ଏହି ନିସ୍ପୃହ ଓ ତ୍ୟାଗୀ ସାଧକମାନଙ୍କର କୌଣସି ଆର୍ଥିକ ଲାଳସାର ତୃପ୍ତି ବା ସାଂସାରିକ ଦାୟିତ୍ୱର ପରିପୂରଣ ଏହାର କାରଣ ହୋଇ ପାରେ, ଏପରି କଳ୍ପନା ଅସମୀଚୀନ । ତେବେ ନିଗ୍ରହ ବା ସମ୍ମାନ ପ୍ରତି ଭ୍ରୂକ୍ଷେପ ନ କରି ଏମାନଙ୍କର ରାଜଦରବାରରେ ପ୍ରବେଶ କରିବାର କାରଣ ଅନୁମାନର ପାହାରେ ନୁହେ । ଏଇ ଭକ୍ତକବିମାନେ କୌଣସି ନୈରାଜ୍ୟ ସମାଜ ବା ଏକାନ୍ତ କଳ୍ପନାର ଧର୍ମରାଜ୍ୟ ଚାହୁଁ ନ ଥିଲେ । ଯେଉଁ ଧର୍ମରାଜ୍ୟର କଳ୍ପନା ରାମାୟଣ ଓ ମହାଭାରତର ପ୍ରତିଚ୍ଛବିରେ ଅଙ୍କିତ ହୋଇଥିଲା, ପ୍ରାଚୀନ

ପୁରାଣ ଓ ଧର୍ମଶାସ୍ତ୍ର ମାନଙ୍କରେ ପରିକଳ୍ପିତ ହୋଇ ଆସିଥିଲା, ସେଇ ଆଦର୍ଶ ରାଜ୍ୟ ଓ ସମାଜ ପ୍ରତିଷ୍ଠାର ଏମାନେ ଏକାନ୍ତ ପକ୍ଷପାତୀ ଥିଲେ । ସେଇ ପରିକଳ୍ପିତ ସମାଜରେ ରାଜାଙ୍କର ସ୍ଥାନ ଅତି ଉଚ୍ଚରେ ଥିଲା । ସେମାନଙ୍କ ଉଦ୍ଦେଶ୍ୟ ଥିଲା ବ୍ରାହ୍ମଣକୁ ଆଦର୍ଶ ବ୍ରହ୍ମବିଦ୍ ବ୍ରାହ୍ମଣ, ବୈଶ୍ୟକୁ ଆଦର୍ଶ ବଣିକ୍ ଓ ରାଜାକୁ ଆଦର୍ଶ ରାଜା କରି ଗଢ଼ିବା; ନୀତିଜ୍ଞାନହୀନ ସମାଜକୁ ଧର୍ମ ଓ ପରମ୍ପରାର ନୀତିବନ୍ଧନରେ ବାନ୍ଧି ଶୃଙ୍ଖଳିତ କରିବା । ରାଜଦରବାରର ଶୀର୍ଷସ୍ଥାନର ଉପରୁ ସମୁଦାୟ ସମାଜ ଉପରେ ଦୃଷ୍ଟିପାତ କରିବା ସେ ସମୟରେ କେବଳ ସମ୍ଭବ ଥିଲା । ଏଥିଲାଗି ସେମାନେ ରାଜଦରବାରରେ ପ୍ରବେଶ କରିଥିଲେ । ଦରବାରର ବ୍ରାହ୍ମଣମାନଙ୍କ ଶୁଷ୍କ ବିତର୍କରୁ ନିବର୍ତ୍ତାଇ ପ୍ରକୃତ ଜ୍ଞାନ ଲାଭ ପାଇଁ ପ୍ରରୋଚିତ କରିଥିଲେ । ଧର୍ମ ଓ ଅଲୌକିକତାର ଆବରଣ ଭିତରେ ନିଜକୁ ରାଷ୍ଟ୍ରଶକ୍ତିରେ ପ୍ରତିଷ୍ଠିତ କରିଥିଲେ । ଆପଣା ସୁଗୁଣ ଓ ଦୂରଦୃଷ୍ଟି ବଳରେ କୌଣସି କୌଣସି ରାଜା ଏମାନଙ୍କୁ ଗ୍ରହଣ କରିଥିବାର ଦୃଷ୍ଟାନ୍ତ ମିଳୁଥିଲେ ହେଁ, ଶାସକଗୋଷ୍ଠୀ ପକ୍ଷରେ ଏମାନଙ୍କ ସ୍ୱତଃ ଗ୍ରହଣ କରିବା ସ୍ୱାଭାବିକ ନ ଥିଲା । ତତ୍ପରେ ନୈଷ୍ଠିକ ଦ୍ୱିଜ ଗୋଷ୍ଠୀ ପ୍ରଭାବରେ ପ୍ରଥମେ ଏମାନେ ଭକ୍ତକବି ଓ ସାଧକମାନଙ୍କର ବିରୋଧ କରିବାକୁ ଛାଡ଼ୁ ନ ଥିଲେ । କିନ୍ତୁ ସେତେବେଳେ ସେମାନଙ୍କ ପକ୍ଷରେ ଏକାଧିକ କାରଣରୁ ଏହା ସମ୍ଭବ ନ ଥିଲା । ପୂର୍ବେ ଏହାର ସୂଚନା ଦିଆ ଯାଇଅଛି ।

ଇତିହାସର ଇଙ୍ଗିତ—

ଏହି ପ୍ରସଙ୍ଗ ଶେଷ କରିବା ପୂର୍ବରୁ ଭକ୍ତକବିଙ୍କ ଦୃଷ୍ଟିକୋଣରେ ଇତିହାସର ଯେଉଁ ଇଙ୍ଗିତ ଭରି ରହିଥିଲା, ତାର ଟିକିଏ ସୂଚନା ଦେଇ ରଖିବା ଉଚିତ । ଭକ୍ତକବିମାନଙ୍କର ଦୃଷ୍ଟି ଥିଲା ଧର୍ମର ଦୃଷ୍ଟି । ଏହା ଭାରତବର୍ଷର ଚିରନ୍ତନ ଆଦର୍ଶସେବିତ ଧର୍ମ । ଏହାକୁ ଭେଦ କରି ଭକ୍ତି-ସାହିତ୍ୟର ବିକାଶ ଘଟିଥିଲା । ଇତିହାସ ଦୃଷ୍ଟିରେ ଦେଖିଲେ, ଆମ ଦେଶର ଧାର୍ମିକ,ସାମାଜିକ ଓ ରାଷ୍ଟ୍ରୀୟ ଅଗ୍ରଗତିରେ ଏହାର ଦାନ ନିତାନ୍ତ ଅକିଞ୍ଚିତ୍କର ନୁହେ । ଭକ୍ତିସାହିତ୍ୟର ପ୍ରଚାର ଦ୍ୱାରା ଅଲକ୍ଷ୍ୟରେ ଏ ଦେଶରେ କେତୋଟି ମୌଳିକ ଲକ୍ଷ୍ୟ ସାଧିତ ହୋଇଥିଲା । ଜନସାଧାରଣଙ୍କ ମାନସିକ ଉନ୍ନତିରେ ଏହା ସାହାଯ୍ୟ କରିଥିଲା । ଖିଆଲି ଶାସନ ଓ ରାଷ୍ଟ୍ରୀୟ ଉତ୍ପୀଡ଼ନରୁ ସେମାନଙ୍କୁ ରକ୍ଷା କରିଥିଲା । ଜଗନ୍ନାଥ, ରାମ, କୃଷ୍ଣ ଆଦି କୌଣସି ଗୋଟିଏ

ଦେବତାଙ୍କ ଅନୁଗ୍ରହ ଆଶାୟୀ ଭଳେ ସର୍ବଜନ ଗ୍ରହଣଯୋଗ୍ୟ ଏକ ଭକ୍ତିମାର୍ଗରେ ସମାଜର ସବୁ ସ୍ତରର ଲୋକଙ୍କ ମଧ୍ୟରେ ସଂହତି ଓ ସମନ୍ୱୟ ଆଣିବାର ପ୍ରୟାସ ଦେଖାଦେଲା । ଭାରତର ପ୍ରାଚୀନ ବର୍ଣ୍ଣାଶ୍ରମ ଓ ପରମ୍ପରାର ପୁନଃ ପ୍ରତିଷ୍ଠା, ଉଚ୍ଚିତ ବ୍ୟକ୍ତି ଉପରେ ଈଶ୍ୱର ଓ ଧର୍ମର ପ୍ରାଧାନ୍ୟ ସ୍ଥାପନର ପଥ ଏହାଦ୍ୱାରା ପରିଷ୍କାର ହୋଇଗଲା । ଉଚ୍ଚଶ୍ରେଣୀର ପ୍ରତିରୋଧ ସତ୍ତ୍ୱେ ନିମ୍ନ ଜନସମାଜର ନିକଟ ବନ୍ଧୁ ରୂପେ ଭାରତୀୟ ସଂସ୍କୃତି ରାଜ୍ୟରେ ଏହି ଭକ୍ତକବିମାନେ ବର୍ତ୍ତ୍ମାନୀ ଓ ଅଗ୍ରଗାମୀ । ସଂସ୍କୃତିର ପ୍ରସାର ମାନବ ମୁକ୍ତିର ପଥ ଉନ୍ମୁକ୍ତ କରେ । ଏହି ବିଚାରରେ ଭକ୍ତକବିମାନେ ମାନବ ପ୍ରଗତିର ପଥପ୍ରଦ୍ରଷ୍ଟା । ଏକ ବିଶାଳ ଭୂଖଣ୍ଡର ଉତ୍ପୀଡ଼ିତ ଓ ବିପଥଗାମୀ ଅଗଣିତ ଜନସାଧାରଣଙ୍କ ମୁକ୍ତିର ମଶାଲଧାରୀ ରୂପେ ଏମାନେ ବିଶ୍ୱର ଶାନ୍ତିନାୟକ-ମାନଙ୍କ ମଧ୍ୟରେ ବରେଣ୍ୟ । ଏକଥା ଅସ୍ୱୀକାର କଲେ ଚଳିବ ନାହିଁ ଯେ, ଏସବୁ ସତ୍ତ୍ୱେ ଜାତୀୟ ଜୀବନର ଅଗ୍ରଗତିରେ ବିରୋଧ କରିବା ଭଳି ଉପାଦାନ ବି ଏମାନଙ୍କ ବିଚାରଧାରାରେ ଥିଲା । ସବୁବେଳେ ସମାଜ ମଧ୍ୟରେ ସ୍ତରବନ୍ଧନ, ଗୁରୁ ଓ ଈଶ୍ୱରଙ୍କର ଅସନ୍ଦିଗ୍ଧ ପ୍ରଭୁତ୍ୱ ଓ ଏକାଧିପତ୍ୟ ଭିତରେ ବ୍ୟକ୍ତିର ଉଜ୍ଜ୍ୱଳ ବିକାଶ ଲାଗି ବିରୋଧଭାବ ପୂରି ରହିଥିଲା । ପାରମ୍ପରିକତାର ନିବନ୍ଧନ ହେତୁ, କୌଣସି ନୂତନ ସୃଷ୍ଟି, ବସ୍ତୁ ବା ମାନସ ଜଗତରେ ନୂତନ ଉଦ୍ଭାବନର ପ୍ରେରଣା ଏଥିରେ ନ ଥିଲା । ଏମାନଙ୍କ ପ୍ରଭାବରେ ଦେଶରେ କୌଣସି ନୂତନ ବିଜ୍ଞାନ ବା ଦର୍ଶନ ଚର୍ଚ୍ଚାର ସୂଚନା ମିଳେ ନାହିଁ । ଏହା ବ୍ୟତୀତ ଭକ୍ତିସାହିତ୍ୟର ଦୃଷ୍ଟି ଥିଲା ବହୁ ପରିମାଣରେ ଅତୀତମୁଖୀ । ଦେଶ ଭବିଷ୍ୟତର ପ୍ରଗତି ପାଇଁ ଯଥେଷ୍ଟ ଉପାଦାନ ଏଥିରୁ ପାଇ ନ ଥିଲା । ବାସ୍ତବ ଇତିହାସର ଅନୁଶୀଳନ କଲେ, ଦେଖିବାକୁ ମିଳେ ଦେଶ ଓ ସମାଜ କ୍ରମଶଃ ଗଭୀର ଅନ୍ଧକାର ପଥରେ ଗତି କରିଥିଲା ।

---

# କବି ବଳରାମ ଦାସ

ହୁଏ ମୋ ପ୍ରତୀତ  ନୀଳାଚଳ-ପତି  ଉତ୍କଳବନ୍ଧୁ ଠାକୁର
ଉତ୍କଳ କଲ୍ୟାଣେ  ଯୁଗ ଅଭ୍ୟାସେ  ଜନ୍ମିଲେ ଯେ ଭାଗିପୁର
କବି ରୂପେ ପୁଣି  ଅବତରି ବେନି  ଜଗନ୍ନାଥ ବଳରାମ
ଧର୍ମ-କର୍ମ-ଦୀକ୍ଷା  ସାହିତ୍ୟ ସୁଶିକ୍ଷା  ପ୍ରଚାରି ରଖିଲ ନାମ ।

ଗୋପବନ୍ଧୁ ଦାସ—ଅବକାଶ ଚିନ୍ତା—ପୃ ୧୨

## ଜୀବନୀ ଉପାଦାନ ଅନୁସନ୍ଧାନର ଦୁରୂହତା—

ଉତ୍କଳବନ୍ଧୁ ନୀଳାଚଳ-ପତି ଜଗନ୍ନାଥ ଓ ବଳରାମ ଜଗନ୍ନାଥ ଦାସ ଓ ବଳରାମ ଦାସ ରୂପେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିବାର ବିଶ୍ୱାସ ଉତ୍କଳମଣି ଗୋପବନ୍ଧୁ ନିଜ କବିତାରେ ପ୍ରକାଶ କରିଅଛନ୍ତି । ଭକ୍ତ ଓ ସାଧକମାନଙ୍କ ଜୀବନକୁ ବୁଝିବା ଲାଗି ଏହା ଆମର ଗୋଟିଏ ପରମ୍ପରା । ଆଜି ପର୍ଯ୍ୟନ୍ତ ଏହାର ଦାଗ ଶିକ୍ଷିତ ସାଧାରଣଙ୍କ ମନରୁ ମଧ୍ୟ ଲିଭି ନାହିଁ । ଏଭଳି ଗୋଟିଏ ପରମ୍ପରା ଗଢ଼ି ଉଠିବାର ଏକ ମନସ୍ତାତ୍ତ୍ୱିକ କାରଣ ଅନୁମାନ କରାଯାଇ ପାରେ । ସମ୍ମୁଖରେ ବିରାଟ ସୃଷ୍ଟିକୁ ରଖି, ସ୍ରଷ୍ଟା ଯଦି ତାର ଅନ୍ତରାଳରେ ଅପ୍ରକଟ ରହନ୍ତି, ତେବେ ଦର୍ଶକ ମନରେ ସ୍ରଷ୍ଟା ସମ୍ବନ୍ଧରେ ଯେଉଁ ଏକ ଅତିମାନସିକ ଭାବ ଆସେ, ଏହା ସେଇପରି ଏକ ଭାବ । ଭକ୍ତ ଓ ସାଧକ କବିଗଣ ଆପଣାର ସାଧନାଲବ୍ଧ ବିରାଟ ଜ୍ଞାନକୋଷମାନ ରଖିଯାଇ ଅଛନ୍ତି । କିନ୍ତୁ ଆପଣା ସ୍ୱରୂପର ପ୍ରକାଶ ପାଇଁ କେଉଁଠି କିଛି ଇଙ୍ଗିତ ଦେଇ ଯାଇ ନାହାନ୍ତି । ଭକ୍ତକବିଗଣ ସେମାନଙ୍କ ଅମୂଲ୍ୟ ଗ୍ରନ୍ଥ-ଗୁଡ଼ିକର କୃତିତ୍ୱକୁ ଆପଣାର ସିଦ୍ଧି ବୋଲି ନ କହି ଐଶୀ ପ୍ରଭାବ ଓ ଦୈବାନୁଗ୍ରହ ବୋଲି ପ୍ରଚାର କରି ପାଇଅଛନ୍ତି । ବଳରାମ ଦାସ ଦାଣ୍ଡି-ରାମାୟଣକୁ ଜଗନ୍ନାଥଙ୍କ ନାମରେ ଉତ୍ସର୍ଗ କରି କହିଅଛନ୍ତି—"ମୋ ମୁଖରୁ ଜଗମୋହନ ରାମାୟଣ ଭଳି ଗ୍ରନ୍ଥ ବାହାରିବା ମୂଷିକ ବିବରରୁ ମତ୍ତ ନାଗ ବାହାରିବା ଭଳି । ଜଗମୋହନ ରାମାୟଣର କବି ସ୍ୱୟଂ ଜଗନ୍ନାଥ" (ଉତ୍ତରା) । କେବଳ ଆପଣାର ସର୍ବଶ୍ରେଷ୍ଠ କୃତି ରାମାୟଣ ବିଷୟରେ ନୁହେଁ,

ସ୍ଥାନ ବଡ଼ ସମସ୍ତ ଗ୍ରନ୍ଥରେ ଏଇ ଭଳି ଦେବାନୁଗ୍ରହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ କାଳରେ ତାଙ୍କର ମୁଗ୍ଧ ଭକ୍ତଗୋଷ୍ଠୀ ଓ ଶିଷ୍ୟ ସଂପ୍ରଦାୟଙ୍କ ଦ୍ୱାରା ଏଇ ଶ୍ରେଣୀ ପ୍ରଭାବ ଓ ଅତିମାନୁଷିକତା ପ୍ରସଙ୍ଗ ବହୁ ପରିମାଣରେ ଅତିରଞ୍ଜିତ ହୋଇ ପ୍ରଚ୍ଛିତ ହୋଇଅଛି । ଭକ୍ତମାନଙ୍କର ଏଇ ଅତିରଞ୍ଜନ ପୁଣି ସାଧାରଣଙ୍କ ଭିତରେ ଲୌକିକ କଳ୍ପନାରେ ଖଣ୍ଡିତ ମଣ୍ଡିତ ହୋଇ ଅଦ୍ଭୁତ କିଂବଦନ୍ତୀମାନ ଗଢ଼ା ହୋଇଛି । ଏଇ ସବୁଥିରୁ କବିଙ୍କ ଜୀବନୀର ଉପାଦାନ ଖୋଜି ବାହାର କରିବା ସବୁବେଳେ ସହଜ ନୁହେ । ପୁଣି ଏଥିରୁ ଯେଉଁ ଉପାଦାନ ସଂଗ୍ରହ କରିବା ସମ୍ଭବ ତାହା କୌଣସି ସାହିତ୍ୟସାଧକଙ୍କର ଜୀବନଚରିତକୁ ବୁଝିବା ପାଇଁ ଯଥେଷ୍ଟ ନୁହେଁ ।

## ଉପାଦାନର ମୂଳ ଓ ପ୍ରକୃତ -

ଏକଥା କହିବା ନିଷ୍ପ୍ରୟୋଜନ ଯେ ବଳରାମ ଦାସଙ୍କ ଜୀବନ ଚରିତ ଯେଉଁ ମିଳୁଥିବା ଉପାଦାନଗୁଡ଼ିକ ବହୁ ପରିମାଣରେ ଭକ୍ତ ପରମ୍ପରା ଅଥବା କିଂବଦନ୍ତୀମୂଳକ । ଏଥିରେ ଭକ୍ତଭାବରେ ବଳରାମ ଦାସଙ୍କ ପ୍ରତିଷ୍ଠା ବ୍ୟତୀତ ବ୍ୟକ୍ତିଗତ ଜୀବନ ବିଷୟରେ କୌଣସି ଉପାଦାନ ମିଳେ ନାହିଁ କହିଲେ ଚଳେ । ଅବଶ୍ୟ ଏହାଦ୍ୱାରା ପୁରାଣକବିଙ୍କୁ ବୁଝିବାରେ ବିଶେଷ ଅସୁବିଧା ହୁଏ ନାହିଁ । କାରଣ ସବୁବେଳେ ବ୍ୟକ୍ତିଜୀବନର ସ୍ଥାନ ବଡ଼ କାହାଣୀ, ସୁଖ ଦୁଃଖରୁ ରସ ସଞ୍ଚୟ କରି ପୁରାଣକବି ତାଙ୍କର ସାହିତ୍ୟ ରଚନା କରି ନ ଥାନ୍ତି । ପରମ୍ପରାପୁଷ୍ଟ ପ୍ରାଚୀନ ଚିନ୍ତାଧାରାର ବିକାଶକ୍ରମହିଁ ଏଥିରେ ଦେଖିବାକୁ ମିଳେ । ଭକ୍ତକବିଙ୍କ ଜୀବନୀ ବିଷୟରେ ଯେଉଁ କେତେକ ଉପାଦାନ ମିଳେ, ତାହା ତାଙ୍କ ଜୀବନର ମୁଖ୍ୟତଃ ଏଇ କେତୋଟି ଦିଗ ଉପରେ ଆଲୋକପାତ କରିଥାଏ—ପିତାମାତା ଓ ଜନ୍ମସ୍ଥାନ କାଳର ସୂଚନା, ଧର୍ମଜୀବନ ଓ ଭକ୍ତଭାବରେ ପ୍ରତିଷ୍ଠା, ରାଜ ସଂପର୍କ । ପୁଣି ବଳରାମ ଦାସଙ୍କ ଜୀବନୀର ଉପାଦାନ ପ୍ରଧାନତଃ ଏଇ କେତୋଟି ସୂତ୍ରରୁ ମିଳିଥାଏ—ପ୍ରଥମତଃ କବିଙ୍କ ନିଜ ନାମରେ ଭଣିତ ରଚନା, ସମକାଳୀନ ଓ ପରବର୍ତ୍ତୀ ବୈଷ୍ଣବ ସାହିତ୍ୟ, ପଡ଼ୋଶୀ ବୈଷ୍ଣବ ସାହିତ୍ୟ ଓ କିଂବଦନ୍ତୀ ।

ବଳରାମ ଦାସଙ୍କର ଗ୍ରନ୍ଥ ସଂଖ୍ୟା ଏପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇନାହିଁ । ପୁଣି ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବଳରାମ ଦାସଙ୍କ ନାମରେ ଭଣିତ ଗ୍ରନ୍ଥଗୁଡ଼ିକୁ ରାମାୟଣକାର ଭକ୍ତକବି ବଳରାମ ଦାସଙ୍କର ରଚନା ବୋଲି ନିଶ୍ଚିତ ଭାବରେ ଗ୍ରହଣ କରିବା ସମ୍ଭବ ନୁହେ । ବଟ ଅବକାଶ, ଭାବସମୁଦ୍ର ଆଦି ଗ୍ରନ୍ଥଗୁଡ଼ିକରେ ଯେପରି ଭାବରେ ଭକ୍ତ ରୂପେ କବିଙ୍କ ଅତି-ମାନୁଷିକ ମହିମା ପ୍ରକଟିତ ହୋଇଅଛି, ଜ୍ଞାନ ଓ ଯୋଗମାର୍ଗରେ ସଂପୋଷକ ବଳରାମ ଦାସଙ୍କ ଲେଖନୀରୁ ସେଗୁଡ଼ିକ ନିସୃତ ହୋଇଥିବ କି ନା, ଏ ବିଷୟରେ ସନ୍ଦେହ ହେବା ସ୍ୱାଭାବିକ । ପଣ୍ଡିତ ନୀଳକଣ୍ଠ ଦାସ ଏଇପରି ସନ୍ଦେହ ପ୍ରକାଶ କରି ଲେଖିଛନ୍ତି—"ଦାଣ୍ଡି ରାମାୟଣକାର ବଳରାମ ଦାସ, ଚୈତନ୍ୟ ଓ ତାଙ୍କ ସଙ୍ଗେ ଗୌଡ଼ୀୟ ବୈଷ୍ଣବଙ୍କ ଓଡ଼ିଶା ଆକ୍ରମଣରେ ଛଟପଟ ହୋଇ ଓଡ଼ିଶାର ପାରମ୍ପରିକ ଧର୍ମକୁ ଭାଗବତ ଧର୍ମ ଓ କୃଷ୍ଣଭକ୍ତିରୁ ଭିନ୍ନ ନୁହେ ବୋଲି ବ୍ୟାଖ୍ୟା କରି ବୁଝେଇବା ପାଇଁ ଅତିବଡ଼ ଜଗନ୍ନାଥ ଦାସ 'ତୁଳାଭିଣା' ଓ ଯଶୋବନ୍ତ 'ପ୍ରେମଭକ୍ତି-ବ୍ରହ୍ମଗୀତା' ଲେଖିଲା ପରି 'ବ୍ରହ୍ମାଣ୍ଡ ଭୂଗୋଳ' ଓ 'ଗୁପ୍ତଗୀତା' ପରି ଖଣ୍ଡେ ଅଧେ ପୁସ୍ତିକା ଲେଖିଥିବେ । କିନ୍ତୁ 'ପଣସ ଚୌତିଶ', 'ବଟଅବକାଶ', 'ଭାବସମୁଦ୍ର' ପରି ଗ୍ରନ୍ଥମାନ ଯେ କଦାପି ସେଇ ବଳରାମ ଦାସଙ୍କର ନୁହେ ଏହା ସ୍ଥିର କରିବାକୁ କଣ ସାହିତ୍ୟିକ ବିଚାର ଲୋଡ଼ା ? ଏସବୁ ଭକ୍ତଙ୍କ କାମ" (୧) । ଅବଶ୍ୟ ଏଭଳି ମତ ଏବେ କେବଳ ଅନୁମାନ ମାତ୍ର । ଏହା ବ୍ୟତୀତ ବଳରାମ ଦାସଙ୍କ ନାମରେ ନାମିତ ଗ୍ରନ୍ଥଗୁଡ଼ିକର ବୈଜ୍ଞାନିକ ଭାବରେ ଏପର୍ଯ୍ୟନ୍ତ ସଙ୍କଳନ ହୋଇ ନାହିଁ । ଯେଉଁ ଛପା ବହିଗୁଡ଼ିକ ମିଳୁଛି, ବା ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଯେଉଁ ପୋଥିଗୁଡ଼ିକ ମିଳୁଛି ସେଥିରେ ବହୁ ପ୍ରକ୍ଷିପ୍ତ ଅଂଶମାନ ଥିବା ସମ୍ଭବ । ଏଇ ସବୁ ଦିଗପ୍ରତି ଦୃଷ୍ଟି ରଖି ଏଥିରୁ ବଳରାମ ଦାସଙ୍କ ଜୀବନୀ ପାଇଁ ମିଳୁଥିବା ଉପାଦାନମାନର ବିଚାର କରିବାକୁ ହେବ ।

ବଳରାମ ଦାସଙ୍କ ରଚନାଗୁଡ଼ିକ ମଧ୍ୟରେ ଦାଣ୍ଡିରାମାୟଣ ସର୍ବ-ପ୍ରଥମ ଓ ସର୍ବପ୍ରଧାନ । ଏହାକୁ କବିଙ୍କର ପ୍ରାଥମିକ ଜୀବନର ରଚନା ବୋଲି ମନେ କରିବାର ଗୋଟିଏ କାରଣ ହେଉଛି—ଏଥିରେ କୌଣସି-ଠାରେ ଚୈତନ୍ୟ ଦେବଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇନାହିଁ । ଚୈତନ୍ୟଙ୍କ

(୧) ଓଡ଼ିଆ ସାହିତ୍ୟର କ୍ରମ-ପରିଣାମ—ଦ୍ୱିତୀୟ ଭାଗ, ପୃ : ୧୯୫ ।

ପୁରୀ ଆଗମନ ପୂର୍ବରୁ ଏହା ରଚିତ ହୋଇଥିବା ସମ୍ଭବ । ପୁଣି ୩୦ ବର୍ଷ ବୟସରେ ଏହା ରଚନା କରିଥିଲେ ବୋଲି କବି ଉତ୍ତରକାଣ୍ଡରେ ଉଲ୍ଲେଖ କରିଅଛନ୍ତି । ଏଥିରୁ ମହାମନ୍ତ୍ରୀବର ସୋମନାଥ ମହାପାତ୍ର କବିଙ୍କର ପିତା ଓ ମନୋମାୟା କବିଙ୍କର ମାତା ଥିଲେ ବୋଲି ସୂଚନା ମିଳୁଛି । ଏହାଛଡ଼ା କବିଙ୍କ ଦୃଷ୍ଟିକୋଣର ବିଶଦ ପରିଚୟ ମଧ୍ୟ ଏଥିରୁ ମିଳିଥାଏ । ଏ ପ୍ରବନ୍ଧରେ ପରେ ତାହା ଆଲୋଚନାର ସୁଯୋଗ ଆସିବ । ଦାଣ୍ଡିରାମାୟଣରେ ଏଇ ତଥ୍ୟଗୁଡ଼ିକ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ଭଣିତାରୁ ମଧ୍ୟ ପ୍ରମାଣିତ ହୁଏ । ଏହା ବ୍ୟତୀତ "ଅମରକୋଷ ଗୀତା"ରୁ ରାଜା ପ୍ରତାପରୁଦ୍ରଙ୍କର ବୈଷ୍ଣବ ଭକ୍ତି ଓ "ବେଦାନ୍ତସାର ଗୁପ୍ତଗୀତା"ରୁ ରାଜା ପ୍ରତାପରୁଦ୍ର ବଳରାମ ଦାସଙ୍କୁ ପରମଗୁରୁ ରୂପେ ଗ୍ରହଣ କରିଥିବାର ସୂଚନା ମିଳେ (୨) ।

**ଭକ୍ତ କବିଙ୍କ ମହିମା—**

କବିଙ୍କ ଭଣିତ ଅନ୍ୟ କୌଣସି ଗ୍ରନ୍ଥରେ ତାଙ୍କର ଜୀବନୀ ବିଷୟରେ ବିଶେଷ ଉପାଦାନ ମିଳୁ ନ ଥିଲେହେଁ ସାଧକ ଭକ୍ତ ବଳରାମ ଦାସଙ୍କର ମହିମାର ବିଶଦ ବର୍ଣ୍ଣନା ତାଙ୍କର ଭାବସମୁଦ୍ର, ବେଦାନ୍ତସାର, ଗୁପ୍ତଗୀତା ଓ ବଟ ଅବକାଶ ଆଦି ଗ୍ରନ୍ଥରୁ ମିଳିଥାଏ । ଏଇ ଗ୍ରନ୍ଥଗୁଡ଼ିକରେ ରାଜା ପ୍ରତାପରୁଦ୍ରଙ୍କ ଦରବାରରେ ବଳରାମ ଦାସଙ୍କ ନିଗ୍ରହ ଓ ଯୌଗୀ ଶକ୍ତି ବଳରେ କବିଙ୍କର ଆତ୍ମପ୍ରତିଷ୍ଠା କାହାଣୀ ହୃଦୟଗ୍ରାହୀ ଭାବରେ ବର୍ଣ୍ଣିତ ହୋଇଅଛି । କବିଙ୍କ ସମୟର ପରିସ୍ଥିତି ଉପରେ ବେଦାନ୍ତ ସାର ଗୁପ୍ତଗୀତା କେତେକ ପରିମାଣରେ ଆଲୋକପାତ କରିଥାଏ । ଏଥିର ସଂକ୍ଷିପ୍ତ କଥା ହେଉଛି—ମହାରାଜା ପ୍ରତାପରୁଦ୍ର ଦେବଙ୍କର ସପ୍ତଦଶ ଅଙ୍କରେ ମକର ମାସ ଶୁକ୍ଳପକ୍ଷ ଏକାଦଶୀ ଗୁରୁବାର ଦିନ ମୁକ୍ତିମଣ୍ଡପରେ ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତମାନଙ୍କର ଗୋଟିଏ ସଭା ବସିଥିଲା । ସେଥିରେ ପ୍ରଣବର ଜନ୍ମ ବିଷୟରେ ପଣ୍ଡିତ ପ୍ରବର ପୁରନ୍ଦର ପୁରୋହିତ ଓ ବିଦ୍ୟାବିଶାରଦ ବଳଭଦ୍ର ରାଜଗୁରୁଙ୍କ ମଧ୍ୟରେ ତର୍କ ହେଲା । ଏହି ତର୍କ କ୍ରମେ କଳହରେ ପରିଣତ ହେଲା । ବ୍ରାହ୍ମଣ ବେଶରେ ସେଠାରେ ଉପସ୍ଥିତ ହୋଇ କବି

(୨) "ପ୍ରତାପରୁଦ୍ର ମହାରାଜା । ବୈଷ୍ଣବେ କଲ ଦାସ୍ୟପୂଜା"
୨ୟ ଅ:—ଅମରକୋଷ ଗୀତା ।
"ଚୈତନ୍ୟ ଗୁରୁ ଯେ ମୋହର । ପରମ ଗୁରୁ ତୁମ୍ଭେ ମୋର ।"
୩୪ଶ ଅ:—ବେ: ସା: ଗୁ: ଗୀ ।

ବଳରାମ ଦାସ ସେ ପ୍ରଶ୍ନର ସମାଧାନ କରିଥିଲେ । ବ୍ରାହ୍ମଣମାନେ ଏହା ଜାଣିପାରି ରାଜା ,ପ୍ରତାପରୁଦ୍ରଙ୍କଠାରେ ଜଣାଇବାରେ ଦରବାରରେ ବଳରାମ ଦାସଙ୍କୁ ତିରସ୍କାର କରାଯାଇଥିଲା । ଏଥିରେ କବିଙ୍କ କ୍ରୋଧ ଜାତ ହେଲା । ତାଙ୍କର ବେଦାନ୍ତ କହିବା ଦୂରେ ଥାଉ ଯାହାଙ୍କ ମଥାରେ ସେ ହାତ ଦେବେ, ସେ ମଧ୍ୟ ବେଦାନ୍ତ କହିବ ବୋଲି ବଳରାମ ଦାସ କହିଥିଲେ । ଏଥିରେ ତାଙ୍କୁ ବନ୍ଦୀ କରାଗଲା ଓ ପରଦିନ ସକାଳେ ହରିଦାସ ନାମକ ଜଣେ ମୂର୍ଖଙ୍କୁ ଆଣି, ତାଙ୍କ ଉକ୍ତିର ପରୀକ୍ଷା କରାଗଲା । ଏଥିରେ କବି ସଫଳ ହେଲେ । ମଥାରେ ହାତ ଦେବାମାତ୍ରେ, ହରିଦାସ ବେଦାନ୍ତ କହିଥିଲା । କବିଙ୍କର ଏହି ଅଲୌକିକ ଐଶୀ ଶକ୍ତିରେ ମୁଗ୍ଧ ହୋଇ ରାଜା ପ୍ରତାପରୁଦ୍ର ଓ ମୁକ୍ତିମଣ୍ଡପର ବିପ୍ରଗୋଷ୍ଠୀ ବେଦାନ୍ତ ବ୍ୟାଖ୍ୟାପାଇଁ ଭକ୍ତ କବିଙ୍କୁ ଅନୁରୋଧ କରିଥିଲେ । କବି ତାହା ଗ୍ରହଣ କରିଥିଲେ । ଏଇ ଗ୍ରନ୍ଥରେ ଭକ୍ତ ଓ ସାଧକମାନଙ୍କର ମହତ୍ତ୍ୱ ପ୍ରତିପାଦନ ସଙ୍ଗେ ସଙ୍ଗେ ଶୁଷ୍କ ତାର୍କିକ ବ୍ରାହ୍ମଣମାନଙ୍କୁ ହୀନଭାବରେ ପ୍ରତିପାଦିତ କରାଯାଇଅଛି । ଶାନ୍ତ୍ରା-କ୍ଷେତ୍ରରେ ଅଗ୍ରଗାମୀ ଏଇ ଭକ୍ତ ସାଧକମାନେ ଯେ ନୈଷ୍ଠିକ ବ୍ରାହ୍ମଣ-ମାନଙ୍କର ବିଶେଷ ବିରୋଧରେ ଆସୁଥିଲେ—ତାହା ଏହାଦ୍ୱାରା ପ୍ରମାଣିତ ହୁଏ ।

କବିଙ୍କ ତୃତୀୟ ମହିମା "ଭାବ ସମୁଦ୍ର"ରେ ପ୍ରକଟିତ ହୋଇଅଛି । ଭଗବାନ ଭକ୍ତିର ଅଧୀନ ଓ ତାଙ୍କ ଅନୁଗ୍ରହରେ ଭକ୍ତ ଅସୀମ ଶକ୍ତିର ଆଧାର — ଏଇ କଥା ପ୍ରତିପାଦନ ଲାଗି ଏଥିରେ ପ୍ରୟାସ ହୋଇଅଛି । ଏଥିର କାହାଣୀ ହେଉଛି—ଥରେ ରଥଯାତ୍ରା ସମୟରେ ବଳରାମ ଦାସ ଜଗନ୍ନାଥଙ୍କ ରଥକୁ ଉଠିବାକୁ ଗଲାବେଳେ ପ୍ରତାପରୁଦ୍ରଙ୍କ ସେବକଙ୍କ ଦ୍ୱାରା ଲାଞ୍ଛିତ ହୋଇଥିଲେ । ଏଥିରେ ଭକ୍ତ ଅତ୍ୟନ୍ତ କ୍ଷୁବ୍ଧ ହେଲେ । ସେ ବାଙ୍କିମୁହାଣରେ ଗୋଟିଏ ବାଲିକା ରଥ ତିଆରି କରି ସେଥିରେ ବିଜେ ହେବାଲାଗି ଜଗନ୍ନାଥଙ୍କୁ ଅଶେଷ ପ୍ରାର୍ଥନା କଲେ । ଭକ୍ତ ଅଧୀନ ଭଗବାନ । ସେ ଏହି ବାଲିରଥରେ ବିଜେ କଲେ ଓ ନନ୍ଦିଘୋଷ ଅଚଳ ରହିଲା । ଶେଷରେ ଜଗନ୍ନାଥଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ରାଜା ପ୍ରତାପରୁଦ୍ର ନିଜେ ବଳରାମ ଦାସଙ୍କଠାକୁ କ୍ଷମା ଭିକ୍ଷାଲାଗି ଆସିଲେ । ବଳରାମ ଦାସ ରାଜାଙ୍କ ଲୋକଙ୍କ-ଠାରୁ ଯେପରି ଅପମାନ ପାଇଥିଲେ, ରାଜାଙ୍କୁ ଠିକ୍ ସେଇପରି ଅପମାନ ଭୋଗ କରିବାକୁ ହୋଇଥିଲା ।

ଭକ୍ତକବିଙ୍କ ମହିମାର ଅନ୍ୟ ଗୋଟିଏ ଦିଗ ବିଚିତ୍ରଅବକାଶରେ ଫୁଟିଛି । ଯେ କୌଣସି ବସ୍ତୁ ପ୍ରତି ଭକ୍ତର ଇଚ୍ଛା ହେଲେ ବି ଭଗବାନ ତାହା ପୂରଣ କରି ଥାଆନ୍ତି—ଏହି କଥା ଏଥିରେ ଲୁହାପାଇଅଛି । ଭକ୍ତକବିଙ୍କର ଲଙ୍କା ଦେଖିବାର ବଳବତୀ ଇଚ୍ଛା ପୂରଣପାଇଁ ଦିନେ ସ୍ୱୟଂ ଜଗନ୍ନାଥ, କବିଙ୍କ ହାତରେ ନିଜର ରତ୍ନଖଟଣି ଦେଇ ତାଙ୍କୁ ଲଙ୍କା ଘେନି ଯାଇଥିଲେ । ରାତି ଶେଷରେ ଲଙ୍କା ଦର୍ଶନରୁ ଫେରି ତନ୍ମୟ ଭକ୍ତ ଜଗନ୍ନାଥଙ୍କ ରତ୍ନଖଟଣି ଯଥାସ୍ଥାନରେ ରଖିବାକୁ ଭୁଲିଗଲେ । ସକାଳେ ବଳରାମ ଦାସଙ୍କଠାରେ ଝଟିର ଥିବା କଥା ପ୍ରକାଶ ପାଇବା ପରେ ରଜା ପ୍ରତାପରୁଦ୍ର ତାଙ୍କୁ ଭର୍ତ୍ସନା କରିଥିଲେ । କିନ୍ତୁ ଭକ୍ତକବି ଲଙ୍କା ଦର୍ଶନର ଅଦ୍ଭୁତ କାହାଣୀ ବର୍ଣ୍ଣନା କରିବାରୁ ସମସ୍ତେ ଚକିତ ହୋଇଥିଲେ ।

କବିଙ୍କ ଜୀବନ ଚରିତ ଜାଣିବାଲାଗି ଭାବସମୁଦ୍ର ବା ବିଚିତ୍ରଅବକାଶ ଭଳି ଗ୍ରନ୍ଥ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇ ନ ଥିଲେ ମଧ୍ୟ ଏଗୁଡ଼ିକ ଭକ୍ତ-ଗୋଷ୍ଠୀର ଆଦରର ଧନ । ହେତୁବାଦୀ ଦୃଷ୍ଟିରେ ପୁରାଣ କବିଙ୍କୁ ବୁଝିବାରେ ଏଗୁଡ଼ିକର କୌଣସି ଆବଶ୍ୟକତା ଅନୁଭୂତ ହୁଏ ନାହିଁ । ପୁରାଣ ବିଶ୍ୱାସୀ ଜନସାଧାରଣଙ୍କ ମଧ୍ୟରେ ଭକ୍ତ ଓ ସାଧକ ଭାବରେ କବିଙ୍କ ମହିମା ଏଭଳି ଗ୍ରନ୍ଥମାନ ବିଶେଷ ଭାବରେ ପ୍ରକଟିତ କରିଥାଏ ।

## ସମସାମୟିକ ଓ ପରବର୍ତ୍ତୀ ବୈଷ୍ଣବ ସାହିତ୍ୟରେ ବଳରାମ ଦାସଙ୍କ ପ୍ରସଙ୍ଗ—

ଭକ୍ତ ସାଧକ ଓ କବି ରୂପେ ବଳରାମ ଦାସ ଉଚ୍ଚ ଆସନ ଲାଭ କରି ସାରିବା ପରେ ତାଙ୍କର ମହିମା ତାଙ୍କର ଶିଷ୍ୟ, ଭକ୍ତ ଓ ଶ୍ରାବକମାନଙ୍କ ମହଲରେ ପରିବ୍ୟାପ୍ତ ହୋଇ ପଡ଼ିବା ସ୍ୱାଭାବିକ । ତେଣୁ ପରବର୍ତ୍ତୀ ବୈଷ୍ଣବ ଗ୍ରନ୍ଥଗୁଡ଼ିକରେ ବଳରାମ ଦାସଙ୍କ ପ୍ରସଙ୍ଗ ଉଲ୍ଲିଖିତ ହୋଇଥିବାର ଦେଖାଯାଏ । ସାଧାରଣତଃ ଏଥିରେ ଭକ୍ତ ଭାବରେ ବଳରାମ ଦାସଙ୍କ ମହତ୍ତ୍ୱ, ପଞ୍ଚସଖାଙ୍କର ପରସ୍ପର ସମ୍ପର୍କ, ରଜା ପ୍ରତାପରୁଦ୍ରଙ୍କ ଦରବାର ଓ ତତ୍କାଳୀନ ବିଦ୍ୱନ୍ମଣ୍ଡଳୀରେ ତାଙ୍କର ପ୍ରତିଷ୍ଠା ବିଷୟ ଉଲ୍ଲିଖିତ ହୋଇଅଛି ।

## ଶୂନ୍ୟସଂହିତା—ଅଚ୍ୟୁତାନନ୍ଦ ଦାସ—

ପଞ୍ଚସଖାଙ୍କ ମଧ୍ୟରେ କନିଷ୍ଠ ଅଚ୍ୟୁତାନନ୍ଦଙ୍କ ଗ୍ରନ୍ଥମାନଙ୍କ ଭିତରେ ଶୂନ୍ୟସଂହିତା ଗୋଟିଏ ପ୍ରଧାନ । ଏଥିର ଏକାଦଶ ଅଧ୍ୟାୟରେ ନିଜର

ଅତି ପ୍ରିୟ ପଞ୍ଚସଖାଙ୍କୁ ଜଗନ୍ନାଥ କଳିଯୁଗରେ "ନିରାକାର ମନ୍ତ୍ର" ପ୍ରଚାର କରିବାକୁ ଆଦେଶ ଦେଇଥିଲେ ବୋଲି କୁହାଯାଇଅଛି ।

ବୋଇଲେ ମୋ ପ୍ରାଣ ପଞ୍ଚସଖା କାହିଁ ଥିଲ
ନିଯୋଗ ନ ହୁଁରେ ମୋତେ ତୁମ୍ଭେ ଯେ ନଇଲ ।

× × ×

ଏମନ୍ତ କହିଣ ଦେଲେ ମନ୍ତ୍ର ନିରାଧାର
ଆଜ୍ଞା ଦେଲେ କଳିଯୁଗେ କର ଯା ପ୍ରଚାର ।

× × ×

ଯାଅ ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ଦାସ
ବଳରାମ, ଜଗନ୍ନାଥ କର ଯା ପ୍ରକାଶ ।"

(ଶୂନ୍ୟସଂହିତା—୧୧ଶ ଅଧ୍ୟାୟ)

## ଛତଶ ଗୁପ୍ତଗୀତା—ଦ୍ୱିତୀୟ ବଳରାମ ଦାସ—

ଏହି ଗ୍ରନ୍ଥଟି ବଳରାମ ଦାସଙ୍କ ନାମରେ ଭଣିତ । ଏଥିରୁ ଗୋଟିଏ ମାତ୍ର ଅଧ୍ୟାୟ ବଳରାମ ଦାସ ରଚନା କରି ଦେହ ତ୍ୟାଗ କରିଥିବା କଥା କୁହାଯାଇଅଛି । ପରବର୍ତ୍ତୀ ଅଧ୍ୟାୟଗୁଡ଼ିକ ମୁକୁନ୍ଦଦେବଙ୍କ ଦ୍ୱିତୀୟ ଅଙ୍କରେ ଜନ୍ମ ଗ୍ରହଣ କରିଥିବା ବଳରାମ ଦାସ ନାମଧେୟ ଜଣେ କବି ରଚନା କରିଥିଲେ । ଏହାଙ୍କୁ ଦ୍ୱିତୀୟ ବଳରାମ ଦାସ କୁହାଯାଇଅଛି (୧) । ଏଥିରେ ରାଜା ପ୍ରତାପରୁଦ୍ରଙ୍କ ସମୟର ସୋମନାଥ ମହାପାତ୍ରଙ୍କର ସହଧର୍ମିଣୀ ଯମୁନାଙ୍କର ଅନିରୁଦ୍ଧ ନାମକ ପୁତ୍ର ବଳରାମ ଦାସ ନାମରେ ଗୁପ୍ତଗୀତା ଲେଖିଥିବା କଥା ବର୍ଣ୍ଣିତ ହୋଇଅଛି ।

ପ୍ରତାପ ରୁଦ୍ର ନାମେ ହେବ ରାଯ୍ଯ । ଭଜଇ ତୋତେ ସେ କାଳସମୟ ।
ସୋମନାଥ ନାମେ ମନ୍ତ୍ରୀ ତାହାର । ଅନିରୁଦ୍ଧ ହେବ ତାହାର ଘର ।
ଯମୁନା ନାମେ ଭାରିଯା ତାହାର । ଅନିରୁଦ୍ଧ ହେବ ତାର କୁମର ।
ତାହାର ନାମ ବଳରାମ ଦାସ । ଗୁପତ ଗୀତା ଅଧ୍ୟାୟେ ପ୍ରକାଶ ।

(୧) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ୨ୟ ଭାଗ—ପୃ: ୪୩

## ଜଗନ୍ନାଥ ଚରିତାମୃତ—ଦିବାକର ଦାସ—

ଜଗନ୍ନାଥ ଚରିତାମୃତର ରଚୟିତା ଦିବାକର ଦାସ ଷୋଡ଼ଶ ଶତକର ଲୋକ ବୋଲି ଅନୁମାନ କରାଯାଏ (୧)। ଜୀବନୀ ଲେଖିବାରେ ଏ ପ୍ରଥମ ଓଡ଼ିଆ ଲେଖକ (୨)। ଏଥିରେ ସେ ଖୁବ୍ କୃତିତ୍ୱ ଦେଖାଇଛନ୍ତି। ଚୈତନ୍ୟଙ୍କ ନିର୍ଦ୍ଦେଶରେ ଜଗନ୍ନାଥ ଦାସ ବଳରାମ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିବା କଥା ଦିବାକର ଦାସ ଲେଖିଅଛନ୍ତି। ଏହା ବ୍ୟତୀତ ବଳରାମ ଦାସଙ୍କ ରାମଭକ୍ତି ବିଷୟ ମଧ୍ୟ ସୂଚିତ ହୋଇଅଛି।

"ଶୁଣି ହରଷ ପ୍ରଭୁ ହେଲେ, ମତ୍ତ ବଳରାମେ କହିଲେ।
ଏହାଙ୍କୁ ଉପଦେଶ ଦିଅ, ରାମାଦି କୀର୍ତ୍ତନ କରାଅ।
ଏମନ୍ତେ ଉପଦେଶ ବିଧି, ଦାଶେ ପାଇଲେ ସର୍ବ ସିଦ୍ଧି।"

× × × ×

ପୁଣି ବଳରାମ ଦାସଙ୍କ ସମ୍ବନ୍ଧରେ କୁହାଯାଇଅଛି—

"ରାତ୍ର ଦିବସ ନ ଜାଣନ୍ତି, ରାମରେ ମତ୍ତ ହୋଇଥାନ୍ତି।"

ଜଗନ୍ନାଥ ଚରିତାମୃତ, ୨ୟ ଅଧ୍ୟାୟ।

## ଅଣାକାର ସଂହିତା—ନନ୍ଦଦାସ—,

ନନ୍ଦ ଦାସଙ୍କ "ଅଣାକାର ସଂହିତା" ଅଚ୍ୟୁତାନନ୍ଦଙ୍କ "ଅଣାକାର ସଂହିତା" ଭଳି ଯୋଗ ସମ୍ବନ୍ଧରେ ଗୋଟିଏ ଗ୍ରନ୍ଥ। ଏ ସପ୍ତଦଶ ଶତକର ଲୋକ ଥିଲେ ବୋଲି ଅନୁମାନ କରାଯାଏ। ଏହି ଅଣାକର ସଂହିତାର ୬ଷ୍ଠ ଅଧ୍ୟାୟରେ ବଳରାମ ଦାସଙ୍କ ଜନ୍ମାନ୍ତର ପ୍ରସଙ୍ଗ ଲେଖା ଯାଇଅଛି। ଦ୍ୱାପର ଯୁଗର ଶେଷ ଭାଗରେ ଜନ୍ମିଥିବା ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ବ୍ରହ୍ମଜ୍ଞାନ ପ୍ରଚାର କରିବା ପାଇଁ କଳିଯୁଗର ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ବଳରାମ ଦାସ ନାମରେ ଜନ୍ମ ଗ୍ରହଣ କରିଥିଲେ। ଏହି ବଳରାମ ଦାସ ପୁଣି ମୁକୁନ୍ଦଦେବଙ୍କ ଦ୍ୱିତୀୟ ଅଙ୍କରେ ବଳରାମ ଦାସ ରୂପେ ଜନ୍ମ ଗ୍ରହଣ କରିଥିଲେ (ସମ୍ଭବତଃ ଛତିଶ ଗୁପ୍ତ ଗୀତା ଲେଖକ ଦ୍ୱିତୀୟ ବଳରାମ ଦାସ) (୩)।

---

(୧) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର, ପୃ: ୭୨।
(୨) ଓଡ଼ିଆ ସା: ଇ: ଦ୍ୱିତୀୟ ଭାଗ—ପୃ: ୩୭
(୩) ଓ: ସା: ଇ: ୨ୟ ଭାଗ, ପୃ: ୩୨।

## ଦାର୍ଢ୍ୟତାଭକ୍ତି ରସାମୃତ —ରାମଦାସ—

ରାମଦାସ ଅଷ୍ଟାଦଶ ଶତକରେ ଗଞ୍ଜାମ ଜିଲ୍ଲାର ମହୁରୀ ତାଲୁକସ୍ଥ ଡୋରା ନାମକ ଗ୍ରାମରେ ଗୋଟିଏ ମଠରେ ଗୃହୀ ବୈଷ୍ଣବ ରୂପେ ବାସ କରୁଥିଲେ (୧)। ଏ ଦାର୍ଢ୍ୟତାଭକ୍ତି ରସାମୃତ ଓ ରାମ ରସାମୃତ ନାମକ ଦୁଇଟି ଗ୍ରନ୍ଥର ପ୍ରଣେତା । ଏହାଙ୍କ ରଚିତ ଦାର୍ଢ୍ୟତାଭକ୍ତି ରସାମୃତରେ ଭକ୍ତ ପରମ୍ପରାନୁକ୍ରମରେ ଅତ୍ୟନ୍ତ ଅତିରଞ୍ଜନର ସହିତ ଭକ୍ତ ଚରିତମାନ ଦିଆଯାଇଅଛି । ଏଇ ଗ୍ରନ୍ଥର ଚରିତଗୁଡ଼ିକୁ କୌଣସି ପ୍ରାମାଣିକତା ଦେବା ଲାଗି ପଣ୍ଡିତ ନୀଳକଣ୍ଠ ଘୋର କୁଣ୍ଠା ପ୍ରକାଶ କରିଅଛନ୍ତି । କାରଣ ଏଥିରେ ଦିଆଯାଇଥିବା ଚରିତମାନ ଏକାନ୍ତ କଳ୍ପିତ ଓ ଅତିରଞ୍ଜିତ ବୋଲି ମନେ ହୁଏ (୨)। ଏଥିରେ ବଳରାମ ଦାସଙ୍କ ଉପାଖ୍ୟାନଟି ନିମ୍ନ ପ୍ରକାରେ ଦିଆଯାଇଅଛି ।

ମହନ୍ତ ସୋମନାଥ ଶିଷ୍ୟ (ପୁତ୍ର) ବଳରାମ ଦାସ ପୁରୁଷୋତ୍ତମରେ ଘର କୁଟୁମ୍ବ ଧରି ଥାଆନ୍ତି । ସେ ସାଧୁସଙ୍ଗ ଓ ଜଗନ୍ନାଥଙ୍କ ଭକ୍ତିରେ ସର୍ବଦା ବିଭୋଳ । ଭିକ୍ଷା ଥାଏ ଜୀବିକା । କିନ୍ତୁ ଚନ୍ଦ୍ରର କଳଙ୍କ ଭଳି ତାଙ୍କର ଗୋଟିଏ ଦୁର୍ଗୁଣ ଥିଲା । ପ୍ରକୃତି ବଶରୁ ସେ ଦିନେ ବେଶ୍ୟା ଘରକୁ ଯାଉଥିଲେ । ଦିନେ ବେଶ୍ୟା ଘରେ ଥିବାବେଳେ ନନ୍ଦିଘୋଷର ଗୁଣ୍ଡିଚା ବିଜେ ଆରମ୍ଭ ହେଲା । ଦାସେ ବେଶ୍ୟା ଘରୁ ଆସି ଅଶୌଚ ଶରୀରରେ ରଥ ଉପରକୁ ଉଠିଲେ । ସେବକମାନେ ତାଙ୍କୁ ଧିକ୍କାର କଲେ । ଭଗବାନଙ୍କ ଆଗରେ ତାଙ୍କର ଭକ୍ତିକୁ ଏହା ବଡ଼ ବାଧିଲା । ଭକ୍ତର ଦୋଷ ଲାଗି ନିଜେ ଭଗବାନ ପ୍ରତିକାର ନ କରି କାହିଁକି ଅନ୍ୟ ଲୋକଙ୍କ ହାତରେ ଦଣ୍ଡଦେଲେ— ଏଥିଲାଗି ମନୋଦୁଃଖରେ ଅଭିମାନ କରି ବଳରାମ ଦାସ ସମୁଦ୍ରକୂଳରେ ବାଙ୍କିମୁହାଣରେ ତିନୋଟି ବାଲିକା ରଥ ତିଆରି କରି ସେଥିରେ ବିଜେ ହେବାକୁ ଜଗନ୍ନାଥଙ୍କୁ ଡାକିଲେ । ଭଗବାନ ବିଜେ ହେଲେ । ନନ୍ଦିଘୋଷ ଅଚଳ ରହିଲା । ରାଜା ଦୁଃଖରେ ଗୁହାରିଆ ପଡ଼ିବାରୁ ସ୍ୱପ୍ନରେ ଜଗନ୍ନାଥ ଭକ୍ତର ଅବମାନନା କଥା କହିଲେ । ରାଜା ଯାଇ ଭକ୍ତ ବଳରାମଙ୍କୁ ଦୋଷ

---

(୧) ପ୍ରବନ୍ଧାବଳୀ—ଶ୍ୟାମସୁନ୍ଦର ରାଜଗୁରୁ ପୃ: ୧୧୩—୧୧୨ ।

(୨) ବିଶେଷ ଆଲୋଚନା—ଓଡ଼ିଆ ସାହିତ୍ୟର କ୍ରମପରିଣାମ—ପଣ୍ଡିତ ନୀଳକଣ୍ଠ ଦାସ ପୃ: ୨୧୩—ପ୍ରଥମ ଭାଗ ଓ ପୃ: ୪୦୨-୪୨୪, ଦ୍ୱିତୀୟ ଭାଗ ।

କ୍ଷମା ମାଗି, ତାଙ୍କୁ ଅତି ଆଦରରେ ରଥରେ ବସାଇଲେ । ରଥ ପକ୍ଷୀରାଜ ବେଗରେ ଗୃଲିଲା (୧) ।

ରାମ ଦାସଙ୍କର "ଦାର୍ଢ୍ୟତାଭକ୍ତି ରସାମୃତ" ର ଏହି କାହାଣୀ ବଳରାମ ଦାସଙ୍କ ଭାବ ସମୁଦ୍ରକୁ ଅନୁସରଣ କରିଅଛି । କେବଳ ଭକ୍ତିର ମହିମାକୁ ଅଧିକ ପରିସ୍ଫୁଟ କରିବା ଲାଗି ବଳରାମ ଦାସଙ୍କର ବେଶ୍ୟାଘରକୁ ଯିବା ଆଦି କଥାମାନ ଖଞ୍ଜା ହୋଇଛି ଭଳି ମନେ ହେଉଅଛି । ପ୍ରସଙ୍ଗକ୍ରମେ ଏ ଉପାଖ୍ୟାନଟି ଏଠାରେ ଉଲ୍ଲେଖ କରାଗଲେ ମଧ୍ୟ, ଏଥିରେ ବିଶେଷ କୌଣସି ଐତିହାସିକ ପ୍ରାମାଣିକତା ଥିଲା ଭଳି ମନେ ହୁଏ ନାହିଁ ।

## ଚୈତନ୍ୟ ଭାଗବତ—ଈଶ୍ୱର ଦାସ—

ପ୍ରକୃତ ଇତିହାସ ଭାବରେ ନୁହେଁ ଏକ ଭକ୍ତି ଗ୍ରନ୍ଥ ଭାବରେ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତର ପ୍ରାଧାନ୍ୟ । ଏହା କେବେ ରଚିତ ହୋଇଥିଲା, ତାହା ନିଶ୍ଚିତ ଭାବରେ ଜଣାପଡ଼େ ନାହିଁ । ତେବେ ଈଶ୍ୱର ଦାସ ଚୈତନ୍ୟଙ୍କ ଶହେ କିମ୍ବା ଦେଢ଼ଶହ ବର୍ଷ ପରେ ଗ୍ରନ୍ଥ ରଚନା କରିଥିବେ ଓ ସପ୍ତଦଶ ଶତକର ଶେଷ ବା ଅଷ୍ଟାଦଶ ଶତକର ଆରମ୍ଭରେ ଜୀବିତ ଥିବାର ଅନୁମାନ କରାଯାଏ (୨) ।

ବଳରାମ ଦାସଙ୍କ ଭଣିତ ଗ୍ରନ୍ଥମାନଙ୍କରେ ଚୈତନ୍ୟ ଦେବଙ୍କ ପ୍ରସଙ୍ଗ ବିଶେଷ ଭାବରେ କେଉଁଠି ଦେଖାଯାଏ ନାହିଁ । ଦିବାକର ଦାସଙ୍କ "ଜଗନ୍ନାଥ ଚରିତାମୃତ" ପରେ ଈଶ୍ୱର ଦାସଙ୍କର ଏହି "ଚୈତନ୍ୟ ଭାଗବତ" ରେ ପଞ୍ଚସଖା ଓ ଚୈତନ୍ୟ ଦେବଙ୍କ ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ । ଏଥିରେ ଉଲ୍ଲେଖ ଅଛି ଯେ ମହାପ୍ରଭୁ ଚୈତନ୍ୟ ଦେବ ଅବତାର ଗ୍ରହଣ କରିବାବେଳେ ପଞ୍ଚସଖାମାନେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ଶାସ୍ତ୍ର ପୁରାଣ ଆଦିର ପ୍ରାକୃତ ତର୍ଜମା ପାଇଁ ଆଦେଶ କରିଥିଲେ ।

---

(୧) ଦାର୍ଢ୍ୟତାଭକ୍ତି ରସାମୃତ—୨୪ଶ ଅଧ୍ୟାୟ ।

(୨) Visva Bharati annals-Vol. IV. 1951. Page. 140.
Iswar Das's Chaitanya Bhagabata by C. Das.

ପଞ୍ଚ ସଖାଙ୍କୁ ରାଇ ପାଣ । ତୁଟନ୍ତୁ ମୋ ଅତ୍ୟନ୍ତ ବିଶ୍ବାସ ॥
ତୁମ୍ଭେ କଳିବ ମଞ୍ଚପୁର । ପତିତ କରିବ ଉଦ୍ଧାର ॥
ମୋହର ଗତାଗତ କଳ୍ପ । ପୁରାଣ ହୋଇଛି ଉତ୍ତମ ॥
ଏ ଶାସ୍ତ୍ର ପରିକୃତ କର । ପୁରାଣ ଆଦ ବେଦ ସାର ॥
—ଦ୍ବିତୀୟ ଅଧ୍ୟାୟ, ଚୈତନ୍ୟ ଭାଗବତ ।

ଏଥିରେ ବଳରାମ ଦାସଙ୍କର ପରିଚୟ ଏହି ଭାବରେ ଦିଆଯାଇଅଛି—

ଚନ୍ଦ୍ରପୁରରେ ସୋମନାଥ । ରାଜାର ଅଟେ ସେହୁ ପାତ୍ର ॥
ତାହାର ପୁତ୍ର ହୁଏ ଜାତ । ବଳରାମ ନାମ ବିଖ୍ୟାତ ॥
ସଖା ଅଙ୍ଗରେ ଅବତାର । ସୁବଳ ନାମଟି ତାହାର ॥
ବିଷ୍ଣୁ ଅଙ୍ଗରେ ହୁଏ ଜାତ । ନାମ ତା ଜଗତେ ବିଖ୍ୟାତ ॥
ମାଳା ତିଳକ ତାର ନାହିଁ । ବୈଷ୍ଣବ ଭାବ ସେ ବହଇ ॥

× × × ×

ଏମନ୍ତେ ବଳରାମ ଦାସ । ପ୍ରଭୁରେ ଏକାନ୍ତ ବିଶ୍ବାସ ।
—୪୨ଶ ଅଧ୍ୟାୟ ।

ଏଠାରେ ବଳରାମ ଦାସଙ୍କର ଯେଉଁ ମାଳା ତିଳକ ନ ଥିବା କଥା କୁହାଯାଇଅଛି ତାହା ତାଙ୍କର ଧର୍ମମତ ବୁଝିବା ଲାଗି ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମନେ ହୁଏ । ବଳରାମ ଦାସ କୌଣସି ସଂପ୍ରଦାୟ ବିଶେଷ ପ୍ରତି ଅନୁଗାମୀ ନ ଥିବାର ଇଙ୍ଗିତ ଏଥିର ମିଳେ । ଏହି ଗ୍ରନ୍ଥର ୪୭ ଅଧ୍ୟାୟରେ ବଳରାମ ଦାସ "ମତ୍ତ" ବୋଲି ବିଶେଷିତ ହେବାର କାରଣ ବର୍ଣ୍ଣନା କରାଯାଇଅଛି । ରାଜା ପ୍ରତାପରୁଦ୍ର ଦେବ ଚୈତନ୍ୟଙ୍କୁ ଭେଟିବା ଲାଗି ପଣ୍ଡୁଆର କରି ଆସୁଥିବା ବେଳେ ଗୋଟିଏ ହାତୀ ହଠାତ୍ ପାଗଳ ହୋଇଯାଇଥିଲା । ତାର ମାହୁନ୍ତକୁ ହତ୍ୟା କରିସାରି ଚୈତନ୍ୟଙ୍କ ଗହଣରେ ଥିବା ସନ୍ନ୍ୟାସୀମାନଙ୍କୁ ଆକ୍ରମଣ କରିବାକୁ ଆସିବାବେଳେ ବଳରାମ ଦାସ ଏକା ଯାଇ ତାର ଦନ୍ତ ଧାରଣ କରିଥିଲେ । ତା' ପରେ ହାତୀଟି ଉପରେ ଦୟାପରବଶ ହୋଇ ତାକୁ ହରି ନାମରେ ଦୀକ୍ଷିତ କରିଥିଲେ । ଶେଷରେ ହାତୀର ଏଭଳି ଭକ୍ତିଭାବ ଉଦୟ ହେଲା ଯେ, ରାଜା ପ୍ରତାପରୁଦ୍ର ତାକୁ ନିଜ ହାତୀଶାଳକୁ ନେଇ ନ ପାରି ଚୈତନ୍ୟ ଦେବଙ୍କୁ ଅର୍ପଣ କରିଥିଲେ । ଏହି ଗ୍ରନ୍ଥର

୪୮ଶ ଅଧ୍ୟାୟରେ ଚୈତନ୍ୟ ଦେବ ପଞ୍ଚସଖାମାନଙ୍କୁ ବଭିନ୍ନ ମଠର ଭାର ଅର୍ପଣ କରିଥିବା କଥା କୁହାଯାଇଅଛି । ସେ ବଳରାମ ଦାସଙ୍କୁ ନନ୍ଦମଠର ଭାର ଦେଇଥିଲେ ।

ଏଇଭଳି ଭାବରେ ଆଲୋଚନା କରି ଦେଖିଲେ ଓଡ଼ିଆ ସାହିତ୍ୟରେ ବହୁ ସାଧକ, କବି ଓ ଭକ୍ତଙ୍କ କୃତରେ ବଳରାମ ଦାସଙ୍କ ପ୍ରସଙ୍ଗ ନାନା ଭାବରେ ବର୍ଣ୍ଣିତ ହୋଇ ଥିବାର ଦେଖିବାକୁ ମିଳିବ । ସମୟ ସମୟରେ ତାଙ୍କର ପରବର୍ତ୍ତୀ କବିମାନେ ସେମାନଙ୍କର ପୂର୍ବଜଙ୍କୁ ବର୍ଣ୍ଣନା କଲାବେଳେ ବଳରାମ ଦାସଙ୍କର ଉଲ୍ଲେଖ କରିଅଛନ୍ତି । ନୃସିଂହ ପୁରାଣ ଲେଖକ ପୀତାମ୍ବର ଦାସଙ୍କ ଉକ୍ତି—

"ତୃତୀୟ କଲ୍ପେଣ ବଳରାମ ଦାସ ହେଲି
ରାମାୟଣ ଗ୍ରନ୍ଥ ମୋ ହୃଦୁଁ ପ୍ରକାଶିଲି ।"

—ନୃସିଂହପୁରାଣ, ୨ୟ ରତ୍ନାକର

ଏହାର ଏକ ଦୃଷ୍ଟାନ୍ତ । ଅଷ୍ଟାଦଶ ଶତକର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ ବୈଦେହୀଶ ବିଳାସ କାବ୍ୟରେ "କୃପାସିନ୍ଧୁ" ବୋଲି କବି ବଳରାମ ଦାସଙ୍କୁ ଶ୍ରଦ୍ଧା ଜଣାଇ ଅଛନ୍ତି ।

## ଓଡ଼ିଆ ସାହିତ୍ୟ ବାହାରେ ବଳରାମ ଦାସଙ୍କ ପ୍ରସଙ୍ଗ—

ସାଧକ ଭକ୍ତ ବଳରାମ ଦାସଙ୍କ ଖ୍ୟାତି ଯେ କେବଳ ଓଡ଼ିଶା ଭିତରେ ସୀମାବଦ୍ଧ ଥିଲା ତାହା ନୁହେଁ । ବଙ୍ଗଳାର ବୈଷ୍ଣବଙ୍କ ଭିତରେ ବି ତାଙ୍କର ନାମ ବିଖ୍ୟାତ ହୋଇଥିଲା । ଷୋଡ଼ଶ ଶତକର ବଙ୍ଗୀୟ କବି ଦେବକୀନନ୍ଦନ ନିଜର ବୈଷ୍ଣବ ବନ୍ଦନାରେ ବଳରାମ ଦାସଙ୍କୁ ବନ୍ଦନା କରି ଅଛନ୍ତି । ବଙ୍ଗସାହିତ୍ୟରେ ମିଳୁଥିବା ପ୍ରାଚୀନତମ ବୈଷ୍ଣବ ବନ୍ଦନାଗୁଡ଼ିକ ମଧ୍ୟରେ ଏହାଙ୍କର ବୈଷ୍ଣବ ବନ୍ଦନା ଅନ୍ୟତମ । ଏଇ କବି ଚୈତନ୍ୟ-ଦେବଙ୍କ ପରିଷଦର ଶିଷ୍ୟ ଥିଲେ ବୋଲି ଅନୁମାନ କରାଯାଏ (୧) । ଏହାଙ୍କ ବୈଷ୍ଣବ ବନ୍ଦନାରେ ରାଜା ପ୍ରତାପରୁଦ୍ର "ଉଡ଼ିଆ ବିପ୍ରଦାସ", 'କାନାଇ ଖୁଣ୍ଟିଆ" ଆଦିଙ୍କ ସହିତ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କର ବନ୍ଦନା ଦେଇଅଛନ୍ତି । ସେ ଲେଖିଛନ୍ତି—

(୧) ବାଙ୍ଗଲା ସାହିତ୍ୟେର ଇତିହାସ (୧ମ ଖଣ୍ଡ) ଡାଃ ସୁକୁମାର ସେନ୍, । ୨ୟ ସଂସ୍କରଣ, ପୃ: ୨୨୩ ।

"ବନ୍ଦ ଉତ୍କଳ ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯାର ବଶ ହୟ" (୧) ।

## ବ୍ରଜବୁଲି ପଦକର୍ତ୍ତା ବଳରାମ ଦାସ—

ବଳରାମ ଦାସ ନାମରେ ଜଣେ କବି ବ୍ରଜବୁଲି ପଦକର୍ତ୍ତା ରୂପେ ସୁପରିଚିତ । ଏହାଙ୍କ ସମୟ ୧୫୩୦ ଖ୍ରୀ: ଅ: ପରବର୍ତ୍ତୀ ବୋଲି ଡା: ସୁକୁମାର ସେନ ଅନୁମାନ କରିଅଛନ୍ତି । ଏହି କବିଙ୍କର ପରିଚୟ ଦେବାକୁ ଯାଇ ବ୍ରଜବୁଲି ସାହିତ୍ୟର ଇତିହାସରେ ସେ ଲେଖିଛନ୍ତି—"ବଙ୍ଗଳା ବୈଷ୍ଣବ ସାହିତ୍ୟରେ ବଳରାମ ଦାସଙ୍କର ଖ୍ୟାତ୍ ନାଁ । କିନ୍ତୁ ଦୁର୍ଯୋଗକୁ ଏହି ମହାକବିଙ୍କ ନିଶ୍ଚିତ ଭାବେ ଜାଣିବାର ଉପାୟ ନାହିଁ (୨) । ଏହାପରେ ବଙ୍ଗଳା ସାହିତ୍ୟରେ ମିଳୁଥିବା ତିନି ଜଣ ବଳରାମ ଦାସଙ୍କ ସହିତ ଏହି ବ୍ରଜବୁଲି ପଦକର୍ତ୍ତା ବଳରାମ ଦାସଙ୍କର ସମ୍ପର୍କ ନିର୍ଣ୍ଣୟ କରିବାକୁ ଯାଇ କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ପାରିନାହାନ୍ତି । ତେବେ ଏହି କେତୋଟି କାରଣରୁ ବ୍ରଜବୁଲି ପଦକର୍ତ୍ତା ବଳରାମ ଦାସ ଆମର ଆଲୋଚ୍ୟ କବି ବଳରାମ ଦାସ, ହୋଇଥିବାର ଅନୁମାନ କରାଯାଇ ପାରେ । ପ୍ରଥମତଃ ଡା: ସେନ ଦେବକୀନନ୍ଦନଙ୍କ ବୈଷ୍ଣବ ବନ୍ଦନାରେ "ସଙ୍ଗୀତ କାରକ ବନ୍ଦେ ବଳରାମଦାସ, ନିତ୍ୟାନନ୍ଦ ଚନ୍ଦ୍ରେ ଯାର ଅଧିକ ବିଶ୍ୱାସ" ବୋଲି ଯେଉଁ ବଳରାମ ଦାସଙ୍କୁ ବନ୍ଦନା କରାଯାଇଅଛି—ସେ ବ୍ରଜବୁଲି ପଦକର୍ତ୍ତା ହୋଇ ଥିବାର ଅନୁମାନ କରିଅଛନ୍ତି । ଏ ମହାଶୟ "ଉତ୍କଳ" ବଳରାମ ଦାସ ହୋଇପାରନ୍ତି । ଦ୍ୱିତୀୟରେ ବଳରାମ ଦାସଙ୍କ ଅନ୍ତରଙ୍ଗ ସଖା ଓ ସମକାଳୀନ ଜଗନ୍ନାଥ ଦାସ ବ୍ରଜବୁଲିରେ ପଦ ରଚନା କରିଥିବାର ଯେତେବେଳେ ନିଶ୍ଚିତ ପ୍ରମାଣ ମିଳୁଛି; ସେତେବେଳେ ବଳରାମ ଦାସ ଯେ ନିଶ୍ଚିତ ଭାବରେ ବ୍ରଜବୁଲିରେ ପଦ ରଚନା କରିଥିବେ ଏ ଭଳି ଅନୁମାନ ସମୀଚୀନ । ତୃତୀୟତଃ ବଳରାମ ଦାସଙ୍କର ଭଣିତା ଯୁକ୍ତ ଚଉତିଶା ( ଚଉତିଶା ମଧୁଚକ୍ର, ୧ମ ଖଣ୍ଡ ପୃ: ୪୭-୫୪ ) ଓ ବୃନ୍ଦାବନ ପରିକ୍ରମଣ ଚଉତିଶା (ଗୋବିନ୍ଦ ରଥ ପ୍ରକାଶିତ, ଅମୃତ ରସାବଳୀ, କଟକ ୧୯୦୭ ) ଆଦିରେ ଯେଉଁ ପଦମାନ ମିଳୁଚି,

(୧) ଦେବକୀନନ୍ଦନ ବୈଷ୍ଣବ ବନ୍ଦନା, ବଙ୍ଗୀୟବାସୀ ପୋଥି ନଂ୪୫ ପୃ ୭-କଓ ଖ ।
(୨) A History of Brajabuli Literature (Calcutta University, 1935) by Dr. Sukumar Sen, page 74.

ବ୍ରଜବୁଲି ପଦଗୁଡ଼ିକ ସହିତ ଭାବଧାରା ଓ ବର୍ଣ୍ଣନାକ୍ରମ ଦୃଷ୍ଟିରୁ ତାହାର ସାମ୍ୟ ଲକ୍ଷିତ ହୋଇଥାଏ । ଏସବୁ ଜଣେ ବଳରାମ ଦାସଙ୍କର ରଚନା ବୋଲି ଅନୁମାନ କରାଯାଇ ପାରେ । ତୁଳନା ପାଇଁ ଏଠାରେ ନମୁନା ସ୍ୱରୂପ ବ୍ରଜ-ବୁଲିରୁ କେତୋଟି ପଦ ଉଦ୍ଧାର କରାଗଲା ।

ପଦ ମଞ୍ଜରୀ (୫୭)

କିଶୋର ବୟସ କତ ବୈଦଗଧି ଠାମ
ମୂରତି ମରକତ ଅଭିନବ କାମ ।
ପ୍ରତିଅଙ୍ଗ କୋନ୍ ବିଧି ନିରମିଲ କି ସେ
ଦେଖିତେ ଦେଖିତେ କତ ଅମିୟା ବରିଷେ ।
ମଲୁଁ ମଲୁଁ କିବା ରୂପ ଦେଖିଲୁଁ ସ୍ୱପନେ
ଖାଇତେ ଶୁଇତେ ମୋର ଲାଗିଅଛେ ମନେ ।

× × × ×

ମନୁର ଚରଣ ଖାନି ଆଧ ଆଧ ଯାୟ
ପରାଣ ଯେ ମନ କରେ କି କହିବ କାୟ ।
ପାଷାଣ ମିଲାୟେ ଯାୟ ଗୋୟେର ବତାସେ
ବଳରାମ ଦାସ କହେ ଅବଶ ପରଶେ ।

A History of Brajabuli Literature
Appendix, page 516.

**ବଳରାମ ଦାସଙ୍କ ସମୟ ନିରୂପଣ—**

ବଳରାମ ଦାସଙ୍କ ଜନ୍ମ ଓ ଜୀବନ କାଳ ନିଶ୍ଚିତ ଭାବେ ନିର୍ଣ୍ଣୟ କରିବା କଠିନ । କାରଣ ଏଥିଲାଗି କୌଣସି ପ୍ରତ୍ୟକ୍ଷ ବା ନିର୍ଦ୍ଦିଷ୍ଟ ଶଙ୍କ, ମିଳି ନାହିଁ । ଯାହା କିଛି ଉପାଦାନ ମିଳେ, ତାକୁ ପରୀକ୍ଷା କରି ଦେଖିଲେ ସେଥିରୁ ଏତିକି ମାତ୍ର ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ବଳରାମ ଦାସ ଶ୍ରୀ ଚୈତନ୍ୟ ଦେବ ଓ ରାଜା ପ୍ରତାପରୁଦ୍ରଙ୍କର ସମସାମୟିକ ଥିଲେ । ବଳରାମ ଦାସଙ୍କ ସମୟ ନିରୂପଣରେ ଗୋଟିଏ ଶଙ୍କୁ ହେଉଛି "ବେଦାନ୍ତ-ସାର ଗୁପ୍ତଗୀତା"ର ରଚନାକାଳ । ପ୍ରତାପରୁଦ୍ର ଦେବଙ୍କ ସପ୍ତଦଶ ଅଙ୍କରେ ମକର ମାସ ଶୁକ୍ଳ ପକ୍ଷରେ କବି "ବେଦାନ୍ତସାର ଗୁପ୍ତଗୀତା" ମୁକ୍ତି-ମଣ୍ଡପରେ ଶୁଣାଇଥିଲେ । ଏଇଠାରେ ଚୈତନ୍ୟଙ୍କ ଶିଷ୍ୟ ରାଜା ପ୍ରତାପରୁଦ୍ର

ଦେବ କବିଙ୍କୁ ପରମ ଗୁରୁ ବୋଲି ଗ୍ରହଣ କରିଥିଲେ । ଏହା ୧୫୧୦ ଖ୍ରୀଷ୍ଟାବ୍ଦ । ଦ୍ୱିତୀୟ ଶଙ୍କୁ ଚୈତନ୍ୟ ଦେବଙ୍କ ପୁରୀ ଆଗମନ । ୧୫୦୯ ଖ୍ରୀ: ଅ: ରେ ଚୈତନ୍ୟ ପୁରୀ ଆସିଥିଲେ । ଜଗନ୍ନାଥ ଚରିତାମୃତ ଅନୁସାରେ ଚୈତନ୍ୟଙ୍କ ଆଦେଶରେ ବଳରାମ ଦାସ ଜଗନ୍ନାଥ ଦାସଙ୍କୁ ଦୀକ୍ଷାଦାନ କରିଥିଲେ । ସେତେବେଳକୁ ଜଗନ୍ନାଥ ଦାସଙ୍କର ବୟସ ୧୮ ବର୍ଷ ହୋଇଥିଲା । ଏହି ସମୟକୁ ଜଗନ୍ନାଥ ଦାସଙ୍କର ଦୀକ୍ଷାରୁ ବଳରାମଙ୍କ ବୟସ ୧୮ ବର୍ଷରୁ ଅଧିକ ହୋଇଥିବା ନିଶ୍ଚିନ୍ତ । ତୃତୀୟରେ ବିଚାର ଯୋଗ୍ୟ, ଅଚ୍ୟୁତାନନ୍ଦଙ୍କର ଉଦୟ କାହାଣୀ । "ଉଦୟ କାହାଣୀ"ର ପାଠର ନିର୍ଭୁଲ ରୂପ ମିଳେ ନାହିଁ । ଏଥିଲାଗି କାଳ ନିରୂପଣରେ ଅସୁବିଧା ଜନ୍ମୁଥିବାର ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଅନୁଭବ କରିଅଛନ୍ତି (୧) । ଏହା ଅନୁସାରେ ଦେଖିଲେ ପଞ୍ଚସଖାଙ୍କ ମଧ୍ୟରେ ବଳରାମ ଦାସ ବୟୋ-ଜ୍ୟେଷ୍ଠ ଥିବାର ପ୍ରମାଣିତ ହୁଏ । ତାଙ୍କର ଜନ୍ମ ଖ୍ରୀ: ଅ: ୧୪୭୩ ଅଥବା ୧୪୮୨ ରେ ହୋଇଥିବାର ଅନୁମାନ କରାଯାଏ । ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ "ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ" ନାମକ ପ୍ରବନ୍ଧରେ (୨) କବିଙ୍କ ସମୟ ନିର୍ଣ୍ଣୟ କରିବାକୁ ଯାଇ ଲେଖିଅଛନ୍ତି—ବଳରାମ ଦାସଙ୍କର ଆବିର୍ଭାବ କାଳ ୧୪୭୦ ଖ୍ରୀ: ଅ: କିମ୍ବା ତନ୍ନିକଟବର୍ତ୍ତୀ ହେବା ସମ୍ଭବ । ଏଇ ଅନୁମାନରୁ ଦେଖାଯାଉଅଛି ବଳରାମ ଦାସ, ଜଗନ୍ନାଥ ଦାସଙ୍କଠାରୁ ବୟସରେ ପ୍ରାୟ କୋଡ଼ିଏ ବର୍ଷ ବଡ଼ ଓ ଜଗନ୍ନାଥ ଦାସ ବ ଚୈତନ୍ୟଙ୍କ-ଠାରୁ ସାନ ନ ଥିଲେ । ଏଥିଲାଗି ଚୈତନ୍ୟ ଦେବ ନିଜେ ଜଗନ୍ନାଥ ଦାସଙ୍କୁ ଦୀକ୍ଷା ନ ଦେଇ ସମସ୍ତଙ୍କ ମଧ୍ୟରେ ବୟସରେ ବଡ଼ ବଳରାମଙ୍କୁ ଦୀକ୍ଷା ଦେବାଲାଗି ଅନୁରୋଧ କରିଥିଲେ । କିନ୍ତୁ ଉଦୟ କାହାଣୀ ଅବର ଗଣନା ଅନୁସାରେ ଜଗନ୍ନାଥ ଦାସଙ୍କଠାରୁ ବଳରାମ ୨୦ ବର୍ଷ ବଡ଼ ଥିଲେ ବୋଲି ପ୍ରମାଣିତ ହୋଇ ପାରୁନାହିଁ । ତେବେ ଚୈତନ୍ୟ ଦେବଙ୍କ ଜନ୍ମକାଳ ୧୪୮୫ ଖ୍ରୀ: ଅ: ଥିବାରୁ ବଳରାମ ଦାସ ତାଙ୍କଠାରୁ ବୟସରେ କିଞ୍ଚିତ୍ ବଡ଼ ଥିବା ସମ୍ଭବ । ଚୈତନ୍ୟଙ୍କ ଓଡ଼ିଶା ଆଗମନ ବେଳକୁ ବଳରାମ ଦାସ ପ୍ରୌଢ଼ ଥିଲେ । ସେ ୧୪୮୦ ଖ୍ରୀ: ଅ: ର କିଞ୍ଚିତ ପୂର୍ବରୁ ଜନ୍ମଗ୍ରହଣ କରିଥିବେ ବୋଲି ପଣ୍ଡିତ

(୧) ଓ: ସା: ପରିଚୟ, ୧ମ ଭାଗ, ଦ୍ୱିତୀୟ ସଂସ୍କରଣ ପୃ: ୨୬୨-୬୯ ।
(୨) ଉତ୍କଳ ସାହିତ୍ୟ—ଶ୍ରାବଣ-ସ୍ନ ୧୩୨୯ ।

ବଳାୟିକ ମିଶ୍ର ଅନୁମାନ କରିଅଛନ୍ତି (୧)। ବଳରାମ ଦାସଙ୍କର ଦେହାନ୍ତ କେବେ ହୋଇଥିଲା ଏ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ନାହିଁ। ତେବେ ବଳରାମ ଦାସଙ୍କ କୌଣସି ରଚନାରେ ପ୍ରତାପରୁଦ୍ର ଦେବଙ୍କ ବ୍ୟତୀତ ତାଙ୍କ ପରବର୍ତ୍ତୀ ଅନ୍ୟ କୌଣସି ରାଜାଙ୍କ ପ୍ରସଙ୍ଗ ମିଳେ ନାହିଁ। ଏଥିଲାଗି ପ୍ରତାପରୁଦ୍ରଙ୍କ ଅବସାନ, ଅର୍ଥାତ୍ ୧୫୪୦ ଖ୍ରୀ: ଅ: ପରେ କବି ଜୀବିତ ଥିଲେ କି ନା ସନ୍ଦେହ ଯୋଗ୍ୟ।

**ଦାଣ୍ଡି ରାମାୟଣରେ ଆତ୍ମପରିଚୟ—**

ଦାଣ୍ଡି ରାମାୟଣର କବି ଭାବରେହିଁ ଭକ୍ତକବି ବଳରାମ ଦାସ ସୁପରିଚିତ। ଏହି ଦାଣ୍ଡି ରାମାୟଣ କବିଙ୍କ ଜୀବନର ଏକ ପ୍ରଧାନ ସାଧନା। ଏଥିର ବିଭିନ୍ନ କାଣ୍ଡଗୁଡ଼ିକର ଆରମ୍ଭ ଓ ଶେଷରେ ଈଶସ୍ତୁତି, ଖଳନିନ୍ଦା ଓ ଭଣିତାମାନ ଦେଇଛନ୍ତି। ଦାଣ୍ଡି ରାମାୟଣ ରଚନାର ଅନୁସଙ୍ଗ ରୂପେ କବି ନାନା ଭାବରେ ଆତ୍ମପରିଚୟ ଦେଇଅଛନ୍ତି। ପୁରୁଷୋତ୍ତମ ଜଗନ୍ନାଥ କବି-ଙ୍କର ପ୍ରଧାନ ଆରାଧ୍ୟ ଦେବତା ଥିଲେ। ଗ୍ରନ୍ଥର ଆରମ୍ଭରେ କବି ତାଙ୍କୁ ବିସ୍ତୃତ ଭାବରେ ବନ୍ଦନା କରିଅଛନ୍ତି। ବିପ୍ର ମୁଖରୁ ପୁରାଣ ଶାସ୍ତ୍ର ଶୁଣି ନିଜର ଭଗବତ୍ ଭକ୍ତି ଜାତ କଥା ବଳରାମ ଦାସ କହିଅଛନ୍ତି। ଏ ପ୍ରସଙ୍ଗରେ ସେ କୌଣସି ଗୁରୁଙ୍କଠାରୁ ଦୀକ୍ଷାଦି ଗ୍ରହଣ କରିଥିବାର ଉଲ୍ଲେଖ କରି ନାହାନ୍ତି। କବି ନିଜର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ସ୍ୱୟଂ ପରମବ୍ରହ୍ମ ବୋଲି ଗ୍ରହଣ କରି ଅଛନ୍ତି। ଜଗନ୍ନାଥଙ୍କର କଥିତ ଦୟାର ତୁଳନା ଜଗତରେ ଆଉ କୌଣସି ବସ୍ତୁସହ ହୋଇପାରେ ନାହିଁ। ତାଙ୍କର ଦୟା ଶିରୋଧାର୍ଯ୍ୟ କରି ରାମାୟଣ ରଚନା ଲାଗି ବାସନା କରିଛନ୍ତି (୨)।

(୧) ଓ: ସାହିତ୍ୟର ଇତିହାସ ପୃ: ୪୩।

(୨) ପୁରାଣ ଶାସ୍ତ୍ର ମୁଁ ଯେ ଶୁଣିଲି ବିପ୍ରମୁଖେ
ତେଣୁ ସେବା ଗୋଟେ କରଇ ମନ ସୁଖେ।
× × × ×
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଚଉଦ ଭୁବନ
ଗୋଟେ ଆଶ୍ରେ କରି ଅଛନ୍ତି ଯେ ସର୍ବ ଜନ।
ଯେ ତୋହର ସୁଦୟା ଅଛି କଛି ପାଇ
ବ୍ରହ୍ମାଣ୍ଡ ଭିତରେ ତାକୁ ସମ ଅଛି କାହିଁ।
ହୃଦପଦ୍ମେ ବିଜୟେ ମୋ ଶଙ୍ଖଚକ୍ର ହସ୍ତ
ଶ୍ରୀ ଜଗନ୍ନାଥଙ୍କର ଯେ ଆଜ୍ଞା ଶିରେ ଧରି
ଗ୍ରନ୍ଥ ବଖାଣିବି ମୁଁ ଆଦ୍ୟ ପ୍ରାନ୍ତ କରି।

ତୁଳନା କର, ଆଦ୍ୟକାଣ୍ଡ ପୃ: ୩।

ବଳରାମ ଦାସ ନିଜ ରାମାୟଣ ରଚନା କରିବାରେ ବାଲ୍ମୀକିଙ୍କଠାରେ ଯେ ଏକାନ୍ତ ଋଣୀ ଏହା କହିବା ବାହୁଲ୍ୟମାତ୍ର । ସୁନ୍ଦର କାଣ୍ଡର ଆରମ୍ଭରେ କବି ଆଦିକବି ବାଲ୍ମୀକିଙ୍କ ପ୍ରତି ଗଭୀର ଶ୍ରଦ୍ଧା ଜଣାଇ ଅଛନ୍ତି: —

ବନ୍ଦଇ ବାଲମୀକି ଚରଣେ ଶରଣ
ଯାହା ମୁଖୁ ରାମାୟଣ ହୋଇଲା ବଖାଣ
ସଂସାର ତମିରକୁ ତୁହି ସେ ପ୍ରଦୀପ
ବ୍ରହ୍ମାଙ୍କର ସମାନେ ଅଟୁ ତୁ ପ୍ରତାପ ।

× × × ×

ତୁମ୍ଭେ ଯେବେ ନ କହନ୍ତ ଶ୍ରୀରାମର ବାଣୀ
ଚରାଚର ବୁଡ଼ନ୍ତା ମହାର୍ଣ୍ଣବ ପାଣି ।
ତୁ ଯେ ମହାମୁନି ଦେବ ସାରସ୍ୱତ ଜାଣୁ
ବିଷ୍ଣୁର ଚରିତ ନିଜ ମୁଖରେ ବାଖାଣୁ । (୧)

ଆତ୍ମ ତୃପ୍ତି ଓ ସଂସାରର ହିତ ପାଇଁ କବି ରାମାୟଣ ରଚନା କରିଥିବା କଥାକହି ଅଛନ୍ତି । କିନ୍ତୁ "ଭାଷା ଲେଖା"ରେ ଯେତେବେଳେ ରାମାୟଣ ଭଳି ଗ୍ରନ୍ଥ ଲେଖିବା ଲାଗି ଅଗ୍ରସର ହେଲେବେଳେ କବିଙ୍କୁ ବୋଧହୁଏ ବହୁ ପ୍ରତିକୂଳ ସମାଲୋଚନା ସହ୍ୟ କରିବାକୁ ହୋଇଥିଲା । ତଳ ପଂକ୍ତିଗୁଡ଼ିକରୁ ଏହାର ସୂଚନା ମିଳେ—

"ସଂସାର ଭ୍ରମନ୍ତେ ମୁହିଁ ଘୋଷଇ ପୁଣ ପୁଣି
ତୁହି ମୋତେ ଦୟା ହେବ ହର ଶୂଳପାଣି ।
ସାତକାଣ୍ଡ ରାମାୟଣ କହୁଁତେ ମୋର ମନ
ମୀଳଗିରି ନାଥ ମୋତେ ହୋଇବା ପ୍ରସନ୍ନ ।
ତେଣୁ କରି ମୁହିଁ ଯେ ଛାଡ଼ିଲି ସର୍ବ କାର୍ଯ୍ୟ
ଗ୍ରନ୍ଥ କହିବାକୁ ମୁହିଁ ଯେ କଲଇଁ ବଡ଼ ଲଜ୍ଜ ।
ଲୋକ ଉପହାସକୁ ମୁଁ ବଡ଼ଇ ଡରଇଁ
ମୂର୍ଖ ଜନମାନଙ୍କୁ ମୁହିଁ ବଡ଼ ଭୟ ଯେ କରଇ ।

(୧) ସୁନ୍ଦର କାଣ୍ଡ ବନ୍ଧ, ପୃ: ୨ ।

ପଣ୍ଡିତ ଧାର୍ମିକ ଜନେ ନ ଧରନ୍ତୁ ଦୋଷ
ଅଳପ ଜାଣିଲା ଲୋକେ କରନ୍ତୁ ବଡ଼ ରୋଷ ।
ତେଣୁ କରି ଆମ୍ଭାକୁ ମୁଁ ସଙ୍କୋଚେ ଭାଳଇଁ
ସୁଜନମାନେ ପର୍ବତ ମୁଁ ଝାଳତେ ଲୋଡ଼ଇଁ” (୧) ।

ଜଗନ୍ନାଥଙ୍କଠାରେ କବିଙ୍କ ଭକ୍ତି କେତେ ଗଭୀର ଥିଲା ତାହାର ସୂଚନା ନାନା ପ୍ରସଙ୍ଗରେ ସମୁଦାୟ ଜଗମୋହନ ରାମାୟଣ ମଧ୍ୟରେ କବି ବ୍ୟକ୍ତ କରିଅଛନ୍ତି । ଲଙ୍କାକାଣ୍ଡର ଭଣିତାରେ ସେ ପ୍ରକାଶ କରିଅଛନ୍ତି ଯେ, ନିଜେ ରାମଚନ୍ଦ୍ରଙ୍କ ଅବତାର ସେ ଦେଖୁଥିଲେ ଓ କଳିଯୁଗରେ ଶୂଦ୍ରକୁଳରେ ଜନ୍ମ ହୋଇ ତାଙ୍କର ମହିମା ବର୍ଣ୍ଣନ କରିବାକୁ ଆଦିଷ୍ଟ ହୋଇଥିଲେ । ଜଗନ୍ନାଥ ନିଜେ କବିଙ୍କ ହୃଦୟରେ ଅଧିଷ୍ଠିତ ହୋଇ ରାମାୟଣ ରଚନା କରିବା କଥା ପ୍ରକାଶ କରିବା ସାଙ୍ଗେ ସାଙ୍ଗେ କବି ସଂପୂର୍ଣ୍ଣ ରୂପେ ଜଗନ୍ନାଥଙ୍କ ଚରଣରେ ଆତ୍ମ ସମର୍ପଣ କରିଛନ୍ତି ।

ଜଗମୋହନ ରାମାୟଣ କବି ଜଗନ୍ନାଥ
ତାହାଙ୍କର ଆଜ୍ଞାରେ ଲେଖିଲା ମୋର ହସ୍ତ ।
ମୁହିଁ ବଳରାମ ଦାସ ରାମ ଅବତାରେ ଥିଲି
ଦହୁଡ଼ ଧରଣେ ମୁଁ ସମସ୍ତ ଦେଖୁଥିଲି ।
ମୋତେ ତହୁଁ ଆଜ୍ଞା ଦେଲେ ତୁହି ଯିବୁ
କଳିଯୁଗେ ଶୂଦ୍ର ହୋଇଣ ବଖାଣିବୁ ।
ବିଷ୍ଣୁର ସପ୍ତମ ଅବତାର ମୁଁ କହିଲଇଁ
ନୀଳଗିରେ ଜଗନ୍ନାଥ ମୋହର ଗୋସାଇଁ ।
ତାହା ବିନୁ ଯେ ମୋହର ଆନ ଗତି ନାହିଁ
ସେ ପ୍ରଭୁ ଭବଜଳକୁ ଉଧରନ୍ତା ଅଟଇ ।

ପୁଣି ଉତ୍ତର କାଣ୍ଡର ଆରମ୍ଭରେ ଲେଖିଅଛନ୍ତି:—

“ଜଗମୋହନ ବୋଲି ଯେ ରାମାୟଣ ଗ୍ରନ୍ଥ
ଯେହୁଥର କବି ସେ ନୀଳଗିରି ଜଗନ୍ନାଥ ।
ସେ ହରି ମୋହର କଣ୍ଠେ ବସି କରୁଥାନ୍ତି
ଆପଣା ଚରିତ ଯେ ଆପଣେ ବଖାଣନ୍ତି ।

(୧) ସୁନ୍ଦର କାଣ୍ଡ, ପୃ: ୨ ।

ମୂଷା ବିବରୁ ଯେହ୍ନେ ବାହାରଇ ମତ୍ତ ନାଗ
ମୋହର ମୁଖରୁ ଗ୍ରନ୍ଥ ତେସନେକ ବାଗ ।"

ରାମାୟଣ ଗ୍ରନ୍ଥ ଶେଷ କରିବା ପୂର୍ବରୁ କବି ଆତ୍ମପରିଚୟ ପ୍ରଦାନ କରିବାକୁ ଯିବାବେଳେ ଦୈନ୍ୟ ପ୍ରକାଶ କରିବା ସାଙ୍ଗେ ସାଙ୍ଗେ, ଆପଣା ଭକ୍ତଜୀବନର ଆକାଂକ୍ଷା ଅଭିବ୍ୟକ୍ତ କରିଅଛନ୍ତି । ମନୁଷ୍ୟ ଜୀବନରେ ସଂସାରରେ ପାପପୁଣ୍ୟ ଲାଗି ରହିଅଛି । ମଣିଷର ସାଧାରଣ ପ୍ରକୃତି ତାକୁ ପାପପଥକୁ ପରିଚାଳିତ କରିଥାଏ । ଏଥିରୁ ନିବୃତ୍ତି ଲାଗି ପରମ ପୁଣ୍ୟ ସାଧନ ରୂପେ ସେ ରାମାୟଣ ରଚନାକୁ ଗ୍ରହଣ କରିଥିଲେ । କବିଙ୍କର ପିତା ସୋମନାଥ ମହାପାତ୍ର ଓ ଜନନୀଙ୍କ ନାମ ମନୋମାୟା ଥିଲା । ରାମଚନ୍ଦ୍ର ଓ ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି ଥିଲା । ତାଙ୍କର ଦାରାପୁତ୍ର ବିତ୍ତ ଅଭାବ ନ ଥିଲା । ରାମାୟଣ ରଚନା ସମୟକୁ କବିଙ୍କର ବୟସ ମାତ୍ର ତିରିଶ ବରଷ ହୋଇଥିଲା । ସେ ଅଧିକାଂଶ ସମୟରେ ପୁରୀରେ ବାସ କରି, ଜଗନ୍ନାଥଙ୍କ ସନ୍ନିଧିରେ ସେବା କରିବାର ସୁଯୋଗ ପାଇଥିଲେ । ସଂସାରର ସାଧାରଣ ସୁଖ ସନ୍ତୋଷ ମଧ୍ୟରେ ବାସ କରି ମଧ୍ୟ ସେ ସଂସାର ପ୍ରତି ନିସ୍ପୃହ ହୋଇ ଜୀବନ କଟାଇଥିଲେ । ଉତ୍ତରାକାଣ୍ଡ ଶେଷରେ କବିଙ୍କର ସଂପୂର୍ଣ୍ଣ ଭଣିତାରୁ ଏଇ କେତୋଟି କଥା ସ୍ପଷ୍ଟ ଭାବରେ ପ୍ରତିପାଦିତ ହୁଏ ।

ଏଥୁ ଅନ୍ତରେ ଶୁଣ ଦିବ୍ୟ ରସ ।
ପଣ୍ଡିତ ଜନେ ନ ଧର ମୋ ଦୋଷ ॥
ଅଜ୍ଞାନ ପଣେ ବଖାଣିଲି ଯାହା ପୁଣ ।
ଜଗତ ପବିତ୍ର ଯେ ନାମ ଉଚ୍ଚାରଣ ॥
ଗୃହୀାଲ ବଇସ୍ୱେ ଚଞ୍ଚଳ ପ୍ରକୃତି ।
ପାପପୁଣ୍ୟ ବୋଲି ଯେ ନ ବିଚାରନ୍ତି ମତି ॥
ଅନ୍ୟାୟେ କଥାମାନ ନୁହଇ ପରମ ହିତ ।
ବାସୁଦେବ ସୁମରଣ ମୁଁ କରଇ କଦାଚିତ ॥
ତେଣୁ କରି ଏଥକୁ ତରିବା ନିମନ୍ତେ ।
ଶ୍ରୀରାମ ଚରିତ ମୁଁ କହିଲି ତୋଷ ଚିତ୍ତେ ॥
ମହାମନ୍ତ୍ରୀ ସୋମନାଥ ଯେ ମହାପାତ୍ର ।
ବଳରାମ ଦାସ ମୁଁ ଯେ ତାହାଙ୍କର ପୁତ୍ର ॥

ଜନ୍ମେ ଜନ୍ମେ ମୁହିଁ ଶ୍ରୀରାମଙ୍କର ସେବକ ।
ଇଚ୍ଛାକରି ଆସି ଜନ୍ମିଲି ମର୍ତ୍ତ୍ୟ ଲୋକ ॥
ମନମାୟା ଜନନୀର ଗର୍ଭେ ଜାତ ହୋଇ ।
ଶ୍ରୀ ଜଗନ୍ନାଥଙ୍କୁ ମୁଁ ଯେ ସେବା କରଇ ॥

× × × ×

ସାମବେଦୁଁ ସମ୍ଭୂତ ଯେବଣ ଶାସ୍ତ୍ର ହୋଇ ।
କୃଷ୍ଣ ରୂପୀ ଭଗବାନ ଅପୂର୍ବ ତନୁ ବହି ॥
ସେହିମାନଙ୍କର ପ୍ରସାଦେ ମୋତେ ଶାରଳା ଦୟା କଲା ।
ରାମାୟଣ ଗ୍ରନ୍ଥ ମୋ ମୁଖରୁ ସ୍ଫୁରିଲା ॥
ଚଉଦ ସହସ୍ର ଶ୍ଳୋକ କଲା ଗୀତ ରସ ।
ବାଲ୍ମୀକି ମୁନି ଯାହା କଲେକ ପ୍ରକାଶ ॥
ବହୁ ଜନ ମୁଖରୁ ଶୁଣିଲଇଁ ତାହା ।
ଦୟା କଲେ ମୋତେ କମଳା ଦେବୀ ନାହା ॥
ତେଣୁ ସେ ମହାନାଟକ କାବ୍ୟେ ମୁହିଁ କଲି ।
ଲକ୍ଷେ ପଦ ଠିକ କରି ଗୀତରେ ବାନ୍ଧିଲି ॥
ରାମ ନାମ ସୁମରଣା କରିଥାଇ ନିତ ।
ନୀଳଗିରି ନାଥ ମୋର ଦେଖନ୍ତେ ବିନତ ॥
ସେ ପ୍ରଭୁ କବିତ୍ୱ ଯେ ଅଟଇ ଏଥିର ।
ଲୋଭରେ ମୋହ କାମନା ହୋଇଲା ଗ୍ରନ୍ଥର ॥
ପଣ୍ଡିତ ଜନ ଶୁଣି ନ ଧର ମୋର ଦୋଷ ।
ସମୁଦ୍ର ତରତେ କଲଇଁ ମୁହାଶ ॥
ନାରାୟଣ ପ୍ରସାଦେ ଭବସିନ୍ଧୁ ପିନା ତରି ।
ଏହା ଜାଣି ଶରଧା ହୋଇଲା ମୋହର ॥
ଜନ୍ମେଣ ମୂର୍ଖ ମୁଁ ଅଳ୍ପ ବୟସ ।
ଗ୍ରନ୍ଥ କରିବା କାଳେ ବତଶ ବରଷ ॥
ଦାର ପୁତ୍ର ଧନ ସୁଖ ଭୋଗ ଶିରୀ ।
ଅଗୋଚର ପଣ ପଦ ଦେଇଛନ୍ତି ହରି ॥

ଏ ମର୍ତ୍ତ୍ୟ ଲୋକେ ଜଗନ୍ନାଥଙ୍କୁ ସେବିବ ।
ଇଚ୍ଛା ହୋଇଲେ ପୁଣ ବୈକୁଣ୍ଠକୁ ଯିବ ॥
ସ୍ୱାମୀର ସେବକ ମୁହିଁ ଅଟଇ ସନ୍ନିଧ ଖଣ୍ଟା ।
ଏ ଭବ ସଂସାର ମୋତେ ନୁହଇକ ନଣ୍ଟା ॥
ନୀଳଗିରି ଜଗନ୍ନାଥଙ୍କୁ ସର୍ବଦା ମୋ ଆଶ ।
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ॥

## ଭକ୍ତକବିଙ୍କ ଲୋକପ୍ରୀତତ୍ତ୍ୱ—

ଏଠାରେ ଭକ୍ତକବି ବଳରାମ ଦାସଙ୍କର ସମସ୍ତ ଜୀବନର ଆଲୋଚନା କରିଯାଉ ନାହିଁ । ତାହା ମଧ୍ୟ ସମ୍ଭବ ନୁହେ । ତେବେ ସଂକ୍ଷେପରେ କବିଙ୍କ ଜୀବନୀର ଉପାଦାନ ଓ ସମସାମୟିକ ତଥା ପରବର୍ତ୍ତୀ ସାହିତ୍ୟରେ ଥିବା ତାଙ୍କ ପ୍ରସଙ୍ଗର ଅବତାରଣା କରି ହୋଇଅଛି । ସାଧକ ଭକ୍ତ ଭାବରେ ତାଙ୍କର ପ୍ରତିଷ୍ଠାର ସୂଚନା କେବଳ ଧର୍ମଗ୍ରନ୍ଥ ଓ ପ୍ରାଚୀନ ସାହିତ୍ୟର ପୃଷ୍ଠାଗୁଡ଼ିକରୁ ଯେ ମିଳେ ତାହା ନୁହେଁ । ଲୋକମୁଖରେ ପ୍ରଚଳିତ ବହୁ କିମ୍ବଦନ୍ତୀ ବି ଏହାର ସାକ୍ଷ୍ୟ ଦିଏ । ଏଇଭଳି ଗୋଟିଏ କିମ୍ବଦନ୍ତୀ ସ୍ୱର୍ଗୀୟ ଜଗବନ୍ଧୁ ସିଂହ ତାଙ୍କର ପ୍ରାଚୀନ ଉତ୍କଳରେ ଉଲ୍ଲେଖ କରିଛନ୍ତି । ଥରେ ବଳରାମ ଦାସ ଲକ୍ଷ୍ମୀଙ୍କୁ ଢାଣୀ ବୋଲି କହିଥିଲେ । ଏଥିରେ କ୍ରୁଦ୍ଧ ହୋଇ ଦାସଙ୍କର ଶେଷ ପ୍ରାପ୍ତି ହୋଇ ପାରିବ ନାହିଁ ବୋଲି ଲକ୍ଷ୍ମୀ ଅଭିଶାପ ଦେଲେ । ବଳରାମ ଦାସ ପୁରୀର ଏରବଙ୍ଗ ଗ୍ରାମରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ଜଗନ୍ନାଥଙ୍କୁ ସ୍ମରଣ କରିଥିଲେ । ଜଗନ୍ନାଥ ଲକ୍ଷ୍ମୀଙ୍କ ସହ ସେଠାରେ ଉପସ୍ଥିତ ହେବାରୁ ଏରବଙ୍ଗ ଏକ ତୀର୍ଥରେ ପରିଣତ ହୋଇଥିଲା । ଏଠାରେ ଲକ୍ଷ୍ମୀ ବଳରାମ ଦାସଙ୍କଠାରେ ପରାଜୟ ସ୍ୱୀକାର କରିଥିଲେ ଓ ଢାଣୀ ବୋଲି ପ୍ରମାଣିତ ହୋଇଥିଲେ (୧) । ଏଭଳି କିମ୍ବଦନ୍ତୀଗୁଡ଼ିକରୁ କୌଣସି ବିଶେଷ ଐତିହାସିକ ଉପାଦାନ ଖୋଜି ପାଇବା କଠିନ ହେଲେହେଁ ଲୋକ-ମନରେ କବିଙ୍କ ବହୁ ବିସ୍ତୃତ ପ୍ରଭାବର ସୂଚନା ମିଳେ ।

---

(୧) ପ୍ରାଚୀନ ଉତ୍କଳ, ପୃ: ୧୬୭ରେ ଏହି କିଂବଦନ୍ତୀଟିର ଉଲ୍ଲେଖ କରାଯାଇଛି ।

# ଓଡ଼ିଆ ରାମାୟଣର ପୃଷ୍ଠଭୂମି

"ସବୁ ଯୁଗରେ ସବୁ ଦେଶରେ ଚତୁର୍ଦ୍ଦିଗର ପରିମଣ୍ଡଳକୁ ଯେଉଁ ଆଦର୍ଶ ଓ ଭାବଧାରା ଅଜ୍ଞାତ କାଳରୁ ପରିପ୍ଲାବିତ କରୁଥାଏ, ତାକୁଇ ଆପଣା ବାଣୀରେ ରୂପ ଦେଇ ଜାତୀୟ ସଭ୍ୟତା ଓ ସଂସ୍କୃତିର ସଂବାହକ ହୁଅନ୍ତି ପୁରାଣ କବି।"

D. C. Sen, Bengali Ramayan, page. 2.

**ଓଡ଼ିଆ** ସାହିତ୍ୟରେ ପ୍ରଥମ ରାମଚରିତ—

ଦେଶର ଜାତୀୟ ଭାବଧାରା ଓ ଆଦର୍ଶର ପରମ୍ପରା ଦୃଢ଼ ଓ ଉନ୍ନତ ହେଲେ ଜନସାଧାରଣଙ୍କର ମାନସଲୋକ ସୃଜନକ୍ଷମ ହୁଏ । ଏହି ସୃଜନକ୍ଷମ ମନ କୌଣସି ଦେଶର ସମୃଦ୍ଧ ପୁରାଣ ସାହିତ୍ୟ ସୃଷ୍ଟିର ଅନ୍ୟତମ କାରଣ । ପୁରାଣ ଗୌରବ ଭାରତବର୍ଷ ତଥା କଳାକୁଶଳ ଉତ୍କଳର ଜନସାଧାରଣ ଏହି ମାନସ ସମ୍ପଦର ପରିଚୟ ଦେଇଛନ୍ତି । ତେଣୁ ଏ ଦେଶରେ ପୁରାଣ ସାହିତ୍ୟର ବିପୁଳ ବିକାଶ ଜଗତକୁ ମୁଗ୍ଧ କରିଛି । ଓଡ଼ିଆର ପ୍ରଥମ ପୁରାଣ କବି ସାରଳା ଦାସ । ତାଙ୍କ ପୁରାଣର ଆଧାର ହିନ୍ଦୁର ପଞ୍ଚମ ବେଦ ମହାଭାରତ । ମହାଭାରତ ଭଳି ଭାରତୀୟ ସଂସ୍କୃତିର ଅନ୍ୟତମ ଅବଦାନ ରାମାୟଣର ଆଧାର ଉପରେ ପୁରାଣ ରଚନା କରିବାକୁ ସେ ଅବସର ପାଇ ନ ଥିଲେ । ଏ ଦିଗରେ ତାଙ୍କର କ୍ଷୀଣ ପ୍ରୟାସ ଦେଖିବାକୁ ମିଳେ ବିଲଙ୍କା ରାମାୟଣରେ । ଏହା ସଂସ୍କୃତ ଅଦ୍ଭୁତ ରାମାୟଣର ଅନୁସରଣରେ ଏକ ସ୍ୱତନ୍ତ୍ର ସୃଷ୍ଟି । ଅଦ୍ଭୁତ ରାମାୟଣ ଶାକ୍ତ ସଂପ୍ରଦାୟର ରଚନା ବୋଲି ମନେ ହୁଏ । କାରଣ ଏହାର ଶେଷ ଭାଗର ଅଧିକାଂଶ ଅଂଶ ଦେବୀ ମାହାତ୍ମ୍ୟ ବର୍ଣ୍ଣନାରେ ପୂର୍ଣ୍ଣ (୧) । ସାରଳା ଦେବୀଙ୍କ ଭକ୍ତ, କବି ସାରଳା ଦାସଙ୍କ ଧର୍ମ ଜୀବନର ଏହା ହୁଏତ ଅନ୍ୟତମ ଅଭିବ୍ୟକ୍ତି ।

---

(୧) ରାମ କଥା (ଉତ୍ପତ୍ତି ଔର ବିକାଶ)— ଡା: କାମିଲ୍ ବୁଲ୍‌କେ, ପ୍ରୟାଗ-୧୯୫୦ ପୃ-୧୬୫-୧୬୭, ଅଦ୍ଭୁତ ରାମାୟଣର ଆଲୋଚନା ।

ଓଡ଼ିଶାର ସମୃଦ୍ଧ ପୁରାଣ ସାହିତ୍ୟରେ ବିକଶିତ ରୂପ ଲାଭ ଲାଗି, ଓଡ଼ିଶା ବାଲ୍ମୀକି ବଳରାମ ଦାସଙ୍କର ଆବିର୍ଭାବକୁ ପ୍ରତୀକ୍ଷା କରିଥିଲା । ପଞ୍ଚଦଶ ଶତକର ଶେଷ ପାଦରେ ତାଙ୍କ ଆବିର୍ଭାବ । ଷୋଡ଼ଶ ଶତକ ମଧ୍ୟରେ ସାରା ଓଡ଼ିଶାରେ ତାଙ୍କ ରଚିତ ରାମାୟଣ ଅତି ଲୋକପ୍ରିୟ ହେଲା । ଏହି ଶତକର ଶେଷପାଦରେ ଦାଣ୍ଡି ରାମାୟଣର ଅନୁସରଣରେ ମହେଶ୍ୱର ଦାସ "ଟୀକା ରାମାୟଣ" ପ୍ରଣୟନ କଲେ (୧) । ପରବର୍ତ୍ତୀ କାଳରେ ରଚିତ ଯେତେ ଓଡ଼ିଆ ସାହିତ୍ୟରେ ଲିଖିତ ବହୁ କାବ୍ୟ ପୁରାଣ ଉପରେ ଦାଣ୍ଡି ରାମାୟଣର ପ୍ରଚ୍ଛନ୍ନ ବା ପରୋକ୍ଷ ପ୍ରଭାବ ଅବିସମ୍ବାଦିତ ହୋଇ ପଡ଼ିଲା । ପ୍ରାୟ ୫ଶହ ବର୍ଷ ଧରି ଏ ଦେଶର ସମଗ୍ର ଜାତୀୟ ଜୀବନକୁ ଏହି ଗ୍ରନ୍ଥ ବଳ ଦେଇ ଆସିଅଛି । ନାନା ଭାବରେ ଜାତୀୟ ସଂସ୍କୃତିର ବିକାଶ ଓ ସମୃଦ୍ଧିରେ ସହାୟତା କରିଅଛି । ସମଗ୍ର ଓଡ଼ିଶାର ଅଗଣିତ ସାଧାରଣ ମଣିଷଙ୍କଠାରୁ ଆରମ୍ଭ କରି ସମାଜର ପ୍ରତ୍ୟେକ ସ୍ତରର ମାନସ ଭୂମିକୁ ଉର୍ବର କରି ଆସିଅଛି । ବିଶ୍ୱ ସାହିତ୍ୟରେ ଏ ଅମୂଲ୍ୟ ଗ୍ରନ୍ଥ କେବଳ ଜଣେ ବଳରାମ ଦାସଙ୍କର ମାନସଲୋକର ସୃଷ୍ଟି ନୁହେଁ । ଏଥିରେ ରହିଛି, ଓଡ଼ିଶାର ଅଗଣିତ ଜନସାଧାରଣଙ୍କର ମାନସଲୋକର ସ୍ୱାକ୍ଷର । ଏହାର ପ୍ରଚ୍ଛଦପଟରେ ଅଙ୍କିତ ରହିଛି କେଉଁ ଅଜ୍ଞାତ କାଳରୁ ଯୁଗଯୁଗର ପର୍ଯ୍ୟାୟକ୍ରମେ ବୃଦ୍ଧି ଓ ବିକଶିତ ପ୍ରାଚୀନ ଭାରତର ମହାନ୍ ଭାବ ପରମ୍ପରା । ଅତଏବ ଓଡ଼ିଆ ରାମାୟଣର ପୃଷ୍ଠଭୂମିରେ ଦୁଇଟି ଧାରା ସ୍ପଷ୍ଟ । ପ୍ରଥମରେ ଜନମୁଖୀ ଧାରା ଓ ଦ୍ୱିତୀୟରେ ଶାସ୍ତ୍ରୀୟ ଆଧାର ।

### ଜନମୁଖୀ ଧାରା—

ରାମାୟଣର ବହୁ କାହାଣୀ, କିମ୍ବଦନ୍ତୀ ଓ ଲୋକକଥା ଓଡ଼ିଶାରେ ଜଡ଼ିତ ରହି ଲୋକମୁଖରେ ପ୍ରଚଳିତ । ରାମ, ସୀତା ଓ ହନୁମାନ ଆଦିଙ୍କ ଚରିତ୍ରର ବିଭିନ୍ନ ବିଶେଷତା ବର୍ଣ୍ଣନାରେ ଲୋକକଥା ଓ ଲୋକଗୀତ ସମୃଦ୍ଧ । ହନୁମାନ ସର୍ବତ୍ର ଏକ ଲୋକଦେବତା ରୂପେ ପ୍ରିୟ ଓ ମୁଖ୍ୟ । ପୂର୍ବେ ଶବରର ଦେବତା ରୂପେ ସନ୍ଥୁବେଳେ ଜାତାଦରମାନଙ୍କରେ ଏ ପ୍ରତିଷ୍ଠିତ ଥିଲେ । ଆଗତ ଭବିଷ୍ୟ ସବୁଙ୍କ ଦେବତା ରୂପେ ଏହାଙ୍କର ପ୍ରଭାବ ଏବେ ବି ଅତୁଟ ରହିଛି । ଘର ଛାଡ଼ି ବାହାରକୁ ଗଲେ ସକଳ

ନୃପତି ସର୍ବ ପ୍ରକାର ଆପଦ ବିପଦରୁ ରକ୍ଷା ପାଇବ ବୋଲି ମନାସି ଯାଏ । ଏହିଭଳି ଦେବତାମାନଙ୍କର କେବେ ପ୍ରତିଷ୍ଠା ହେଲା କହିବା କଠିନ । ପର୍ଯ୍ୟାୟକ୍ରମେ କପଟ ଭାବରେ ଏସବୁ ବିଶ୍ୱାସ, ପୂଜା ଓ ଅଧିଷ୍ଠାନ ଆଦି ଗଢ଼ି ହୋଇ ଉଠିଲା, ତାହା ନୃତାତ୍ତ୍ୱିକ ଆଲୋଚନାର ଅପେକ୍ଷା ରଖେ । ଏହା ବ୍ୟତୀତ ଓଡ଼ିଆ ରାମାୟଣରେ ଏଭଳି ବହୁ କାହାଣୀ, ଦେବ ଦେବୀଙ୍କ ପ୍ରତିଷ୍ଠା ବିଷୟକ କିମ୍ବଦନ୍ତୀ ପୂର୍ଣ୍ଣ ହୋଇ ରହିଅଛି । ସେ ସବୁର ମୂଳ ଶାସ୍ତ୍ର ବା ପୁରାଣରେ ଖୋଜି ପାଇବା ଅସମ୍ଭବ । ଆଦି କାଣ୍ଡରେ ସୁରେଶ୍ୱର ମହାଦେବଙ୍କ ଉତ୍ପତ୍ତି ପ୍ରସଙ୍ଗରେ ବ୍ରହ୍ମଗିରି ଓ ଶୁଣ୍ଡିଅଣୀ କାହାଣୀ, ଅଥବା ଅରଣ୍ୟକ କାଣ୍ଡରେ ଚନ୍ଦ୍ରଭାଗାର ଦୂଲେଇଚଣ୍ଡୀ ଦେବୀଙ୍କର ରାମଚଣ୍ଡୀ ନାମ ଧାରଣ କରିବା ପ୍ରସଙ୍ଗ ଭଳି ବହୁ ଦୃଷ୍ଟାନ୍ତ ଦିଆଯାଇ ପାରିବ । ଏହି ଦେବଦେବୀଙ୍କର ବିଚିତ୍ର ନାମ, ପୂଜା ପଦ୍ଧତି, ଲୌକିକ ଚଳଣି ଆଦିରୁ ବହୁ ପ୍ରାଚୀନ ବିଶ୍ୱାସ ଓ ପରମ୍ପରାର ସୂଚନା ମିଳେ । ଏଥିରୁ ଅଧିକାଂଶ ହୁଏତ ଅର୍ଯ୍ୟେତର । ଭାରତୀୟ ଆର୍ଯ୍ୟ ସଭ୍ୟତାର ପ୍ରତିଷ୍ଠା ଓ ବିକାଶ ପୂର୍ବରୁ ତାର ଜନ୍ମ । ଏଥି ଲାଗି ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ଭାରତବର୍ଷ ତଥା ଉତ୍କଳ କେଉଁ ଅଜ୍ଞାତ କାଳରୁ ଅଷ୍ଟ୍ରିକ ଓ ଦ୍ରାବିଡ଼ମାନଙ୍କ ଭଳି ବହୁ ସଙ୍ଗଠିତ ଓ ସଭ୍ୟ ମାନବ ସମାଜର ସଂଗ୍ରାମ ଭୂମି ଥିଲା । ସଂସ୍କୃତି-ଇତିହାସରେ ଏକ ବଡ଼ କଥା ହେଉଛି, ବିଭିନ୍ନ ଯୁଗରେ, ସମୟର ପରିବର୍ତ୍ତିତ ଭୂମିକାରେ ନୂତନ ନୂତନ ସଭ୍ୟତା ଓ ସଂସ୍କୃତିର ଚେଚେହେର ଫୁଟି ଉଠେ । କିନ୍ତୁ ଜୀବିତ ମାନବ ଗୋଷ୍ଠୀରେ ଅନାଦି କାଳରୁ ପ୍ରବାହିତ ପରମ୍ପରାର ଧାରା ଛିନ୍ନ ହୁଏ ନାହିଁ । ତାହା ଅବ୍ୟାହତ ଭାବରେ ବହି ଚାଲିଥାଏ । ଏହି ଭାବରେ ଦେଖିଲେ ଅଗଣିତ ଜନସମାଜର କେଉଁ ଅନାଦି କାଳର ମାନବ ଛବିରେ ଦାଣ୍ଡି ରାମାୟଣରେ ପ୍ରତିଚ୍ଛବି ରଞ୍ଜିତ । ମହାକବି ବାଲ୍ମୀକିଙ୍କ ରାମାୟଣ ରଚିତ ହେବାର ବହୁବର୍ଷ ପୂର୍ବରୁ ଏ ଦେଶରେ ପ୍ରଚଳିତ କାହାଣୀମାନ ଏଥିରେ ଆତ୍ମପ୍ରକାଶ କରିଥିବା ଅସମ୍ଭବ ନୁହେ (୧) । ଏହାର କବି ବଳରାମ ଦାସ ମାତ୍ର ପାଞ୍ଚଶହ ବର୍ଷ ପୂର୍ବେ ଏ ଦେଶରେ

---

(୧) ଭୂମିକା—Bengali Ramayans contain legends older then Valmiki Epic. page 3.—Bengali Ramayan —D. C. Sen.

ସମସ୍ତରେ ବିଚରଣ କରୁଥିଲେହେଁ, ଅଗତ୍ୟା ଭାବ ପରମ୍ପରା ଏ ଦେଶର ଗଗନ ପବନରେ ଜନମୁଖରେ ବହୁକାଳରୁ ବିଚରଣ କରି ଆସୁଥିଲା ।

**ପ୍ରାଚୀନ ଶାସ୍ତ୍ରୀୟ ଆଧାର—**

ଓଡ଼ିଆ ରାମାୟଣ ଯେତେ ସମ୍ଭବତଃ ଜନମୁଖୀ ଧାରାରେ ଯେଉଁଭଳି ପୁଷ୍ଟ, ବହୁ ପ୍ରାଚୀନ ଶାସ୍ତ୍ରୀୟ ଧାରାରେ ସେଭଳି ସମୃଦ୍ଧ । ପରେ ଏହାର ବିଶେଷ ଆଲୋଚନା ହେବ । ରାମଚରିତକୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ଅବଲମ୍ବନ କରି ଯେଉଁ ବିଶାଳ ଭାରତୀୟ ସଂସ୍କୃତି ଗଢ଼ା ହୋଇଅଛି— ଓଡ଼ିଆ ରାମାୟଣ ତାହାର ଏକ ସବିଶେଷ ଅଂଶ ମାତ୍ର । ଏହାର ସମ୍ୟକ୍ ପରିଚୟ ଦେବାକୁ ଯିବାପୂର୍ବରୁ ବୈଦିକ, ବୌଦ୍ଧ, ପୌରାଣିକ ଓ ଲଳିତ ସାହିତ୍ୟରେ ରାମଚରିତର ବିକାଶଧାରା ପ୍ରତି ଏକ ଶୂନ୍ୟସନ୍ଧାରୀ ଦୃଷ୍ଟି ଦେବା ଉଚିତ ।

**ବୈଦିକ ସାହିତ୍ୟ—**

ବେଦ ଭାରତୀୟ ସଂସ୍କୃତିର ପ୍ରଥମ ଓ ପ୍ରଧାନ ଅବଦାନ । ଏଥିରେ ରାମଚରିତର କୌଣସି ବିଶେଷ ବର୍ଣ୍ଣନା ମିଳେ ନାହିଁ । ତେବେ ଇକ୍ଷ୍ୱାକୁ, ଦଶରଥ ଓ ରାମ ଆଦି ପ୍ରତ୍ୟେକ ଯେ ଜଣେ ଜଣେ ଶକ୍ତିଶାଳୀ ରାଜା ଥିଲେ, ତାହାର ସୂଚନା ମିଳେ । କିନ୍ତୁ ସେମାନଙ୍କ ମଧ୍ୟରେ କୌଣସି ବଂଶଗତ ବା ପାରିବାରିକ ସମ୍ପର୍କର ଇଙ୍ଗିତ ନାହିଁ । ବୈଦିକ ସୂର୍ଯ୍ୟପୁତ୍ରୀ ସୀତା, ସାବିତ୍ରୀ ବା ଭୂମି ଓ କୃଷିର ଅଧିଷ୍ଠାତ୍ରୀ ସୀତାଙ୍କର ଉପର୍ଯ୍ୟୁକ୍ତ କୌଣସି ପାତ୍ର ପାତ୍ରୀଙ୍କ ସହିତ କୌଣସି ସମ୍ବନ୍ଧ ଲକ୍ଷ୍ୟ କରି ହୁଏ ନାହିଁ । ବୈଦିକ ସାହିତ୍ୟରେ ରାମଚରିତର ବିଶେଷ ଅନୁସନ୍ଧାନ ପରେ ଡା: ବୁଲ୍‌କେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଏଠାରେ ଉଲ୍ଲେଖଯୋଗ୍ୟ । "ଏହୁ (ବୈଦିକ) କାଳରେ ରାମାୟଣ ରଚିତ ହୋଇଥିବା ବା ରାମଙ୍କ ସମ୍ବନ୍ଧୀୟ ଗାଥାଗୁଡ଼ିକ ପ୍ରସିଦ୍ଧି ଲଭିଥିବାର କୌଣସି ସୂଚନା ବୈଦିକ ସାହିତ୍ୟରେ ମିଳେ ନାହିଁ । ତେବେ ଅନେକ ଐତିହାସିକ ବ୍ୟକ୍ତିଙ୍କର ନାମ ରାମାୟଣର ପାତ୍ରମାନଙ୍କ ନାମ ସହିତ ମିଳିଯାଏ । ଏଥିରୁ ରାମାୟଣର ପାତ୍ରମାନଙ୍କର ଐତିହାସିକତା ବିଷୟରେ କିଛିଟା ସୂଚନା ମିଳେ । ନିଃସନ୍ଦେହରେ କେବଳ ଏତିକି ମାତ୍ର କୁହାଯାଇ ପାରେ" (୧) ।

(୧) ଏଇକ, ରାମକଥା, ଡ: ବୁଲ୍‌କେ, ପୃ: ୬୯—ବୈଦିକ ସାହିତ୍ୟ ଔର ରାମକଥା ।

## ବୌଦ୍ଧ ସାହିତ୍ୟ—

ବୁଦ୍ଧଦେବଙ୍କ ଆବିର୍ଭାବ ଓ ବୌଦ୍ଧଧର୍ମ ପ୍ରଚାରର କାଳରେ ବାଲ୍ମୀକି ରାମାୟଣ ରଚିତ ହୋଇଥିଲା କି ନାହିଁ ଏ ବିଷୟରେ ପଣ୍ଡିତମାନଙ୍କର ବହୁ ମତଭେଦ ରହିଅଛି । ତେବେ ରାମଚରିତ ସମ୍ବନ୍ଧୀୟ ବହୁ କଥା ଯେ ସେତେବେଳେ ଲୋକରେ ଖୁବ୍ ପ୍ରିୟ ଓ ପ୍ରଚଳିତ ଥିଲା—ଏ ବିଷୟରେ ସମସ୍ତେ ଏକମତ । ବୁଦ୍ଧଦେବ କୌଣସି ଜଣେ ଗୃହସ୍ଥର ପିତୃବିୟୋଗରେ ସାନ୍ତ୍ୱନା ଦେବାକୁ ଯାଇ ବାରଣସୀର ରାଜା ଦଶରଥ ଓ ତାଙ୍କ ପୁତ୍ର ରାମପଣ୍ଡିତଙ୍କ ପିତୃବିୟୋଗରେ ବିଚଳିତ ନ ହେବା କଥା କହିଥିବାର ଦଶରଥ ଜାତକରେ ବର୍ଣ୍ଣନା କରାଯାଇଅଛି । ଅନାମକ ଜାତକରେ କୌଣସି ପାତ୍ରଙ୍କର ବିଶେଷ ନାମୋଲ୍ଲେଖ ନ ଥିଲେ ବି ରାମ ସୀତାଙ୍କ ବନବାସ, ସୀତାହରଣ, ଜଟାୟୁ ବୃତ୍ତାନ୍ତ, ବାଲି ସୁଗ୍ରୀବ ଯୁଦ୍ଧ, ସେତୁବନ୍ଧ ବନ୍ଧନ, ସୀତାଙ୍କ ଅଗ୍ନି ପରୀକ୍ଷା ଆଦି ବହୁ ପ୍ରସଙ୍ଗର ସୂଚନା ମିଳେ । ଏହା ବ୍ୟତୀତ "ସାମଜାତକ", "ମହା ସୁତ ସୋମ ଜାତକ", "ସମ୍ବୁଲ ଜାତକ" ଆଦିରୁ ଯଥାକ୍ରମେ ଅନ୍ଧମୁନି ଉପାଖ୍ୟାନ, ବାଲି ଓ ରାମଙ୍କ ଉକ୍ତି ଓ ରାବଣର ଅଶୋକ ବନରେ ସୀତାଭେଟ ଆଦି ପ୍ରସଙ୍ଗରେ ଇଙ୍ଗିତ ମିଳିଥାଏ ।

ବୌଦ୍ଧଧର୍ମର ଈଶ୍ୱରଙ୍କ ବିଷୟରେ ନୀରବତା ଓ ସନ୍ନ୍ୟାସ ପ୍ରବୃତ୍ତି ବିରୋଧରେ ରାମାୟଣରୁ ସ୍ପଷ୍ଟ ଇଙ୍ଗିତ ମିଳେ । ତଥାପି ଏହା ଉପରେ ବୌଦ୍ଧଧର୍ମର ପରୋକ୍ଷ ପ୍ରଭାବ ବିଷୟରେ କ୍ୱଚିତ୍ ମତାନ୍ତର ଦେଖାଯାଏ । କାରଣ ମହାଭାରତ ଭଳି ଦୁର୍ଦ୍ଦାନ୍ତ ରଣୋନ୍ମତ୍ତତା, ବିଦ୍ୱେଷ ଓ ଘୃଣାର ଚିତ୍ର ରାମାୟଣରେ ନାହିଁ । ପୁଣି ରାମଚନ୍ଦ୍ରଙ୍କଠାରେ କ୍ଷତ୍ରିୟ ସୁଲଭ ଦୁର୍ଦ୍ଧର୍ଷ ଭାବ ଅପେକ୍ଷା, ମୁନି ସୁଲଭ ଶାନ୍ତ, କୋମଳ ଓ ପବିତ୍ର ଭାବର ଆଧିକ୍ୟ ଦେଖିବାକୁ ମିଳେ । ଏ ସବୁକୁ କେତେକ ବୁଦ୍ଧ ଚରିତ୍ରର ପରୋକ୍ଷ ପ୍ରଭାବ ବୋଲି ମନେ କରି ଥାଆନ୍ତି ।

## ରାମାୟଣ ଓ ମହାଭାରତ—

ରାମାୟଣ କାହାଣୀ ବାଲ୍ମୀକିଙ୍କ ରଚନା ପୂର୍ବରୁ ଦେଶର ଚତୁର୍ଦ୍ଦିଗରେ ହୁଏତ ବିକ୍ଷିପ୍ତ ଭାବରେ ପଡ଼ି ରହିଥିଲା । କିନ୍ତୁ ସର୍ବ ପ୍ରଥମେ ବାଲ୍ମୀକି ଏହାକୁ ଏକ ଶୃଙ୍ଖଳିତ ରୂପ ଦେଲେ । ବାଲ୍ମୀକି କେବେ ରାମାୟଣ ରଚନା

କରିଥିଲେ, ସେ ବିଷୟରେ ପଣ୍ଡିତମାନଙ୍କ ମଧ୍ୟରେ ବହୁ ମତଭେଦ ଦେଖାଯାଏ । ପ୍ରାଥମିକ ଅବସ୍ଥାରେ ୟୁରୋପୀୟ ପଣ୍ଡିତମାନେ ମନେ କରୁଥିଲେ, ଏହାର ରଚନା କାଳ ଖ୍ରୀଷ୍ଟ ଜନ୍ମର ଏକ ହଜାର ବର୍ଷ ପୂର୍ବରୁ ହୋଇଥିବ ବୋଲି । ରାମାୟଣ ଉପରେ ବୌଦ୍ଧ ଓ ୟୁନାନୀ ପ୍ରଭାବ ଲକ୍ଷ୍ୟ କରି ଡାଃ ୱେବର ପ୍ରମୁଖ ଅପେକ୍ଷାକୃତ ଅର୍ବାଚୀନ ବୋଲି ମନେ କରିଥିଲେ । ପରବର୍ତ୍ତୀ ସମାଲୋଚକ ମାନେ 'ଆଦ' ରାମାୟଣ ଓ ପ୍ରଚଳିତ ରାମାୟଣ ଭିନ୍ନ ସମୟରେ ରଚିତ ବୋଲି ମନେ କରିଥାନ୍ତି । ଉତ୍ତରକାଣ୍ଡ ଓ ଆଦିକାଣ୍ଡ ସହିତ ପ୍ରଚଳିତ ରାମାୟଣ ଖ୍ରୀଷ୍ଟ ୨ୟ ଶତକରୁ ପ୍ରାଚୀନ ନୁହେଁ ବୋଲି ଅନେକଙ୍କର ମତ । ତେବେ, 'ଆଦ' ରାମାୟଣ ସମ୍ବନ୍ଧରେ ଏବେ ବି ଦୁଇଟି ମତ ଦେଖାଯାଏ । ଏଥିରେ ବୌଦ୍ଧ ପ୍ରଭାବର ସ୍ୱଳ୍ପତା ଲକ୍ଷ୍ୟ କରି ମୋନିୟର ୱିଲିୟମ ଓ ସି. ବି. ବୈଦ୍ୟ ମନେ କରନ୍ତି 'ଆଦ' ରାମାୟଣ ବୁଦ୍ଧଙ୍କ ଆବିର୍ଭାବର ପୂର୍ବବର୍ତ୍ତୀ ରଚନା । କିନ୍ତୁ ବୌଦ୍ଧ ସାହିତ୍ୟରେ ରାମ କଥାର ସ୍ୱଳ୍ପତା ଓ ରାମାୟଣ ଉପରେ ବୌଦ୍ଧ ପ୍ରଭାବ ଆଦିରୁ ମନେ ହୁଏ ଏହା ବୌଦ୍ଧସାହିତ୍ୟର ପରବର୍ତ୍ତୀ ରଚନା । ଏ ସ୍ଥଳରେ ସବୁଠାରୁ ଅର୍ବାଚୀନ ପାଶ୍ଚାତ୍ୟ ପଣ୍ଡିତ କୀଥ୍‌ଙ୍କ ମତ ଅଧିକ ସତ୍ୟ ମନେ ହୁଏ । ସେ ଖ୍ରୀ: ପୂ: ୩ୟ ଶତକକୁ ରାମାୟଣ ରଚନାର କାଳ ଧରି ଅଛନ୍ତି ।

ପ୍ରଚଳିତ ରାମାୟଣର ତିନୋଟି ସ୍ୱତନ୍ତ୍ର ପାଠ ମିଳେ—ଦାକ୍ଷିଣାତ୍ୟ, ଗୌଡ଼ୀୟ ଓ ପଶ୍ଚିମୋତ୍ତରୀୟ । ପ୍ରତ୍ୟେକ ପାଠରୁ ଅନ୍ୟ ପାଠରେ ନ ଥିବା ଭିନ୍ନ ଶ୍ଳୋକମାନ ମିଳେ । ପୁଣି ତିନୋଟିଯାକ ପାଠରେ ମିଳୁଥିବା ଶ୍ଳୋକ-ଗୁଡ଼ିକର ସ୍ଥାନକ୍ରମ ଓ ପାଠରେ ବି ପାର୍ଥକ୍ୟ ଦେଖିବାକୁ ମିଳେ । ଏହି ପାଠାନ୍ତରରୁ ଅନୁମାନ କରାହୁଏ, ବହୁଦିନ ଯାଏଁ ବାଲ୍ମୀକି ରାମାୟଣ ଦେଶରେ ଜନମୁଖରେ ପ୍ରଚଳିତ ଥିଲା । ପରବର୍ତ୍ତୀକାଳରେ ଭିନ୍ନ ପରମ୍ପରାର ଆଧାର ଉପରେ ଏହା ଲିଖିତ ରୂପ ଧାରଣ କରିଥିଲା । ତେବେ ଏହି ଭିନ୍ନ ପାଠଗୁଡ଼ିକରେ କଥାବସ୍ତୁ ଦିଗରୁ କୌଣସି ବିଶେଷ ମୌଳିକ ପାର୍ଥକ୍ୟ ଦେଖିବାକୁ ମିଳେ ନାହିଁ । ତିନୋଟି ଯାକ ପାଠରେ ଉତ୍ତରକାଣ୍ଡରେ ଅଧିକ ମେଳ ଦେଖା ଯାଉଥିବାରୁ ଏହା ଅର୍ବାଚୀନ ରଚନା ବୋଲି ମନେ ହୁଏ । ପଶ୍ଚିମୋତ୍ତରୀୟ ଓ ଗୌଡ଼ୀୟ ପାଠ ପରସ୍ପରର ନିକଟବର୍ତ୍ତୀ । ଦାକ୍ଷିଣାତ୍ୟ ପାଠରୁ ଏ ଉଭୟର ପାର୍ଥକ୍ୟ ଅଧିକ ।

ଭାରତୀୟ ଜୀବନ ଓ ଭାବଧାରାକୁ ଏହି ମହାଗ୍ରନ୍ଥ ନାନା ଭାବରେ ପ୍ରଭାବିତ କରି ଆସିଅଛି । ରାମଚରିତ ଘେନି ଭାରତୀୟ ସାହିତ୍ୟରେ ଯେତେ ଗ୍ରନ୍ଥ ଲେଖା ହୋଇଅଛି, ତାହା ଉପରେ ବାଲ୍ମୀକି ରାମାୟଣର ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରଭାବ ସ୍ପଷ୍ଟ । ଓଡ଼ିଆ ରାମାୟଣର ପୃଷ୍ଠଭୂମି ରୂପେ ଏହା ଏକ ଗରିଷ୍ଠ ଉପାଦାନ ।

ସମଗ୍ର ଭାରତୀୟ ସାହିତ୍ୟରେ ମହାଭାରତର ସ୍ଥାନ ଅଦ୍ୱିତୀୟ । ଏହା ରାମାୟଣର ପୂର୍ବେ ବା ପରେ ରଚିତ ହୋଇଥିଲା, ତାହା ଏବେ ବି ତର୍କର ସାମଗ୍ରୀ ହୋଇ ରହିଅଛି । ମହାଭାରତରେ ବନପର୍ବ, ଦ୍ରୋଣ ଓ ଶାନ୍ତି ପର୍ବରେ ବିଭିନ୍ନ ସ୍ଥଳରେ, ଏକାଧିକ ପ୍ରସଙ୍ଗରେ ରାମାୟଣ କଥାର ଅବତାରଣା ଦେଖିବାକୁ ମିଳେ । ବନପର୍ବର ଭୀମହନୁମାନ ସମ୍ବାଦ ବ୍ୟତୀତ ଅନ୍ୟାନ୍ୟ ରାମଙ୍କ ଅବତାର ପ୍ରସଙ୍ଗ ଦେଖିବାକୁ ମିଳେ ନାହିଁ । ନାରଦ, ବ୍ୟାସ ଓ ଶ୍ରୀ କୃଷ୍ଣଙ୍କ ମୁଖରେ ଷୋଡ଼ଶ ରାଜୋପାଖ୍ୟାନ ପ୍ରସଙ୍ଗରେ ଥିବା ରାମଚରିତର କଥାବସ୍ତୁ ଖୁବ୍ ସଂକ୍ଷିପ୍ତ । କିନ୍ତୁ ରାମରାଜ୍ୟର ମହତ୍ତ୍ୱ ଓ ରାମଚରିତର ମହାନତା ପ୍ରତି ଅଧିକ ଦୃଷ୍ଟି ଦିଆ ଯାଇଅଛି । ବାଲ୍ମୀକି ରାମାୟଣ ଓ ମହାଭାରତର ରାମ ଉପାଖ୍ୟାନ ମଧ୍ୟରେ ସମ୍ପର୍କ ବିଷୟରେ ଡ଼ାଃ ଓ୍ୱେବରଙ୍କ ମନ୍ତବ୍ୟ ସ୍ପଷ୍ଟ । ତାଙ୍କ ମତରେ, ମହାଭାରତର ରାମ ଉପାଖ୍ୟାନ ବାଲ୍ମୀକି କୃତ ଆଦି ରାମାୟଣରେ ଏକ ସ୍ୱତନ୍ତ୍ର ସଂକ୍ଷିପ୍ତ ରୂପମାତ୍ର । ଉଭୟ କୌଣସି ଏକ ସାଧାରଣ ମୂଳସ୍ରୋତ ଉପରେ ସ୍ୱତନ୍ତ୍ର ବିକାଶ ବୋଲି ମନେ କରିବା ଅସଙ୍ଗତ ନୁହେଁ (୧) ।

## ପୌରାଣିକ ସାହିତ୍ୟ—

ଓଡ଼ିଆ ରାମାୟଣର ପୃଷ୍ଠଭୂମି ରୂପେ ବିଶାଳ ପୌରାଣିକ ସାହିତ୍ୟରେ ଛିନ୍ନ ବିଚ୍ଛିନ୍ନ ଭାବେ ବର୍ଣ୍ଣିତ ହୋଇଥିବା ରାମାୟଣ କଥାମାନ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଓଡ଼ିଆ ରାମାୟଣ ଉପରେ ପୁରାଣମାନଙ୍କର ପ୍ରଭାବ ସବୁବେଳେ ପରୋକ୍ଷ ନ ହୋଇ ଅନେକ ସମୟରେ ପ୍ରତ୍ୟକ୍ଷ ହୋଇ ପଡ଼ିଅଛି । ରାମ, ସୀତା, ଲକ୍ଷ୍ମଣ ଓ ହନୁମାନ ଆଦି ରାମାୟଣର ବିଭିନ୍ନ ପାତ୍ରମାନଙ୍କର କୌଣସି ନା କୌଣସି ଦେବଦେବୀଙ୍କର ଅବତାର ରୂପେ ପ୍ରତିଷ୍ଠା ପ୍ରଥମେ ପୁରାଣ ପୃଷ୍ଠାରେ ଦେଖିବାକୁ

(୧) On the Ramayan, page. 65

ମିଳେ । ଓଡ଼ିଆ ରାମାୟଣରେ ବହୁ ସ୍ଥଳରେ ଏସବୁର ଅନୁକରଣ କରା-ଯାଇଅଛି ମାତ୍ର । ଏହା ବ୍ୟତୀତ ବହୁ ଅପ୍ରଧାନ ପାତ୍ରମାନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ଏହି ପୁରାଣଗୁଡ଼ିକରୁ ଗୃହୀତ । ପଦ୍ମପୁରାଣର ପାତାଳଖଣ୍ଡ ଅନୁସରଣରେ ଦାଣ୍ଡି ରାମାୟଣରେ ମନ୍ଥରାର ପୂର୍ବଜନ୍ମ କଥନ—ଏହାର ଗୋଟିଏ ଦୃଷ୍ଟାନ୍ତ । ଏହା ବ୍ୟତୀତ ପୁରାଣଗୁଡ଼ିକ ଉପରେ ଯେପରି ଶାକ୍ତ ଓ ଶୈବ ଆଦି ସଂପ୍ରଦାୟ ବିଶେଷର ପ୍ରଭାବମାନ ଲକ୍ଷ୍ୟ କରାଯାଏ, ଓଡ଼ିଆ ରାମାୟଣରେ ମଧ୍ୟ ତାହାର ଦୃଷ୍ଟାନ୍ତ ଅଭାବ ନାହିଁ ।

ଏହି ବିଶାଳ ପୌରାଣିକ ଧର୍ମସାହିତ୍ୟଗୁଡ଼ିକର ରଚନାକାଳ ଠିକ ଭାବେ ନିର୍ଣ୍ଣୟ କରିବା ସର୍ବଦା ସମ୍ଭବ ନ ହେଲେ ବି ଏଗୁଡ଼ିକ ଖ୍ରୀଷ୍ଟ ଦ୍ୱିତୀୟ ବା ତୃତୀୟ ଶତକରୁ ପଞ୍ଚଦଶ ଷୋଡ଼ଶ ଶତକ ମଧ୍ୟରେ ରଚିତ ହୋଇଥିବା ନିଶ୍ଚିତ । ଡା: ରାଜେନ୍ଦ୍ର ହାଜରାଙ୍କ ନିର୍ଦ୍ଧାରଣ ଅନୁସାରେ ସମଗ୍ର ପୌରାଣିକ ସାହିତ୍ୟଙ୍କୁ ମହାପୁରାଣ (The major Puranas) ଓ ଉପପୁରାଣ ବା ଗୌଣପୁରାଣ (The minor Purans) ଏହି ଦୁଇ ଭାଗରେ ବିଭକ୍ତ କରାଯାଇପାରେ (୧) । ମାର୍କଣ୍ଡେୟ, ବିଷ୍ଣୁ, ମତ୍ସ୍ୟ, ଭାଗବତ ଓ କୂର୍ମ ଆଦି ଅଷ୍ଟାଦଶ ପୁରାଣ ମହାପୁରାଣର ଅନ୍ତର୍ଗତ । ଏ ଗୁଡ଼ିକ ମଧ୍ୟରୁ ବିଷ୍ଣୁପୁରାଣ (୪ର୍ଥ ଶତକ), ବାୟୁପୁରାଣ (୫ମ ଶତକ), ଭାଗବତ ପୁରାଣ (୬ଷ୍ଠ ଓ ୭ମ ଶତକ) ଓ କୂର୍ମପୁରାଣରେ ରାମାୟଣ କଥାର ବର୍ଣ୍ଣନା ମିଳେ । ଭାଗବତ ପୁରାଣରେ ସର୍ବପ୍ରଥମେ ସୀତାଙ୍କୁ ଲକ୍ଷ୍ମୀଙ୍କ ଅବତାର ରୂପେ ଗ୍ରହଣ କରା ହୋଇଅଛି । ଗୌଣ ପୁରାଣଗୁଡ଼ିକର ମୂଳ ରଚନା ମିଳେ ନାହିଁ । ପ୍ରଚଳିତ ଗୌଣ ପୁରାଣଗୁଡ଼ିକ ପରବର୍ତ୍ତୀ କାଳରେ ନୂତନ ସଂଯୋଜନା, ପରିବର୍ତ୍ତନ ଆଦି ଦ୍ୱାରା ବହୁଭାବରେ ରୂପାନ୍ତରିତ ହୋଇଥିବାର ଅନୁମାନ । ଏଗୁଡ଼ିକ ମଧ୍ୟରେ ଅଗ୍ନି, ନାରଦୀୟ, ବ୍ରହ୍ମ, ଗରୁଡ଼, ସ୍କନ୍ଦ ଓ ପଦ୍ମପୁରାଣ ଆଦି ପ୍ରଧାନ । ପ୍ରତ୍ୟେକଟିରେ କିଛି ନା କିଛି ରାମଚରିତ ସଂଯୋଜିତ ହୋଇଥିବାର ଦେଖିବାକୁ ମିଳେ । ବିବାହ ପରେ ମନ୍ଥରା ଉପରେ ରାମ ଅତ୍ୟାଚାର କରିଥିବାରୁ ସେ ରାମଙ୍କୁ ବନବାସ ପଠାଇ ପ୍ରତିଶୋଧ ନେଇଥିବା କଥା ଅଗ୍ନିପୁରାଣରୁ ମିଳେ । ଦାଣ୍ଡି ରାମାୟଣରେ ଏହା ଗୃହୀତ ହୋଇଛି । ନାରଦୀୟ ପୁରାଣରେ ପ୍ରଥମେ ରାମ ଲକ୍ଷ୍ମଣ ଆଦିଙ୍କୁ ନାରାୟଣ ସଙ୍କର୍ଷଣ

(୧) Studies in the Puranic records on Hindu rites and customs—Dr R.C. Hazra, Chap. II. page. 8.

ଆଦିଙ୍କ ଅବତାର ରୂପେ ଗଣନା କରାଯାଇଅଛି । ସ୍କନ୍ଦପୁରାଣରେ ରାମାୟଣ କଥାରେ ଶୈବ ପ୍ରଭାବ ଅତ୍ୟନ୍ତ ସ୍ପଷ୍ଟ । ଏଥିରେ ଦଶରଥ, ରାମଚନ୍ଦ୍ର, ରାବଣ ଆଦି ପ୍ରଧାନ ପାତ୍ରଙ୍କ ସହ ବହୁ ଅପ୍ରଧାନ ପାତ୍ର ବ ନାନା ସ୍ଥାନରେ ବିଭିନ୍ନ ଉଦ୍ଦେଶ୍ୟରେ ଶିବ ଲିଙ୍ଗ ସ୍ଥାପନା କରିଥିବା କଥା କୁହାଯାଇ ଅଛି । ଅଗ୍ନି ପରୀକ୍ଷା ପରେ ଅଗ୍ନିଙ୍କର ସୀତାଙ୍କ ସତୀତ୍ୱ ବିଷୟରେ ପ୍ରଶଂସା ( ଅଗ୍ନି ପୁରାଣ, ବ୍ରହ୍ମଖଣ୍ଡ, ୩୦ ଅଧ୍ୟାୟ ); ଦଶରଥଙ୍କର ଶାନ୍ତା ନାମକ ପୁତ୍ରୀ ଲାଭ (ଏକନ, ନାଗର ଖଣ୍ଡ ଅ: ୯୮) ହନୁମାନ ଚରିତର ବିସ୍ତୃତ ବର୍ଣ୍ଣନା ଓ ହନୁମାନଙ୍କୁ ରୁଦ୍ର ଅବତାର ରୂପେ ଗ୍ରହଣ (ଏକନ, ଅବନ୍ତୀ ଖଣ୍ଡ ଅ: ୭୯) ଆଦିର ଯଥାତଥା ଅନୁସରଣ ଓଡ଼ିଆ ଦାଣ୍ଡି ରାମାୟଣରେ ବଳରାମ ଦାସ କରିଅଛନ୍ତି । ଏଇପରି ପଦ୍ମପୁରାଣର ପାତାଳ ଖଣ୍ଡରେ ଯେଉଁ ରାମଚରିତ ଦେଖିବାକୁ ମିଳେ ତାହା ଓଡ଼ିଆ ରାମାୟଣକୁ ଅଶେଷ ଭାବରେ ପ୍ରଭାବିତ କରିଅଛି । ପଦ୍ମପୁରାଣରେ ଅବତାରବାଦ ପୂର୍ଣ୍ଣ ଭାବରେ ପ୍ରତିଷ୍ଠିତ । 'ସ୍ୱର୍ଗରେ ଲକ୍ଷ୍ମୀ ଓ ନାରାୟଣ ରୂପରେ ରାମ ଓ ସୀତାଙ୍କ ମିଳନ ବର୍ଣ୍ଣନା' ଦ୍ୱାରା ରାମଚରିତର ପରିଣତି ଏଥିରେ ସୁଖାନ୍ତ କରାଯାଇଅଛି ( ଏକନ, ସର୍ଗ—୬୭-୬୮ ) । ବଳରାମ ଦାସ ଏହାକୁ ସଂପୂର୍ଣ୍ଣ ରୂପେ ଗ୍ରହଣ କରିଅଛନ୍ତି ।

ଓଡ଼ିଆ ରାମାୟଣରେ ନାନା ଭାବରେ ଯେ କେବଳ ପୌରାଣିକ କଥା ଭାଗର ଅନୁସରଣ କରାଯାଇଅଛି ତାହା ନୁହେ, ପୌରାଣିକ ଭାବ-ସମ୍ପଦର ପ୍ରଚ୍ଛନ୍ନ ପ୍ରଭାବ ସ୍ପଷ୍ଟ ହୋଇ ଉଠିଅଛି । ହିନ୍ଦୁ ସମାଜର ଆଚାର ଓ ଚଳଣୀଗୁଡ଼ିକ ବିଷୟରେ ଟିପ୍ପଣୀ ଦେବା, ଧର୍ମ ଓ ସାମାଜିକ ନୀତି ନିୟମକୁ ନିଜର ଅଙ୍ଗୀଭୂତ କରି ନେବା ପୁରାଣଗୁଡ଼ିକରେ ଖ୍ରୀଷ୍ଟ ଷଷ୍ଠ ଶତକ ପୂର୍ବରୁ ଆରମ୍ଭ ହୋଇଯାଇଥିଲା । ପରବର୍ତ୍ତୀ କାଳରେ ହିନ୍ଦୁ ସମାଜରେ ଧର୍ମ ଓ ଆଚାର ବ୍ୟବହାରକୁ ନିୟନ୍ତ୍ରିତ କରିବା ଲାଗି ଏଗୁଡ଼ିକର କ୍ଷମତା ଅସୀମ ହୋଇ ଉଠିଥିଲା । ଏ ସବୁର ପ୍ରଭାବ ଓଡ଼ିଆ ରାମାୟଣ ଉପରେ କିଭଳି ସ୍ପଷ୍ଟତର ହୋଇଛି, ଦାଣ୍ଡି ରାମାୟଣର "ଧର୍ମ ଓ ସମାଜ" ପ୍ରସଙ୍ଗ ଆଦିରେ ଆଲୋଚିତ ହେବ ।

## ସାଂପ୍ରଦାୟିକ ରାମାୟଣ—

ପୌରାଣିକ ସାହିତ୍ୟ ବ୍ୟତୀତ ରାମଚରିତ ଯେଜ୍ଞ ସ୍ୱତନ୍ତ୍ର ଭାବରେ ବିଭିନ୍ନ ଧର୍ମ ସଂପ୍ରଦାୟମାନଙ୍କ ଦ୍ୱାରା ରଚିତ ଏକାଧିକ ରାମାୟଣ ସଂସ୍କୃତରେ ମିଳେ । ଏଗୁଡ଼ିକର ପରୋକ୍ଷ ଓ ପ୍ରତ୍ୟକ୍ଷ ଅନୁସରଣରେ ଓଡ଼ିଆରେ ଏକାଧିକ ରାମାୟଣ ବିଭିନ୍ନ ନାମରେ, ବିଭିନ୍ନ ସମୟରେ ରଚିତ ହୋଇ-ଅଛି । ବଳରାମ ଦାସଙ୍କ ରାମାୟଣକୁ ମଧ୍ୟ କେତେକ ସ୍ଥଳରେ ଏଗୁଡ଼ିକ ପରୋକ୍ଷ ଭାବରେ ପ୍ରଭାବିତ କରିଅଛି । ଏଥି ମଧ୍ୟରେ ଯୋଗବାଶିଷ୍ଠ ରାମାୟଣ, ଅଧ୍ୟାତ୍ମ, ଅଦ୍ଭୁତ ଓ ଆନନ୍ଦ ରାମାୟଣ ଆଦି ପ୍ରଧାନ । ଯୋଗ-ବାଶିଷ୍ଠ ରାମାୟଣ ଅଷ୍ଟମରୁ ଏକାଦଶ ଶତକ ମଧ୍ୟରେ ରଚିତ ହୋଇଥିବା ଅନୁମାନ । ଏଥିରେ କାକ ଭୁଷୁଣ୍ଡୀ ପ୍ରସଙ୍ଗ ଓ ଯୋଗ ବିଷୟରେ ବହୁଳ ଚର୍ଚ୍ଚା ଦେଖିବାକୁ ମିଳେ । ଅଧ୍ୟାତ୍ମ ରାମାୟଣର ରଚନାକାଳ ଓ ରଚକଙ୍କ ବିଷୟରେ କୌଣସି ବିଶେଷ ତଥ୍ୟ ମିଳି ନାହିଁ । ଏହା ରାମାନନ୍ଦ ସଂପ୍ର-ଦାୟର ଏକ ଆଦରଣୀୟ ଗ୍ରନ୍ଥ । ରାମଭକ୍ତିର ବିକାଶ ଏଥିରେ ବିଶେଷଭାବେ ଦେଖାଯାଏ । ଓଡ଼ିଆରେ ହଳଧର ଦାସ ( ୧୭ଶ ଶତକର ଅଦ୍ୟପାଦ ) ଏହାର ମର୍ମ ଅନୁସରଣ କରି ଅଧ୍ୟାତ୍ମ ରାମାୟଣ ଲେଖିଅଛନ୍ତି । ଅଦ୍ଭୁତ ରାମାୟଣ ଅଧ୍ୟାତ୍ମ ରାମାୟଣର ପରବର୍ତ୍ତୀ ରଚନା ବୋଲି ମନେ ହୁଏ । ଏଥିର ଶାକ୍ତ ପ୍ରଭାବ ଓ ସାରଳା ଦାସଙ୍କ ବିଲଙ୍କା ରାମାୟଣ ସହ ଏହାର ସମ୍ପର୍କ କଥା ପୂର୍ବେ କୁହାଯାଇଅଛି । ଆନନ୍ଦ ରାମାୟଣର ରଚନା ପଞ୍ଚଦଶ ଶତକରେ ହୋଇଥିବା ଅନୁମାନ କରାଯାଏ । ଅଷ୍ଟାଦଶ ଶତକର ଓଡ଼ିଆ କବି ବିଶ୍ୱନାଥ ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣ ଉପରେ ଏହାର ସାରକାଣ୍ଡର ବାଳଲୀଳା ବର୍ଣ୍ଣନା ଓ ବିଳାସ କାଣ୍ଡରେ ସୀତାଙ୍କ ରୂପ ବର୍ଣ୍ଣନା ପ୍ରଭାବ ପକାଇଥିବା ଖୁବ୍ ସମ୍ଭବ ।

## ଲଳିତ ସାହିତ୍ୟ ( Classics )—

ରାମଚରିତ ତାର ମହନୀୟତା ଲାଗି ଯୁଗେ ଯୁଗେ ଭାରତୀୟ ଲଳିତ ସାହିତ୍ୟକୁ ଉପାଦାନ ଯୋଗାଇ ଆସିଅଛି । କାଳିଦାସ, ଭବଭୂତି ଆଦି ମହାକବିଗଣ ରାମଚରିତ ଅବଲମ୍ବନରେ ମହାକାବ୍ୟ ଓ ନାଟକମାନ ରଚନା କରି ବିଶ୍ୱସାହିତ୍ୟକୁ ସମ୍ପଦଶାଳୀ କରି ଯାଇଅଛନ୍ତି । ବାଲ୍ମୀକି

ରାମାୟଣରେ ମନ୍ଥରା, କୈକେୟୀ ଆଦି ଯେଉଁ ଚରିତ୍ରମାନଙ୍କୁ ଦୋଷଯୁକ୍ତ ରୂପେ ଚିତ୍ରିତ କରାଯାଇଥିଲା, ଆଦର୍ଶର ସଂପୂର୍ତ୍ତି ଲାଗି ସେମାନଙ୍କର ନିର୍ଦ୍ଦୋଷତା ପ୍ରତିପାଦିତ ହୋଇଅଛି । ପରବର୍ତ୍ତୀ କାଳରେ ଯୌନରସମୂଳକ ସମ୍ଭୋଗ ବର୍ଣ୍ଣନା ସଂସ୍କୃତ କାବ୍ୟରେ ଏକ ଚରିତ୍ରଗତ ଲକ୍ଷଣ ହୋଇ ଉଠିଥିଲା । ମହାନାଟକ, ପ୍ରସନ୍ନରାଘବ ଓ ମୈଥିଳୀ କଲ୍ୟାଣ ଭଳି ରାମ-ଚରିତକୁ ନେଇ ରଚିତ ବହୁ କାବ୍ୟ ଓ ନାଟକରେ ଏହି ଶୃଙ୍ଗାର ପ୍ରାଧାନ୍ୟ ଓ ସମ୍ଭୋଗ ବର୍ଣ୍ଣନାର ପ୍ରାଚୁର୍ଯ୍ୟ ଦେଖିବାକୁ ମିଳେ । ଓଡ଼ିଆ ରାମାୟଣରେ ଯେଉଁଠି ଏଭଳି ବର୍ଣ୍ଣନାମାନ କରାଯାଇଅଛି, ସେଥିରେ ସଂସ୍କୃତ ଲଳିତ ସାହିତ୍ୟର ପ୍ରଭାବ ପଡ଼ିଥିବା ଅସମ୍ଭବ ନୁହେ ।

ଭାରତୀୟ ଧର୍ମ ଓ ପୁରାଣରେ ରାମଚରିତ, ଏଭଳି ବିକଶିତ ଓ ସମୃଦ୍ଧ ରୂପ ଲାଭ କରିଥିଲା ଯେ, ଭାରତୀୟ ସଂସ୍କୃତି ଓ ସାହିତ୍ୟରେ ତାର ପ୍ରଭାବ ଏଡ଼ିବା ଅସମ୍ଭବ ହୋଇ ଉଠିଥିଲା । ଏକଦା ପ୍ରତ୍ୟେକ ଭାରତୀୟ କବି ମନେ କରୁଥିଲେ, ରଘୁକୁଳୋତ୍ତମଙ୍କର ପ୍ରଶଂସା ଫଳ ମଣ୍ଡିତ ନ ହେଲେ କାବ୍ୟଦ୍ରୁମ ନିଷ୍ଫଳ ।

କୀର୍ତ୍ତିଃ ପୁଷ୍ପ ପରମ୍ପରା ପରିଣତଃ ସୋଽପ୍ୟଂ କବିତ୍ୱ-ଦ୍ରୁମଃ
କିଂ କବ୍ୟଃ କିୟୁତେ ବିନା ରଘୁକୁଳୋତ୍ତଂସ ପ୍ରଶଂସା ଫଳଂ ।

— ପ୍ରସନ୍ନ ରାଘବ

---

# ପ୍ରଚଳିତ ବାଲ୍ମୀକି ରାମାୟଣ ଓ ଦାଣ୍ଡି ରାମାୟଣ

"ଉନ୍ନତ କାବ୍ୟ ହେଉଛି, ଆପଣା ଦେଶ ଓ ଯୁଗର ଉଜ୍ଜ୍ୱଳ ବିକଶିତ କୁସୁମ । ଜାତୀୟ ଜୀବନର ମୂଳଦେଶରୁ ରସ ଗ୍ରହଣ କରି ତାହା ପୁଷ୍ଟ ହୁଏ । ତାର କୋମଳ ପାଖୁଡ଼ାର ସ୍ତରେ ସ୍ତରେ ଭବିଷ୍ୟ ବିକାଶ ଲାଗି ଅଦୃଶ୍ୟ ଉପାଦାନ ଭରି ରହେ ।"

—Poets the interpreters of their age—

Anna Swanwick, page. 4.

## ତୁଳନାତ୍ମକ ବିଚାରର ଆବଶ୍ୟକତା—

ଜଗମୋହନ ରାମାୟଣ ଓଡ଼ିଆ ସାହିତ୍ୟରେ ରାମଚରିତ ବିଷୟକ ପ୍ରଧାନ ପୌରାଣିକ ମହାକାବ୍ୟ । ରାମଚନ୍ଦ୍ରଙ୍କର ବିସ୍ତୃତ ଓ ଶୃଙ୍ଖଳିତ ପ୍ରକାଶ ଭାରତୀୟ ସାହିତ୍ୟରେ ସର୍ବପ୍ରଥମେ ବାଲ୍ମୀକି ରାମାୟଣରେ ଘଟିଥିଲା । ବର୍ତ୍ତମାନ ପ୍ରଚଳିତ ବାଲ୍ମୀକି ରାମାୟଣ ବହୁ ଶତାବ୍ଦୀ ଧରି ପୁରାଣ ଓ ଧର୍ମଗ୍ରନ୍ଥ ରୂପେ ଆକୁମାରୀ ହିମାଳୟ ଭାରତବର୍ଷରେ ପ୍ରଚଳିତ ହୋଇ ଆସିଅଛି । ଏହି ମହାଗ୍ରନ୍ଥ ପ୍ରଚଳିତ ହେବାର ସହସ୍ରାଧିକ ବର୍ଷ ପରେ ଓଡ଼ିଆରେ ବଳରାମ ଦାସଙ୍କ ରାମାୟଣ ରଚିତ ଓ ପ୍ରଚଳିତ ହୋଇଅଛି । ଆକାର ଓ ରାମଚରିତ ପ୍ରତି ଏକନିଷ୍ଠତା, ଉଭୟ ଦିଗରୁ, ଏହି ଦୁଇ ଗ୍ରନ୍ଥର ସାମ୍ୟ ରହିଅଛି । ଏଥିପାଇଁ ଏକଦା ଓଡ଼ିଆ ଗ୍ରନ୍ଥକୁ ସଂସ୍କୃତର ଅନୁବାଦ ବୋଲି ମନେ କରାଯାଉଥିଲା । ତେଣୁ ଉଭୟର ତୁଳନାତ୍ମକ ବିଚାର ଆବଶ୍ୟକ ।

ବାଲ୍ମୀକି ଓ ବଳରାମ ଦାସଙ୍କ ରାମାୟଣର କୌଣସି ପ୍ରକାର ତୁଳନାତ୍ମକ ବିଚାର କରିବାକୁ ଯିବା ପୂର୍ବରୁ ଏକଥା ମନେ ରଖିବା ଉଚିତ —ଏହି ଦୁଇ ଗ୍ରନ୍ଥ ଦୁଇଟି ସ୍ୱତନ୍ତ୍ର ଯୁଗରେ ରଚିତ ହୋଇଅଛି । ଯେ କୌଣସି ମହାକାବ୍ୟ ବା ପୁରାଣ ସମୟର ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ହୋଇ

ପାରେ ନାହିଁ । ବାଲ୍ମୀକି ରାମାୟଣର ରଚନା ଭାରତବର୍ଷରେ ପୌରାଣିକ ଯୁଗର ଆରମ୍ଭ କାଳରେ,କିନ୍ତୁ ବଳରାମ ଦାସଙ୍କ ରଚନା ଏହି ଯୁଗର ଶେଷ ପର୍ଯ୍ୟାୟରେ ହୋଇଥିଲା । ଏହା ମଧ୍ୟରେ ସହସ୍ରାଧିକ ବର୍ଷର ବ୍ୟବଧାନ ବିଦ୍ୟମାନ । ଏହି ସମୟ ଭିତରେ ବହୁ ପୁରାଣ, ଧର୍ମଗ୍ରନ୍ଥ ଓ ସାହିତ୍ୟ ସୃଷ୍ଟି ହୋଇଅଛି । ଧର୍ମ, ସମାଜ ଓ ତା'ର ମାନସିକ ଗଠନକୁ ନାନା ପ୍ରକାରେ ରୂପାନ୍ତରିତ କରିଅଛି । ଏହି ପରିବର୍ତ୍ତନର ସ୍ୱାକ୍ଷର ବଳରାମ ଦାସଙ୍କ କୃତିରେ ସ୍ପଷ୍ଟ ।

## ଉଭୟର ପାର୍ଥକ୍ୟ—

ପୌରାଣିକ ପ୍ରଭାବହିଁ ଦାଣ୍ଡି ରାମାୟଣର ବାଲ୍ମୀକି ରାମାୟଣଠାରୁ ପାର୍ଥକ୍ୟର ଏକ ପ୍ରଧାନ କାରଣ । ଅନେକ ସମୟରେ ମୂଳ କଥାବସ୍ତୁ ସହିତ ବହୁ ପୌରାଣିକ ଆଖ୍ୟାନମାନ ବଳରାମ ଦାସ ଯୋଗ କରିଅଛନ୍ତି । ପ୍ରଥମେ ଗ୍ରନ୍ଥାରମ୍ଭରେ ଈଶସ୍ତୁତି ଭାରତୀୟ କାବ୍ୟ ଓ ପୁରାଣରେ ଏକ ସିଦ୍ଧ ପରମ୍ପରା ହୋଇ ଯାଇଥିଲା । ତେଣୁ ଦାଣ୍ଡି ରାମାୟଣରେ ପ୍ରତ୍ୟେକ କାଣ୍ଡ-ଗୁଡ଼ିକର ଆରମ୍ଭରେ ଈଶସ୍ତୁତି ଦେଖିବାକୁ ମିଳେ । ରାମାୟଣର ପାତ୍ର-ଗୁଡ଼ିକ ପୁରାଣମାନଙ୍କରେ କୌଣସି ନା କୌଣସି ଦେବଦେବୀଙ୍କ ଅବତାର ରୂପେ ଗୃହୀତ ହୋଇଥିଲେ । ଏହା ବ୍ୟତୀତ ଏ ଯୁଗରେ ଭକ୍ତିଧର୍ମର ଖୁବ୍ ପ୍ରାବଲ୍ୟ ଦେଖା ଦେଇଥିଲା । ଏଥିଲାଗି ବିଭିନ୍ନ ଦେବଦେବୀଙ୍କୁ ଓ ରାମାୟଣର ପାତ୍ରମାନଙ୍କୁ ନାନା ପ୍ରସଙ୍ଗରେ ଯତ୍ରତତ୍ର ବଳରାମ ଦାସ ପ୍ରାର୍ଥନା କରିଅଛନ୍ତି । ବହୁ ସଂସ୍କୃତ ପୁରାଣରେ ଶିବ ବକ୍ତା ଓ ପାର୍ବତୀ ଦେବୀ ଶ୍ରୋତା ରୂପେ ବର୍ଣ୍ଣିତ । ଓଡ଼ିଆରେ ସାରଳା ଦାସ ତାଙ୍କର ବିଲଙ୍କା ରାମାୟଣରେ ପାର୍ବତୀଙ୍କର ଶିବଙ୍କୁ ପ୍ରଶ୍ନ ଓ ଶିବଙ୍କର ଉତ୍ତର ଛଳରେ ଗ୍ରନ୍ଥାରମ୍ଭ କରି-ଅଛନ୍ତି । ବହୁ ଅର୍ବାଚୀନ ରାମାୟଣରେ ଏ ଶୈଳୀ ଗୃହୀତ । ଶିବ ଦକ୍ଷଯଜ୍ଞ ନଷ୍ଟ କରିବାରୁ ଦେବତାମାନେ ହବିର୍ଭାଗ ପାଇଲେ ନାହିଁ । ଶିବଙ୍କୁ ପାପ ଲାଗିଲା । ସେ ବ୍ରହ୍ମାଙ୍କ ଉପଦେଶରେ ରାମତାରକ ମନ୍ତ୍ର ଜପ କରି ସୁସ୍ଥ ଶରୀର ଲାଭ କଲେ । ଏହାପରେ ପାର୍ବତୀଙ୍କ କୌତୂହଳ ମୋଚନ ପାଇଁ ରାମଚରିତ ବର୍ଣ୍ଣନା କରିଥିଲେ । ପଞ୍ଚମ ସର୍ଗର ଅଯୋଧ୍ୟା ବର୍ଣ୍ଣନାଠାରୁ ପ୍ରଚଳିତ ବାଲ୍ମୀକି ରାମାୟଣ ସହିତ ଦାଣ୍ଡି ରାମାୟଣର ସାମ୍ୟ ଦେଖାଯାଏ । ଏହା ପୂର୍ବରୁ ରାମ ଅବତାର ଗ୍ରହଣ କରିବାର ଯେଉଁ ବିସ୍ତୃତ କାରଣ ଦାଣ୍ଡି-

ରାମାୟଣରେ ଦିଆ ଯାଇଅଛି, ବାଲ୍ମୀକି ରାମାୟଣରେ ତାହା ନାହିଁ । ଦାଣ୍ଡି-ରାମାୟଣରେ ବର୍ଣ୍ଣିତ ହୋଇଅଛି, ରାବଣର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ଦେବତାଗଣ ବ୍ରହ୍ମାଙ୍କ ସହିତରେ ବିଷ୍ଣୁଙ୍କ ପ୍ରାର୍ଥନା କରିବାରୁ ସେ ରାମଚନ୍ଦ୍ର ରୂପରେ ଜନ୍ମ ହୋଇ ରାକ୍ଷସ ନିଧନ ପାଇଁ ସ୍ୱୀକୃତ ହୋଇଥିଲେ । ଦେବମାତା ଅଦିତିଙ୍କୁ କୌଶଲ୍ୟା ରୂପରେ ଜନ୍ମ ହୋଇ ରାମଚନ୍ଦ୍ରଙ୍କର ଜନନୀ ହେବାକୁ ବ୍ରହ୍ମା ଆଦେଶ କରିଥିଲେ । ସଂସ୍କୃତ ରାମାୟଣରେ ନାରଦଙ୍କୁ ଆଦର୍ଶ ରାଜା, ସତ୍ୟବାକ୍, ଦୃଢ଼ବ୍ରତାଚାରୀ ପୁରୁଷ ବିଷୟରେ ବାଲ୍ମୀକିଙ୍କ ପ୍ରଶ୍ନ ଓ ନାରଦଙ୍କର ସଂକ୍ଷେପରେ ରାମଚରିତ ବର୍ଣ୍ଣନା ବା ବ୍ରହ୍ମାଙ୍କର ବାଲ୍ମୀକିଙ୍କୁ ରାମାୟଣ ରଚନା ଲାଗି ଅନୁରୋଧ ଆଦି ପ୍ରସଙ୍ଗମାନ ଦାଣ୍ଡି ରାମାୟଣରେ ନାହିଁ ।

## ଆଦିକାଣ୍ଡ—

ଆଦିକାଣ୍ଡରେ ବାଲ୍ମୀକି ଓ ବଳରାମ ଦାସଙ୍କ ରାମାୟଣରେ ବହୁ ପାର୍ଥକ୍ୟ ମଧ୍ୟରେ ଏଇ କେତୋଟି ଉଲ୍ଲେଖ ଯୋଗ୍ୟ । ୧—ଅଯୋଧ୍ୟା ବର୍ଣ୍ଣନା—ବାଲ୍ମୀକିଙ୍କ ଅଯୋଧ୍ୟା ସୌଧମୟୀ । କିନ୍ତୁ ବଳରାମଙ୍କ ଅଯୋଧ୍ୟା କୁଟୀର-ମଣ୍ଡିତା ପଲ୍ଲୀ । ତାର ପୁର ସବୁ ତେଜପତ୍ରରେ ଛାଉଣି । ଏହା ପଲ୍ଲୀ ଉପରେ ସମୃଦ୍ଧିର କଳ୍ପନାମାତ୍ର । ରାଜା ଓ ସାମନ୍ତମାନଙ୍କର ପୁର-ସବୁର ସ୍ୱତନ୍ତ୍ର ବର୍ଣ୍ଣନା ସେ ଯୁଗର ସାମାଜିକ ଇତିହାସ ଉପରେ ଆଲୋକପାତ କରିଥାଏ । ୨—କାମମୋହିନୀ ଜରତା ପ୍ରସଙ୍ଗ—ସଂସ୍କୃତ ରାମାୟଣରେ କେବଳ ଜଣେ ବେଶ୍ୟା ଯାଇ ଋଷ୍ୟଶୃଙ୍ଗଙ୍କୁ ଭୁଲେଇ ନେଇ ଆସିଥିବା କଥା କୁହା ଯାଇଅଛି । କିନ୍ତୁ ଓଡ଼ିଆ ରାମାୟଣରେ ଜରତାର ନେତୃତ୍ୱରେ କାମମୋହିନୀ ସମେତ ବାର ଜଣ ବେଶ୍ୟା ଉପବନ ତୁଲ୍ୟ ଗୋଟିଏ ନୌକାରେ ବିଭାଣ୍ଡକଙ୍କ ଆଶ୍ରମକୁ ଯାଇ ଋଷ୍ୟଶୃଙ୍ଗଙ୍କୁ ଭୁଲେଇ ନେଇ ଆସିବା କଥା ବର୍ଣ୍ଣନା କରା ଯାଇଅଛି । ଅଗ୍ନିପୁରାଣର ନାଟର ଖଣ୍ଡ ଅବଲମ୍ବନରେ ଦଶରଥଙ୍କର ଶାନ୍ତାନାମକ ଏକ କନ୍ୟା ସହ ଋଷ୍ୟଶୃଙ୍ଗଙ୍କ ବିବାହ କଥା ବଳରାମ ଦାସ ବର୍ଣ୍ଣନ କରିଅଛନ୍ତି । ଏହା ବ୍ୟତୀତ ବେଶ୍ୟା-ମାନଙ୍କର ନୌକାଯାତ୍ରା, ନଦୀସହିତ ନଦୀତୀରବର୍ତ୍ତୀ ଅରଣ୍ୟ, ପଶୁ ପକ୍ଷୀ-ମାନଙ୍କ ବର୍ଣ୍ଣନା, ବାରବନିତା ଓ ଋଷ୍ୟଶୃଙ୍ଗଙ୍କ କଥୋପକଥନ ଆଦି ବଳରାମ ଦାସଙ୍କର ନିଜସ୍ୱ ସୃଷ୍ଟି । ୩—ବିଶ୍ୱାମିତ୍ରଙ୍କର ଅଯୋଧ୍ୟା ଆଗମନ ଓ

ଦଶରଥଙ୍କ କୁଶଳ ପ୍ରଶ୍ନ ପ୍ରସଙ୍ଗରେ ବଳରାମ ଦାସ ସ୍ୱତନ୍ତ୍ର ଭାବରେ ସେ ସମୟର ଗଡ଼ରକ୍ଷା, ରାଜାର କର୍ତ୍ତବ୍ୟ ଓ ରାଜନୈତିକ ପରିସ୍ଥିତି ଆଦିର ଇଙ୍ଗିତ ଦେଇଅଛନ୍ତି । ୪—ଗଙ୍ଗାସାଗର ସଙ୍ଗମ ପ୍ରସଙ୍ଗରେ ଓଡ଼ିଆ ରାମାୟଣରେ ବହୁ ତୀର୍ଥ ମାହାତ୍ମ୍ୟ ଓ ତାର ଅନୁସଙ୍ଗ ରୂପେ ଶୁଣ୍ଢିଆଣୀ ଓ ବାଳବ୍ରହ୍ମଗୃହୀ ଆଖ୍ୟାନ, ସୁରେଶ୍ୱର ମହାଦେବଙ୍କ ଜନ୍ମକଥା ଆଦି ସନ୍ନିବେଶିତ କରାଯାଇଅଛି । ୫—ହରିଶ୍ଚନ୍ଦ୍ର ଉପାଖ୍ୟାନ ଦାଣ୍ଡି ରାମାୟଣରେ ଦିଆଯାଇଅଛି । ଏହା ସଂସ୍କୃତ ରାମାୟଣରେ ନାହିଁ । ବଙ୍ଗଳା କୃତ୍ତିବାସ ରାମାୟଣରେ ଅନୁରୂପ ଉପାଖ୍ୟାନ ଦେଖିବାକୁ ମିଳେ । ୬—ବିଷ୍ଣୁଙ୍କୁ ସୀତାଙ୍କର ସ୍ୱାମୀରୂପେ ବାଛିବା ଲାଗି ବ୍ରହ୍ମା ଜନକଙ୍କୁ ଶିବଧନୁ ଦେଇଥିଲେ ବୋଲି ବଳରାମ ଦାସ ଲେଖିଛନ୍ତି । ଅନୁରୂପ କାହାଣୀ ପଦ୍ମପୁରାଣ ପାତାଳ ଖଣ୍ଡରେ ମିଳେ, ବାଲ୍ମୀକି ରାମାୟଣରେ ମିଳେ ନାହିଁ ।

## ଅଯୋଧ୍ୟାକାଣ୍ଡ—

ରାମଚନ୍ଦ୍ରଙ୍କ ବନବାସ, ଚିତ୍ରକୂଟ ଯାତ୍ରା, ଦଶରଥଙ୍କ ମୃତ୍ୟୁ, ଭରତର ବନବାସରୁ ରାମଚନ୍ଦ୍ରଙ୍କୁ ପୁଣି ଫେରାଇ ଆଣିବାକୁ ଉଦ୍‌ଯୋଗ ଓ ବିଫଳ ହୋଇ ପାଦୁକା ଗ୍ରହଣ, ରାମଚନ୍ଦ୍ରଙ୍କର ଚିତ୍ରକୂଟ ତ୍ୟାଗ ଆଦି ମୂଳ ରାମାୟଣରେ ଅଯୋଧ୍ୟାକାଣ୍ଡର ବିଷୟବସ୍ତୁ । ଦାଣ୍ଡି ରାମାୟଣର ଆରମ୍ଭରେ ରାମଲକ୍ଷ୍ମଣଙ୍କର ମୃଗୟା ଓ ଗୁହକ ଶବର ସହ ମିତ୍ରତା ବିଷୟ ବର୍ଣ୍ଣିତ ହୋଇଅଛି । ରାମଚନ୍ଦ୍ରଙ୍କର ଚିତ୍ରକୂଟ ପ୍ରସ୍ଥାନ କଥା ଆରଣ୍ୟକ କାଣ୍ଡରେ ଦିଆ ଯାଇଅଛି ; ବିଷୟବସ୍ତୁ ସଂସ୍ଥାନର ଏଇ ସାମାନ୍ୟ ପାର୍ଥକ୍ୟ ବ୍ୟତୀତ ଆନୁସଙ୍ଗିକ ବହୁ ସ୍ୱାତନ୍ତ୍ର୍ୟ ଦାଣ୍ଡି ରାମାୟଣର ବିଶେଷତ୍ୱ । ଗୁହକର ଆତିଥ୍ୟ, ଶବରମାନଙ୍କର ବର୍ଣ୍ଣନାରେ ବଳରାମ ଦାସଙ୍କର କଳ୍ପନା ଓ କବିତ୍ୱ ସମଧିକ ସ୍ପଷ୍ଟ ହୋଇଛି । ଏହା ବ୍ୟତୀତ ଚିତ୍ରକୂଟବନ, ସମାଜ ଚିତ୍ର ଓ ରାମସୀତାଙ୍କର ବନ ବିହାରରେ ମଧୁରସ ପରିବେଷଣରେ ଓଡ଼ିଆ ରାମାୟଣର ସ୍ପଷ୍ଟ ପାର୍ଥକ୍ୟ ଦେଖାଯାଏ । ମନ୍ଥରାର ପୂର୍ବଜନ୍ମ ବିଷୟରେ ମୂଳ ରାମାୟଣରେ କୌଣସି ସୂଚନା ନାହିଁ । ଦେବକାର୍ଯ୍ୟ ସାଧନ ପାଇଁ କୌଣସି ସ୍ୱର୍ଗ ଅପ୍‌ସରା ମନ୍ଥରା ରୂପେ ମର୍ତ୍ତ୍ୟରେ ଜନ୍ମ ହୋଇଥିବା କଥା ପଦ୍ମପୁରାଣ ପାତାଳଖଣ୍ଡରେ କୁହାଯାଇଅଛି । ବ୍ରହ୍ମାଙ୍କ ଆଦେଶରେ ଗୋମାତା ସୁରଭି ଦେବକାର୍ଯ୍ୟ ପାଇଁ ମନ୍ଥରା ରୂପେ ଜନ୍ମ ହୋଇଥିବା କଥା ବଳରାମ ଦାସ ଲେଖିଅଛନ୍ତି ।

**ଆରଣ୍ୟକକାଣ୍ଡ—**

ରାମ ଲକ୍ଷ୍ମଣ ଓ ସୀତାଙ୍କର ଦଣ୍ଡକାରଣ୍ୟ ପ୍ରବେଶ, ବିରାଧ ବଧ, ସୂର୍ପଣଖାର ବିରୂପୀକରଣ, ଖର ଦୂଷଣ ବଧ, ସୀତାହରଣ, ସୀତାଙ୍କ ଅନୁସନ୍ଧାନ ଓ ରାମ ଲକ୍ଷ୍ମଣଙ୍କର ଶୋକ ଆରଣ୍ୟକ କାଣ୍ଡର ପ୍ରଧାନ ବିଷୟବସ୍ତୁ । ଦାଣ୍ଡି ରାମାୟଣରେ ଆରଣ୍ୟକ କାଣ୍ଡ ରାମ ଲକ୍ଷ୍ମଣଙ୍କ ଶବରକୂଟ ତ୍ୟାଗଠାରୁ ଆରମ୍ଭ ହୋଇଅଛି । ଗୟା ମାହାତ୍ମ୍ୟ, ଗୟାରେ ଶ୍ରୀରାମଙ୍କର ପିଣ୍ଡଦାନ, ଫଲ୍‌ଗୁ ନଦୀକୁ ଅଭିଶାପ, ତୀର୍ଥରେ ବ୍ରାହ୍ମଣମାନଙ୍କର କାଙ୍ଗାଳ ଓ ସେମାନଙ୍କୁ ରାମଚନ୍ଦ୍ରଙ୍କର ଅଭିଶାପ, ଚନ୍ଦ୍ରଭାଗା ତୀର୍ଥ ଓ ଏକାମ୍ର ପ୍ରସଙ୍ଗ, ଗୋପାଳମାନଙ୍କୁ ଲକ୍ଷ୍ମଣଙ୍କର ଶାପ ଓ ରାମଚନ୍ଦ୍ରଙ୍କର ବରଦାନ ଆଦିରେ ବଳରାମ ଦାସଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଅଶୋକବନରେ ବନ୍ଦିନୀ ସୀତାଙ୍କୁ ଅଗ୍ନି ଆଦି ଦେବତାମାନେ ଆସି ରକ୍ଷା କରିଥିବା କଥା କେତେକ ଅର୍ବାଚୀନ ରାମାୟଣରେ ଦେଖାଯାଏ । ଦେବତାମାନଙ୍କ ପକ୍ଷରୁ ଇନ୍ଦ୍ର ଆସି ସୀତାଙ୍କୁ ଅମୃତ ଦାନ କରିଥିବା କଥା ବଳରାମ ଦାସ ଲେଖିଛନ୍ତି । ଶବରୀ ପ୍ରସଙ୍ଗରେ ଶବରୀର ଦନ୍ତମୁଦ୍ରା ଥିବା ପାଚିଲା ଫଳମାନ ଖାଇ ରାମଚନ୍ଦ୍ର ସନ୍ତୁଷ୍ଟ ହୋଇଥିବା ଓ ଦନ୍ତମୁଦ୍ରା ନ ଥିବା ସୁନ୍ଦର ଫଳକୁ ଗ୍ରହଣ ନ କରି ଥିବା କଥା ବଳରାମ ଦାସ ଯେପରି ବର୍ଣ୍ଣନା କରିଛନ୍ତି, ସେଥିରେ ଶବରୀର ରାମଭକ୍ତି ଓ ରାମଚନ୍ଦ୍ରଙ୍କର ଭକ୍ତ-ପ୍ରାଣତା ସୁନ୍ଦର ଭାବରେ ଫୁଟିଛି । ବିରହୀ ରାମଚନ୍ଦ୍ରଙ୍କୁ ଉତ୍ତର ନ ଦେଇ ଉପହାସ କରିଥିବାରୁ ସେ ଚକ୍ରବାକ ଦମ୍ପତିକୁ ଅଭିଶାପ ଦେଇଥିଲେ । ଏ କଥା ବଳରାମ ଦାସ ଯେପରି ଭାବରେ ଉଲ୍ଲେଖ କରିଛନ୍ତି, ତାହା ସଂସ୍କୃତ ଆଲଙ୍କାରିକମାନଙ୍କ ଦ୍ୱାରା ଏକ କବି ପ୍ରସିଦ୍ଧି ରୂପେ ଗୃହୀତ । ଅନୁରୂପ କାହାଣୀ "ଅଗ୍ନିବେଶ" ରାମାୟଣରୁ ମିଳେ ।

ସୀତା ହରଣହିଁ ଆରଣ୍ୟକ କାଣ୍ଡର ପ୍ରଧାନ ବିଷୟ । ବାଲ୍ମୀକି ରାମାୟଣରେ ସୀତା ହରଣରେ ଯେଉଁ ଚିତ୍ର ଦିଆଯାଇଅଛି, ତାହା ଏକାନ୍ତ ବାସ୍ତବ । ଏଥିଲାଗି ଏଇ ଚିତ୍ର କେତେକ ପରିମାଣରେ ପାଠକ ମନରେ ଘୃଣା ଉଦ୍ରେକ କରାଏ ଓ ସୀତାଙ୍କ ଦେବୀତ୍ୱ ଭାବନାକୁ ଆହତ କରେ । କାମମୋହିତ ଦୁଷ୍ଟାତ୍ମା ରାବଣ ବାମ ହାତରେ ସୀତାଙ୍କ କେଶ ଓ ଦକ୍ଷିଣ ହାତରେ ତାଙ୍କର ଉରୁ ଧରି ବଳାତ୍କାରରେ ନିଜ ରଥରେ ବସାଇଥିବା

କଥା ଲୁହାପାଇଅଛୁ (୧) । ନୃସିଂହ ପୁରାଣ, ଗୁଣଭଦ୍ର କୃତ ଉତ୍ତର ପୁରାଣ ଆଦରେ ରାବଣ ସୀତାଙ୍କୁ ସ୍ପର୍ଶ ନ କରିଥିବା କଥା ଉଲ୍ଲିଖିତ ହୋଇଛି । କେତେକ ସ୍ଥଳରେ ରାବଣ ପ୍ରକୃତ ସୀତାଙ୍କୁ ହରଣ ନ କରି ମାୟା ସୀତା ହରଣ କରିଥିବାର ବର୍ଣ୍ଣିତ ହୋଇଛି (୨) । ଏହି ସ୍ଥଳରେ ବଳରାମ ଦାସଙ୍କ କବିଦୃଷ୍ଟି ଭକ୍ତି ଭାବନାକୁ ଜୟ କରିଅଛି । ସୀତାଙ୍କ କର ଧରି ବଳାତ୍କାରରେ ରାବଣ ତାଙ୍କୁ ରଥରେ ବସାଇଥିବା କଥା ବଳରାମ ଦାସ ବର୍ଣ୍ଣନା କରିଛନ୍ତି । ପୁଣି ଜଟାୟୁ ସହିତ ଯୁଦ୍ଧ ବେଳେ ସୀତା ରଥରୁ ଓହ୍ଲାଇ ବଣରେ ଲୁଚିବା, ରାବଣରେ ପଳାୟମାନା ସୀତାଙ୍କର ପାଦଚିହ୍ନ ଓ କ୍ରନ୍ଦନ ଧ୍ୱନି ଅନୁସରଣ କରି ସୀତାଙ୍କୁ ପାଇ ବଳାତ୍କାରରେ ଭୁଜ ଧରି ଆଣିବା ଆଦର ଚିତ୍ର ଯେପରି ଜୀବନ୍ତ ସେହିପରି ବାସ୍ତବ । ଏଠାରେ ପ୍ରତ୍ୟୁତ୍ପନ୍ନମତି ବୀରା ନାରୀ ରୂପେ ସୀତାଙ୍କ ଚରିତ୍ର ଅତି ମହନୀୟ ।

## କିଷ୍କିନ୍ଧ୍ୟା କାଣ୍ଡ—

ସୁଗ୍ରୀବଙ୍କ ସହିତ ଶ୍ରୀରାମଙ୍କର ମୈତ୍ରୀ, ବାଳିବଧ, ବାନରସେନା ସମାବେଶ ଓ ବାନରମାନଙ୍କର ସୀତାଙ୍କୁ ଅନୁସନ୍ଧାନ କିଷ୍କିନ୍ଧ୍ୟାକାଣ୍ଡର ବିଷୟବସ୍ତୁ । ମୂଳରେ ବାଲ୍ମୀକିଙ୍କ କଥାବସ୍ତୁକୁ ଅନୁସରଣ କରିଥିଲେ ବି ବଳରାମ ଦାସଙ୍କ ରାମାୟଣରେ ଏହି କେତୋଟି ପ୍ରସଙ୍ଗରେ ସ୍ୱାତନ୍ତ୍ର୍ୟ ଦେଖାଯାଏ—ମହୁରି ରାଜା ଓ ଲୀଳାବତୀ ହରଣ ପ୍ରସଙ୍ଗ, ଶ୍ରୀରାମଙ୍କସହ ବକପକ୍ଷୀର କଥୋପକଥନ ଓ ବକ ପଞ୍ଚକ, କୁକ୍କୁଟର ବରଲାଭ, ପର୍ବତ ଓ ବୃକ୍ଷମାନଙ୍କୁ ଅଭିଶାପ, ବାନର ସେନାଙ୍କର ସମାବେଶ ବର୍ଣ୍ଣନାରେ ବଣାଇ, ରଣାଇ ଓ ବାମଣ୍ଡା ନାମ କରଣର ପୌରାଣିକ ଆଖ୍ୟାନ ।

ଦାଣ୍ଡି ରାମାୟଣରେ ଯେଉଁ ବକପକ୍ଷୀ ପ୍ରସଙ୍ଗ ଦେଖିବାକୁ ମିଳେ ତାହା ଏକ ପ୍ରାଚୀନ କିମ୍ବଦନ୍ତୀମୂଳକ ବୋଲି ମନେ ହୁଏ । ବଳରାମ

---

(୧) ଅଭିଗମ୍ୟ ସୁଦୁଷ୍ଟାତ୍ମା ରାକ୍ଷସଃ କାମ ମୋହିତଃ,
ଜଗ୍ରାହ ରାବଣଃ ସୀତାଂ ବୁଧଃ ଖେ ରୋହିଣୀମିବ ॥ ୧୭
ବାମେନ ସୀତାଂ ପଦ୍ମାକ୍ଷୀଂ ମୂର୍ଦ୍ଧଜେଷୁ କରେଣ ସଃ,
ଊର୍ବୋସ୍ତୁ ଦକ୍ଷିଣେ ନୈବ ପରିଜଗ୍ରାହ ପାଣିନା । ୧୭

(୨) ରାମ କଥା, ଡା: ବୁଲ୍‌କେ—ପୃ: ୩୪୫-୪୭, ମାୟା ସୀତା ପ୍ରସଙ୍ଗ ।

ଦାସଙ୍କ ରାମାୟଣରେ ମିଳୁଥିବା ଏହି ଉପାଖ୍ୟାନଟିର କୌଣସି ସୂଚନା ସଂସ୍କୃତ ରାମାୟଣଗୁଡ଼ିକରେ ମିଳେ ନାହିଁ । ତାହାରୁ ମିଳୁଥିବା "ସେରା ରାମ-କଥା"ରେ ଏହାର ଅନୁରୂପ ଗୋଟିଏ କାହାଣୀ ମିଳେ । ରାମଙ୍କୁ ସୀତାଙ୍କ ସମ୍ବାଦ ଦେଇଥିବାରୁ ପୁରସ୍କାର ସ୍ୱରୂପ ଗୋଟିଏ ପକ୍ଷୀ ଲମ୍ବଗ୍ରୀବ ପାଇଥିଲା । ମୁଣ୍ଡାମାନଙ୍କର ଏକ କାହାଣୀରେ ବକପକ୍ଷୀର ଲମ୍ବଗ୍ରୀବ ହେବାର କାରଣ ସ୍ୱରୂପ କୁହାଯାଇଅଛି ଯେ, ବକପକ୍ଷୀ ଶ୍ରୀରାମଙ୍କୁ ଉପହାସ କରିଥିବାରୁ ଲକ୍ଷ୍ମଣ ତାର ବେକ ଟାଣି ଦେଇଥିଲେ ଓ ତାର ଗ୍ରୀବା ଲମ୍ବା ହୋଇଥିଲା (୧) । ଦାଣ୍ଡି ରାମାୟଣ କଥା ଅନୁସାରେ ବକପକ୍ଷୀ ଶ୍ରୀରାମଙ୍କୁ ସୀତାଙ୍କ ସମ୍ବାଦ ଦେଇଥିଲା ଓ ତାର ପର ସୀତାଙ୍କ ଲୋତକ ପଡ଼ି ଧଳା ହୋଇଯାଇଥିବା କଥା କହିଥିଲା । ପୁରସ୍କାର ସ୍ୱରୂପ ରାମଚନ୍ଦ୍ର ତାକୁ ବର ଦେଇ କହିଥିଲେ—ବକ ବସିବାଠାରେ ଆହାର ପାଇବ । ତାର ଘରଣୀ ଚତୁର୍ମାସ୍ୟାରେ ତା' ପାଇଁ ଆହାର ଆଣି ଦେବ । କାର୍ତ୍ତିକ ଦଶମୀଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ସମସ୍ତେ ବକପଞ୍ଚକ ପାଳନ କରି ଆମିଷ ଆହାର କରିବେ ନାହିଁ ବୋଲି ମଧ୍ୟ ନିର୍ଦ୍ଦେଶ ଦେଇଥିଲେ (୨) ।

ହନୁମାନର ସମୁଦ୍ର ଲଙ୍ଘନ ପାଇଁ ଉଦ୍‌ଯୋଗ ଓ ତାର ଶକ୍ତି ବର୍ଣ୍ଣନା ମୂଳ ରାମାୟଣର କିଷ୍କିନ୍ଧ୍ୟାକାଣ୍ଡରେ କରାଯାଇଅଛି । କିନ୍ତୁ ବଳରାମ ଦାସ ଏହାକୁ ସୁନ୍ଦରାକାଣ୍ଡରେ ସଂସ୍ଥାପିତ କରିଅଛନ୍ତି ।

## ସୁନ୍ଦରାକାଣ୍ଡ—

କଥାବସ୍ତୁର ପରିବେଷଣ ଦୃଷ୍ଟିରୁ ବଳରାମ ଦାସଙ୍କ ରାମାୟଣର ସୁନ୍ଦରାକାଣ୍ଡ ବାଲ୍ମୀକି ରାମାୟଣରେ ଅଧିକ ନିକଟବର୍ତ୍ତୀ । ହନୁମାନର ଲଙ୍କା ପ୍ରବେଶ, ରାବଣ ସୀତା ସମ୍ବାଦ, ଲଙ୍କାରେ ହନୁମାନର ସୀତା ଅନୁସନ୍ଧାନ ଓ ସୀତାଙ୍କ ସହ କଥୋପକଥନ, ଲଙ୍କା ଦହନ, ଲଙ୍କାରୁ ପ୍ରତ୍ୟାବର୍ତ୍ତନ ସୁନ୍ଦରାକାଣ୍ଡର ମୁଖ୍ୟ ବିଷୟବସ୍ତୁ । ଓଡ଼ିଆ ରାମାୟଣରେ ଯେଉଁ କେତେକ ଆନୁଷଙ୍ଗିକ ପାର୍ଥକ୍ୟ ଦେଖାଯାଏ, ସେଥିମଧ୍ୟରୁ ଏହି କେତୋଟି ବିଷୟ ଉଲ୍ଲେଖଯୋଗ୍ୟ ।

---

(୧) ରାମକଥା, ପୃ: ୯୫୬

(୨) କିଷ୍କିନ୍ଧ୍ୟାକାଣ୍ଡ, (ବଙ୍ଗ) ପୃ: ୫୦, ୫୧ ଦ୍ରଷ୍ଟବ୍ୟ ।

ବଳରାମ ଦାସ ହନୁମାନଙ୍କୁ ସର୍ବଶକ୍ତିମାନ ଓ ସବୁ ଦେବତାଙ୍କର ଶକ୍ତିଧର ରୂପେ ବର୍ଣ୍ଣନା କରିଅଛନ୍ତି (୧) । ସଂସ୍କୃତ ରାମାୟଣରେ ହନୁମାନ ଲଙ୍କା ପ୍ରବେଶ କରିବାବେଳେ ଅପଣା ଦେହକୁ ସଙ୍କୁଚିତ କରି ବିଡ଼ାଳ ଆକୃତିର ମର୍କଟ ରୂପ ଧାରଣ କରିଥିବା କଥା କୁହାଯାଇଅଛି (୨) । ପରବର୍ତ୍ତୀ କାଳରେ ପୁରାଣମାନଙ୍କରେ ହନୁମାନ ବିରାଡ଼ି ରୂପରେ ଲଙ୍କା ପ୍ରବେଶ କରିଥିବା କଥା ଉଲ୍ଲିଖିତ ହୋଇଅଛି (୩) । ଦାଣ୍ଡି ରାମାୟଣରେ ହନୁମାନ କେଉଁ ରୂପ ଧରି ପ୍ରବେଶ କଲେ, ତାହା ଜଗୁଆଳୀ ପାଇକମାନେ ସ୍ଥିର ଭାବରେ ଜାଣି ପାରି ନାହାନ୍ତି । ପରେ ଲଙ୍କା ଭିତରେ ହନୁମାନ ବହୁରୂପୀ ଗୃହପାଳିତ ପଶୁ ରୂପରେ ବୁଲି ଥିବାର ବର୍ଣ୍ଣନା ଦିଆଯାଇଅଛି । ରାମଚନ୍ଦ୍ର ଓ ବିଭୀଷଣଙ୍କ କଥୋପକଥନରେ କଳିଯୁଗରେ ବହୁକୁଟୁମ୍ବୀ, ବ୍ରାହ୍ମଣ ଓ ରାଜାଙ୍କ ପ୍ରସଙ୍ଗରେ ବଳରାମ ଦାସ ଯାହା ବର୍ଣ୍ଣନା କରିଛନ୍ତି—ସେଥିରେ ସମସାମୟିକ ସମାଜର ବିଶିଷ୍ଟ ଚିତ୍ର ଅଭିବ୍ୟକ୍ତ ହୋଇଅଛି (୪) । ଏ ସବୁ ଦାସଙ୍କର ସ୍ୱକୀୟ ସୃଷ୍ଟି । ବଳରାମ ଦାସଙ୍କର ଆଉ ଏକ ସ୍ୱାତନ୍ତ୍ର୍ୟ ହେଉଛି, ଗୁଣ୍ଡୁଚି ମୂଷା ଉପାଖ୍ୟାନ (୫) । ଏହି ଉପାଖ୍ୟାନଟି ଓଡ଼ିଶାର ଲୋକମୁଖରେ ଖୁବ୍ ପ୍ରିୟ ଓ ପ୍ରଚଳିତ । ମୂଳ ସଂସ୍କୃତ ରାମାୟଣରେ ଏହି କାହାଣୀର ସନ୍ଧାନ ମିଳେ ନାହିଁ । ଦାଣ୍ଡି ରାମାୟଣର ଉପାଖ୍ୟାନ ଅନୁସାରେ—ସେତୁବନ୍ଧ ତିଆରି ହୋଇସାରିବା ପରେ ତାକୁ ବାଲି ପକାଇ ସମତୁଲ କରିବା ଦରକାର ହେଲା । ବାନର ସୈନ୍ୟମାନେ ବାଲି ପକାଇବାରେ ଲାଗିଲେ । ଏହି ସମୟରେ ଗୋଟିଏ ମୂଷା ସମୁଦ୍ର ଜଳରେ ଦେହକୁ ଓଦା କରି ପୁଣି ବାଲିରେ ଗଡ଼େଇ ହୋଇ ଆସି ବନ୍ଧରେ ଝାଡ଼ି ପକାଉଥାଏ । ରାମଚନ୍ଦ୍ର ଏହା ଦେଖି ମୂଷା ଉପରେ ଖୁସି ହେଲେ । ତା ପିଠିରେ ହାତ ମାରି ଆଉଁସି ଦେବାରେ ପାଞ୍ଚ ଆଙ୍ଗୁଳିର ଚିହ୍ନ ରହିଗଲା । ଦକ୍ଷିଣ ଭାରତରେ ଅନୁରୂପ ଗୋଟିଏ କାହାଣୀ ପ୍ରଚଳିତ ।

---

(୧) "ତେତିଶ କୋଟି ଦେବତା ଭୂତଯୋନିମାନ । ଏକତ୍ର ହୋଇ ହୋଇଲେ ପବନ ନନ୍ଦନ ।" ସୁନ୍ଦରକାଣ୍ଡ ।

(୨) ସୁନ୍ଦର—ବାଲ୍ମୀକି—୨ୟ ସର୍ଗ—୪୭ ଶ୍ଳୋକ ।

(୩) ବୃହଦ୍ଧର୍ମ ପୁରାଣ—ପୂର୍ବଖଣ୍ଡ । ଅ: ୨୦-୨ ।

(୪) ସୁନ୍ଦର । ପୃ: ୯୨ ।

(୫) ଏଜନ । ପୃ: ୧୯ ।

ପଞ୍ଜାବରେ ମଧ୍ୟ ଗୁଣ୍ଡୁଚି ମୂଷାକୁ ରାମଚନ୍ଦ୍ରଙ୍କ ଭକ୍ତ ବୋଲି ଲୋକେ ବିଶ୍ୱାସ କରନ୍ତି । ତାʼ ପିଠିରେ ଧଳା ଗାର ହେବାର କାରଣ ଉପର ଲିଖିତ ମତେ ନିର୍ଣ୍ଣୟ କରିଥାନ୍ତି (୧) । ସେତୁବନ୍ଧ ବାନ୍ଧି ସାର ଲଙ୍କା ଯାତ୍ରା କରିବ ପୂର୍ବରୁ ରାମେଶ୍ୱର ବୋଲି ରାମଚନ୍ଦ୍ର ଶିବଙ୍କ ପୂଜା କରିଥିବା କଥା ବଳରାମ ଦାସ ଲେଖିଅଛନ୍ତି । ଏହି ସ୍ଥଳରେ ରାମଚନ୍ଦ୍ର ଶିବଙ୍କୁ ପୂଜା କରିବା କଥା "ସ୍କନ୍ଦ ପୁରାଣ" ଓ ବଙ୍ଗଳା "କୃତ୍ତିବାସ ରାମାୟଣ" ଆଦିରେ ଦେଖିବାକୁ ମିଳେ ।

ଏହି ସବୁ କେତେକ ପ୍ରଧାନ ସ୍ୱାତନ୍ତ୍ର୍ୟ ବ୍ୟତୀତ ସାଧାରଣ ବର୍ଣ୍ଣନା ଆଦିରେ ବଳରାମ ଦାସଙ୍କ କୃତିରେ ନାନା ଭାବରେ ସ୍ୱାତନ୍ତ୍ର୍ୟ ଦେଖାଯାଏ । ରାମଙ୍କର ଲଙ୍କାକୁ ସୈନ୍ୟ ଚାଳନା ପ୍ରସଙ୍ଗ ବର୍ଣ୍ଣନାରେ କବି ତାଙ୍କର ସମସାମୟିକ ସମର-ବିଜ୍ଞାନର ଇଙ୍ଗିତ ଦେଇଛନ୍ତି । ବିଷୟ-ସଂସ୍ଥାନ ଦିଗରୁ ଦେଖିଲେ ହନୁର ଲଙ୍କାରୁ ଲେଉଟିବା ପରେ ବାଲ୍ମୀକରେ ସୁନ୍ଦରକାଣ୍ଡ ପରିସମାପ୍ତି ହୋଇଛି । କିନ୍ତୁ ବଳରାମ ଦାସ ରାମଚନ୍ଦ୍ରଙ୍କର ସୁବଳସୃଷ୍ଟ-ଯାନ ପର୍ଯ୍ୟନ୍ତ ସୁନ୍ଦର କାଣ୍ଡରେ ବର୍ଣ୍ଣନା କରିଛନ୍ତି । ଫଳରେ ବାଲ୍ମୀକି-ରାମାୟଣର ଯୁଦ୍ଧକାଣ୍ଡର ପ୍ରାୟ ବାଇଶ ଗୋଟି ସର୍ଗର ବିଷୟବସ୍ତୁ ବଳରାମ ଦାସଙ୍କ ସୁନ୍ଦରକାଣ୍ଡରେ ମିଳେ ।

## ଯୁଦ୍ଧକାଣ୍ଡ—

ବାଲ୍ମୀକି-ରାମାୟଣର ଯୁଦ୍ଧକାଣ୍ଡର କଥାବସ୍ତୁ ବଳରାମ ଦାସ କେଉଁଠି ବିଶେଷ ପରିବର୍ତ୍ତନ କରିନାହାନ୍ତି ବୋଲି ମନେ ହୁଏ ନାହିଁ । ଯେଉଁଠି ବା ଯାହା ପାର୍ଥକ୍ୟ ଦେଖିବାକୁ ମିଳେ ତାହା ମୂଳ ବିଷୟବସ୍ତୁର ସ୍ଥାନ ପରିବର୍ତ୍ତନ ନ ହେଲେ ପୁନରାବୃତ୍ତି ମାତ୍ର । ସାଧାରଣଭାବରେ କୌତୂହଳ ଉଦ୍ଦୀପକ କିନ୍ତୁ କେତୋଟି ପ୍ରସଙ୍ଗରେ ଦାଣ୍ଡିରାମାୟଣର ସ୍ୱାତନ୍ତ୍ର୍ୟ ଆନୁଷଙ୍ଗିକ ଭାବେ ଉଲ୍ଲେଖଯୋଗ୍ୟ ।

ରାବଣର ଦୁର୍ଗରକ୍ଷା ଓ ସମରଯାତ୍ରା ଆଦି ବର୍ଣ୍ଣନାରେ ବଳରାମ ଦାସ ସେ ଯୁଗର ସମର-ବିଜ୍ଞାନ ବିଷୟରେ ସ୍ପଷ୍ଟ ସୂଚନା ଦେଇଛନ୍ତି । ଛତ୍ର

(୧) The popular religion and Folk lore of Northern India—W. Crook. West minister—1896. Part II. page. 242.

ଓ ରାମତାଳ ଆଦିର ଜନ୍ମ ବିଷୟରେ ବଳରାମଦାସ ଯେଉଁ ପୌରାଣିକ ବ୍ୟାଖ୍ୟାମାନ ଦେଇଛନ୍ତି ତାହା କୌତୂହଳ-ଉଦ୍ଦୀପକ । କବିଙ୍କ ବ୍ୟାଖ୍ୟା ଅନୁସାରେ, ରାବଣର ନବଗ୍ରହଙ୍କ ରାମଙ୍କ ଶରରେ ଛିନ୍ନ ହୋଇ ପୃଥିବୀର ବିଭିନ୍ନ ସ୍ଥାନରେ ପଡ଼ି ଛତ୍ର ହୋଇଥିଲା । ରାମଙ୍କ ସୈନ୍ୟମାନଙ୍କର କୌଣସି ଯୁଦ୍ଧବାଦ୍ୟ ନ ଥିଲା । ଅସୁର ସୈନ୍ୟମାନେ ଢୋଲ ଦମା ଆଦି ନାନା ପ୍ରକାର ଯୁଦ୍ଧବାଦ୍ୟ ବଜାଇବାର ଦେଖି ରାମଚନ୍ଦ୍ର ତାଙ୍କର ଥାଟକୁ ରଣବାଦ୍ୟ ପାଇଁ ଆଦେଶ ଦେଇଥିଲେ । ସୁଗ୍ରୀବ ସେଇ ସମୟରେ ମହାରଣା (ବଢ଼େଇ) ଆଣି ରାମତାଳ ନାମକ ବାଦ୍ୟ ନିର୍ମାଣ କରାଇ-ଥିଲେ ।

ବଳରାମ ଦାସଙ୍କ କଥୋପକଥନରେ ସର୍ବଦା ସ୍ୱାତନ୍ତ୍ର୍ୟ ଅନୁଭୂତ ହୁଏ । ନିକଷା ଜାନକୀ, ରାବଣ ଅଙ୍ଗଦ, ହନୁ ଓ ଭରତଙ୍କର କଥୋପକଥନ -ଗୁଡ଼ିକ ଏଠାରେ ଉଲ୍ଲେଖଯୋଗ୍ୟ । ଗନ୍ଧମାର୍ଦ୍ଦନ ପର୍ବତ ନେଇ ଫେରୁଥିବା ସମୟରେ ହନୁର ଭରତ ସହିତ ଭେଟ ଓ କଥୋପକଥନର ଅନୁରୂପ ତୁଳନା ମହାନାଟକ ଆଦିରୁ ମିଳେ ।

ଏଇ କାଣ୍ଡରେ ବଳରାମ ଦାସ ଯେଉଁ ସନ୍ଥ ଷଣ୍ଡା ଉପାଖ୍ୟାନଟି ସନ୍ନିବେଶିତ କରିଅଛନ୍ତି—ତାହା ମୂଳ ରାମାୟଣରେ ମିଳେ ନାହିଁ । ସତୀତ୍ୱ ଓ ପାତିବ୍ରତ୍ୟର ପରାକାଷ୍ଠା ଏଇ ଉପାଖ୍ୟାନଟିରେ ପ୍ରଦର୍ଶିତ ହୋଇଅଛି । ଅନୁରୂପ କୁଷ୍ଠରୋଗୀ ବ୍ରାହ୍ମଣ ଓ ସତୀ ସ୍ତ୍ରୀ ପ୍ରସଙ୍ଗ ମାର୍କଣ୍ଡେୟ ପୁରାଣରେ ମିଳେ ।

ଯୁଦ୍ଧକାଣ୍ଡର ଶେଷାଂଶରେ ସୀତାଙ୍କ ଅଗ୍ନି ପରୀକ୍ଷଣ ଓ ଅଭିଷାରିକା ବେଶ ଆଦି ବର୍ଣ୍ଣନା ପ୍ରସଙ୍ଗରେ ବଳରାମ ଦାସ ଉତ୍କଳୀୟ ଖାଦ୍ୟପେୟ ଓ ଅଳଙ୍କାର ଆଦିର ବିଶଦ ବର୍ଣ୍ଣନା ଦେବାରେ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ଦେଖାଇଛନ୍ତି ।

ଉତ୍ତରା କାଣ୍ଡ—

ଆଦି ବାଲ୍ମୀକି ରାମାୟଣରେ ଉତ୍ତରକାଣ୍ଡ ନ ଥିଲା । ପ୍ରଚଳିତ ରାମାୟଣରେ ତାହା ଏକ ପ୍ରକ୍ଷିପ୍ତ ଅଂଶ ବୋଲି ମନେ କରାଯାଏ । ରାବଣ-ଚରିତ, ହନୁମାନ-ଚରିତ, ରାମଙ୍କ ଭୋଗ, ସୀତା-ବନବାସ, ରାମଚନ୍ଦ୍ରଙ୍କ ଅଶ୍ୱମେଧଯଜ୍ଞ, ଲକ୍ଷ୍ମଣଙ୍କର ବନବାସ ଓ ମୃତ୍ୟୁ, ରାମଚନ୍ଦ୍ରଙ୍କ ମହାପ୍ରସ୍ଥାନ ଆଦି ଉତ୍ତରକାଣ୍ଡର ମୁଖ୍ୟ ବିଷୟବସ୍ତୁ । ଏଇ କାଣ୍ଡରେ ଦାଣ୍ଡି ରାମାୟଣର ବିଷୟବସ୍ତୁ ପ୍ରଧାନତଃ ପ୍ରଚଳିତ ବାଲ୍ମୀକି ରାମାୟଣକୁ ଅନୁସରଣ କରିଥିଲେ ବି ଏଥିରେ କେତେକ ପାର୍ଥକ୍ୟ ଦେଖାଯାଏ ।

ବାଲ୍ମୀକି ରାମାୟଣରେ ଥିବା ନିମି ରାଜା, ମିତ୍ରାବରୁଣ ଓ ଉର୍ବଶୀ ଉପାଖ୍ୟାନ ବଶିଷ୍ଠ ଓ ନିମିଙ୍କ ପୁନର୍ଦେହପ୍ରାପ୍ତି, ଯଯାତି ଉପାଖ୍ୟାନ ( ବାଲ୍ମୀକି, ଉତ୍ତର-୫୫ରୁ ୫୯ ସର୍ଗ ) ଆଦିର କୌଣସି ଉଲ୍ଲେଖ ଦାଣ୍ଡି-ରାମାୟଣରେ ମିଳେ ନାହିଁ । ଅବଶ୍ୟ ମୂଳ କଥା ସହିତ ଏହି ଉପାଖ୍ୟାନ-ଗୁଡ଼ିକର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ।

ରାମଚନ୍ଦ୍ରଙ୍କ ସୀତା ପରିତ୍ୟାଗର ଏକମାତ୍ର କାରଣ ଲୋକାପବାଦ ବୋଲି ବାଲ୍ମୀକି ରାମାୟଣରେ ଲୁହାଯାଇଅଛି । ଏହା ପ୍ରାୟ ସର୍ବତ୍ର ଗୃହୀତ ହୋଇଅଛି । ଏହା ବ୍ୟତୀତ ସୀତାତ୍ୟାଗର ନାନା ପରୋକ୍ଷ କାରଣମାନ ପ୍ରଦର୍ଶିତ ହୋଇଥିବାର ଦେଖିବାକୁ ମିଳେ । ବାଲ୍ମୀକି ରାମାୟଣରେ ଏହିଭଳି ଏକ ପରୋକ୍ଷ କାରଣ ଦିଆଯାଇଅଛି । ସୀତା-ତ୍ୟାଗ ପରେ ଲକ୍ଷ୍ମଣଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ସୁମନ୍ତ୍ର ଦୁର୍ବାସା-ଦଶରଥ-ସମ୍ବାଦ ଉଲ୍ଲେଖ କରି କହୁଛି, ବିଷ୍ଣୁ ଭୃଗୁ-ପତ୍ନୀଙ୍କୁ ହତ୍ୟା କରିଥିବା ବେଳେ ଭୃଗୁ ତାଙ୍କୁ ଶାପ ଦେଇଥିଲେ ଯେ, ବିଷ୍ଣୁ ମନୁଷ୍ୟ-ରୂପେ ଅବତାର ଗ୍ରହଣ କରି ପତ୍ନୀ କଷ୍ଟ ଭୋଗ କରିବେ (୧) । ବଳରାମ ଦାସଙ୍କ ରାମାୟଣରେ ଆଉ ଏକ ପରୋକ୍ଷ କାରଣ ଦିଆଯାଇଅଛି । ସୀତାଙ୍କ ବନବାସ ପରେ ଭାଇମାନଙ୍କ ଆଗରେ ବନବାସ-କାହାଣୀ ଗଳ୍ପ କରିବା ସମୟରେ ରାମଚନ୍ଦ୍ର କହୁଛନ୍ତି ଯେ, ତାରାର ଅଭିଶାପ ହେତୁ ତାଙ୍କୁ ସୀତା-ବିୟୋଗ ସହ୍ୟ କରିବାକୁ ହେଉଅଛି । ସାରଳା ଦାସ ବିଲଙ୍କା ରାମାୟଣରେ ପ୍ରଥମେ ଏହି ତାରା-ଅଭିଶାପ-କଥା ଉଲ୍ଲେଖ କରିଅଛନ୍ତି (୨) ।

## ରାମଚରିତର ପରିସମାପ୍ତି—

ଆଦି ବାଲ୍ମୀକି ରାମାୟଣରେ ରାମଚରିତର ପରିସମାପ୍ତି ସୁଖାତ୍ମକ ହୋଇଥିଲା । ରାମଙ୍କ ଅଭିଷେକ ଓ ଐଶ୍ୱର୍ଯ୍ୟଶାଳୀ ରାଜ୍ୟର ବର୍ଣ୍ଣନା ପରେ ଏହାର ଶେଷ ହୋଇଥିଲା । ଗୁଣଭଦ୍ର-କୃତ ଉତ୍ତର ପୁରାଣରେ ମଧ୍ୟ ସୀତା-

(୧) ଭୃଗୁ ଅଭିଶାପ—ତସ୍ମାତ୍ତ୍ୱଂ ମାନୁଷେ ଲୋକେ ଭବିଷ୍ୟସି ଜନାର୍ଦ୍ଦନ,
ତତ୍ର ପତ୍ନୀ ବିୟୋଗଂ ତ୍ୱଂ ପ୍ରାପ୍ସ୍ୟସେ ବହୁବାର୍ଷିକଂ ।

(୨) ତାରା ଅଭିଶାପ ହେତୁ ସୀତାଙ୍କୁ ଛାଡ଼ିଲେ,
ସତୀର ବାକ୍ୟରୁ ଦେବ ପାଳନ କରିଲେ ।
—ବିଲଙ୍କା ରାମାୟଣ, ଉତ୍ତର ଖଣ୍ଡ, ପୃ: ୫ ।

ତ୍ୟାଗ ପ୍ରସଙ୍ଗ ଦେଖିବାକୁ ମିଳେ ନାହିଁ (୧) । ପ୍ରଚଳିତ ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡରେ ରାମଚରିତର ପରିସମାପ୍ତି ଦୁଃଖାତ୍ମକ ହୋଇ-ଅଛି । ସୀତାଙ୍କ ପାତାଳ-ପ୍ରବେଶ ପରେ ବିଳାପ କରି ରାମ ପୃଥିବୀଙ୍କୁ ସୀତା ଫେରାଇ ଦେବାଲାଗି ଅନୁରୋଧ କରିଅଛନ୍ତି । ସୀତା ଫେରାଇ ନ ଦେଲେ ପୃଥିବୀକୁ ପ୍ଲାବିତ କରି ଦେବାକୁ ଧମକ ଦେଇଛନ୍ତି । ଏହାପରେ ବ୍ରହ୍ମା ସ୍ୱର୍ଗରେ ପୁନର୍ମିଳନର ଆଶ୍ୱାସନା ଦେଇ ରାମଚନ୍ଦ୍ରଙ୍କୁ ସାନ୍ତ୍ୱନା ଦେଇଛନ୍ତି । ପରେ ଲକ୍ଷ୍ମଣଙ୍କର ମୃତ୍ୟୁ ଓ ରାମଚନ୍ଦ୍ରଙ୍କର ସ୍ୱର୍ଗଗମନର ବର୍ଣ୍ଣନା କରା ହୋଇଅଛି । ରଘୁବଂଶ, ଭାଗବତ ପୁରାଣ, ଅଧ୍ୟାତ୍ମ ରାମାୟଣ ଆଦି ଅଧିକାଂଶ ରାମଚରିତର ପରିସମାପ୍ତି ଏହାକୁ ଅନୁସରଣ କରିଅଛି ।

କେତେକ ଅର୍ବାଚୀନ ରାମଚରିତରେ ସୀତାଙ୍କ ଭୂମି-ପ୍ରବେଶ ପରେ କଥାର ପରିସମାପ୍ତି ସୁଖାତ୍ମକ କରିବା ଲାଗି ଉଦ୍ୟମ ହୋଇଅଛି । ଉତ୍ତର ରାମଚରିତରେ ଭବଭୂତି ପ୍ରଥମେ ଏଥିଲାଗି ଉଦ୍ୟମ କରିଥିବାର ଦେଖିବାକୁ ମିଳେ । ଭବଭୂତିଙ୍କ ଅନୁସାରେ ବାଲ୍ମୀକି ଗୋଟିଏ ନାଟକର ଅଭିନୟ ଦେଖିବା ଲାଗି ଅଯୋଧ୍ୟା ପୁରବାସୀଙ୍କୁ ଡାକିଛନ୍ତି । ଏହି ନାଟକ ଦେଖିବା ପରେ ସୀତାଙ୍କ ପୂର୍ବ ଜୀବନର ସବୁ କଥା ଜାଣିପାରି ସୀତାଙ୍କ ସତୀତ୍ୱ ବିଷୟରେ ସମସ୍ତଙ୍କର ବିଶ୍ୱାସ ହୋଇଛି । ଏହାପରେ ରାମଚନ୍ଦ୍ର ତାଙ୍କର ଦୁଇପୁତ୍ରଙ୍କ ସମେତ ସୀତାଙ୍କୁ ଘେନି ଅଯୋଧ୍ୟା ଫେରିଛନ୍ତି ।

ରାମାୟଣରେ ସୀତାଙ୍କ ବନବାସ ଘଟାଇବେ କି ନାହିଁ ଏ ବିଷୟରେ ବଳରାମ ଦାସ ଚିନ୍ତିତ ହୋଇଥିବା କଥା ଲେଖିଛନ୍ତି (୨) । କିନ୍ତୁ ଗ୍ରନ୍ଥର ପୂର୍ଣ୍ଣତା ଲାଗି ସେ ସୀତା-ବନବାସ ଘଟାଇ ଅଛନ୍ତି । ଏହି ପ୍ରସଙ୍ଗରେ ସୀତାଙ୍କ ପାତାଳ-ପ୍ରବେଶ ବର୍ଣ୍ଣନା କରିବାରେ ପ୍ରଚଳିତ ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡକୁ ଅନୁସରଣ କରିଛନ୍ତି । ସୀତାଙ୍କ ଶେଷ ବିଚ୍ଛେଦକୁ ବୋଧହୁଏ କବି ସମର୍ଥନ କରିପାରି ନ ଥିଲେ । ତେଣୁ ବାଲ୍ମୀକିରେ ସୀତାରାମଙ୍କର ସ୍ୱର୍ଗରେ ମିଳନ ହେବ ବୋଲି ବ୍ରହ୍ମା ରାମଚନ୍ଦ୍ରଙ୍କୁ ଯେଉଁ ସାନ୍ତ୍ୱନା ଦେଇଥିଲେ, ତାହାରି ଅବଲମ୍ବନରେ ସ୍ୱର୍ଗରେ ଲକ୍ଷ୍ମୀନାରାୟଣ ରୂପେ ରାମ ସୀତାଙ୍କ ମିଳନର ବିଶଦ ବର୍ଣ୍ଣନା ଦେଇ କବି ଗ୍ରନ୍ଥର ପରିସମାପ୍ତି ଘଟାଇ ଅଛନ୍ତି ।

(୧) ରାମକଥାକା ବିକାଶ, ରାମକଥା ପୃ: ୪୫୨ ।
(୨) ଦାଣ୍ଡି ରାମାୟଣ, ଉତ୍ତର (କବି) ପୃ: ୧୩୩ ।

## ଓଡ଼ିଆ ପାଠକଙ୍କ ପାଇଁ ଦାଣ୍ଡି ରାମାୟଣ—

ସର୍ବଶେଷରେ ସ୍ମରଣ ରଖିବାକୁ ହେବ, ଓଡ଼ିଆ ପାଠକଙ୍କ ଲାଗି ବଳରାମ ଦାସ ରାମାୟଣ ରଚନା କରି ଅଛନ୍ତି । ତାଙ୍କ କୃତିରେ ଓଡ଼ିଆ ଜନସାଧାରଣଙ୍କର ବିଶ୍ୱାସ ଓ ରୀତିନୀତିର ସ୍ପଷ୍ଟ ପ୍ରତିବିମ୍ବନ ହୋଇଅଛି । ଯେଉଁଠି ଅବସର ମିଳିଛି, ସେ ଓଡ଼ିଶାର ନଦନଦୀ, ତୀର୍ଥ ଓ ନଗର ଆଦିର ବର୍ଣ୍ଣନା କରିଅଛନ୍ତି; ରାବଣ ଓ ତାର ଭାଇମାନଙ୍କୁ ତପସ୍ୟା ଲାଗି ସାରା ଭାରତରେ ଏତେ ପୁଣ୍ୟପୀଠ ଥାଉଁ ଥାଉଁ ଓଡ଼ିଶାର ବିରଜାପୀଠକୁ ଘେନି ଆସିଛନ୍ତି । ରାମଚନ୍ଦ୍ରଙ୍କର ବାନର ସେନାମାନଙ୍କୁ ଓଡ଼ିଶାର ବନ କାନ୍ତାର ବୁଲେଇ ଅଛନ୍ତି । ସୀତାଙ୍କୁ ଓଡ଼ିଆଣୀ ଅଳଙ୍କାରରେ ସଜାଇ ଅଛନ୍ତି । ରାମଚନ୍ଦ୍ରଙ୍କ ପ୍ରାସାଦରେ ଓଡ଼ିଆ ଖାଦ୍ୟପେୟର ପ୍ରଚଳନ କରାଇଛନ୍ତି । ବିଷୟବସ୍ତୁ ପରିବେଷଣ ଦୃଷ୍ଟିରୁ ମଧ୍ୟ ବଳରାମ ଦାସ ସ୍ୱାତନ୍ତ୍ର୍ୟ ଦେଖାଇବାକୁ ଛାଡ଼ି ନାହାନ୍ତି । ଏହାକୁ ଲକ୍ଷ୍ୟ କରି ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ଯଥାର୍ଥ କହିଛନ୍ତି—"ମୂଳ ରାମାୟଣର ସାରକଥାର କଙ୍କାଳ ସହିତ ଦାସଙ୍କ ରାମାୟଣର ସାର କଥାର କିଛି ସାଦୃଶ୍ୟ ଥିବା ଛଡ଼ା ମୂଳ ଗ୍ରନ୍ଥର ଅନ୍ୟ କୌଣସି ବଳିଷ୍ଠ ପ୍ରକାଶ ଏଥିରେ ନାହିଁ । ବାଲ୍ମୀକି ରାମାୟଣ ଓ ବଳରାମ ଦାସଙ୍କ ରାମାୟଣ ଭିତରେ ଏତେ ପ୍ରଭେଦ ଥିବା ଯୋଗୁଁ ବଳରାମ ଦାସଙ୍କ ରାମାୟଣ ଏକ ସ୍ୱତନ୍ତ୍ର ଗ୍ରନ୍ଥ ବୋଲି କହିବା ସମୀଚୀନ" (୧)।

କହିବା ବାହୁଲ୍ୟ, ଏଇ ଭାବରେ ଦେଖିଲେ କଥା ଭାଗ ଦୃଷ୍ଟିରୁ ବଳରାମଙ୍କ ରାମାୟଣ ଯେତିକି ସ୍ୱାଧୀନ ଭାବବସ୍ତୁ ଦିଗରୁ ଏହାର ସ୍ୱାତନ୍ତ୍ର୍ୟ ତତୋଧିକ । ଏକାଧିକ କାରଣରୁ ଏ ସ୍ୱାତନ୍ତ୍ର୍ୟ ସ୍ୱାଭାବିକ । ପ୍ରଥମରୁ ଏଇ ଆଲୋଚନାରେ ସୂଚନା ଦିଆଯାଇଛି ଯେ, ବାଲ୍ମୀକି ଓ ବଳରାମ ଦୁଇ ଭିନ୍ନ ସମାଜରେ ବାସ କରୁଥିଲେ । କୌଣସି ସାହିତ୍ୟ, ଧର୍ମ ବା ସଂସ୍କୃତି ସମାଜ ନିରପେକ୍ଷ ହୋଇପାରେ ନାହିଁ; ଯୁଗ-ପ୍ରଭାବ ଏଡ଼ି ପାରେ ନାହିଁ । ପଞ୍ଚଦଶ ଓ ଷୋଡ଼ଶ ଶତକରେ ଓଡ଼ିଆ ସମାଜର ଆଶା ଆକାଂକ୍ଷା, ଧର୍ମ ଧାରଣା ଓ ରୀତି ନୀତିର ପ୍ରତିବିମ୍ବନ ଦାଣ୍ଡିରାମାୟଣରେ ସ୍ପଷ୍ଟ । ବାଲ୍ମୀକି ଯଥାସମ୍ଭବ ସଂସ୍କୃତ ଓ ଜଡ଼ିତ ସମାଜ ପାଇଁ

(୧) ଓଡ଼ିଆ ସାହିତ୍ୟର ପରିଚୟ, (୨ୟ ସଂସ୍କରଣ, ୧ମ ଭାଗ) ପୃ: ୨୩୨ ।

ପ୍ରାକୃତ କଥାରୁ ବିଷୟବସ୍ତୁ ଆହରଣ କରି ସଂସ୍କୃତ ଭଳି ଏକ ବିଭବଶାଳୀ ଭାଷାରେ ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ବଳରାମଙ୍କର ପନ୍ଥା ଥିଲା ଠିକ ଓଲଟା । ସେ ସଂସ୍କୃତ ପୁରାଣ ପରମ୍ପରାରୁ ବିଷୟ ଆହରଣ କରି, ପ୍ରାକୃତ ଭାଷାରେ ଅଗଣିତ ସାଧାରଣଙ୍କ ପାଇଁ ଗ୍ରନ୍ଥ ରଚନା କରିଥିଲେ । ଏଣୁ ଉଭୟ ଗ୍ରନ୍ଥର ତୁଳନା କେତେକ ପରିମାଣରେ ଅବାନ୍ତର ଓ ବହୁ ପରିମାଣରେ ଅସମ୍ଭବ । ଦାଣ୍ଡି ରାମାୟଣ ରଚନା ଦ୍ୱାରା ପ୍ରାଚୀନ ଭାରତର ମହାନ୍ ଭାବ ପରମ୍ପରା ଅବଲମ୍ବନରେ ଓଡ଼ିଶାର ପ୍ରାକୃତ ଜନସାଧାରଣଙ୍କର ବିଶ୍ୱାସ ଓ ଆଦର୍ଶକୁ ମୂର୍ତ୍ତି, ବିଶ୍ଳେଷିତ ଓ ସୁସମ୍ବଦ୍ଧ କରିବାର ପ୍ରୟାସ ସହିତ ଶିଶୁ ଓଡ଼ିଆ ଭାଷାର ପ୍ରକାଶ-ଶକ୍ତିକୁ ବଳିଷ୍ଠ ଓ ପ୍ରସାରଣଶୀଳ କରିବାର ଉଦ୍ଦେଶ୍ୟ ଆଶାତୀତ ଭାବରେ ସାଧିତ ହୋଇଅଛି । ତେଣୁ ଏକ ସ୍ୱତନ୍ତ୍ର ଭୂମିକାରେ ସ୍ୱାଧୀନ ଅଭିବ୍ୟକ୍ତି ଓ ଭାବ-ବିଭବ-ସମୃଦ୍ଧ ସୃଜନଶୀଳ ମହାଗ୍ରନ୍ଥ ରୂପେ ଦାଣ୍ଡି ରାମାୟଣର ବିଚାର ସର୍ବଥା ସମୀଚୀନ ।



# ଦାଣ୍ଡିରାମାୟଣର ଅନୁଶୀଳନ

୨

—ସମାଜ—

"ରାମାୟଣ ଓ ମହାଭାରତକୁ କେବଳ ମାତ୍ର ମହାକାବ୍ୟ କହିଲେ ଚଳିବ ନାହିଁ । ତାହା ମଧ୍ୟ ଇତିହାସ । ଘଟଣାବଳୀର ଇତିହାସ ନୁହେଁ, କାରଣ ସେପରି ଇତିହାସ ସମୟ ବିଶେଷକୁ ଅବଲମ୍ବନ କରିଥାଏ । କିନ୍ତୁ ରାମାୟଣ, ମହାଭାରତ ଭାରତବର୍ଷର ଚିରକାଳର ଇତିହାସ । ଭାରତବର୍ଷର ଯାହା ସାଧନା, ଯାହା ଆରାଧନା, ଯାହା ସଙ୍କଳ୍ପ, ତାହାର ଇତିହାସ ଏହି ଦୁଇଟି ବିପୁଳ କାବ୍ୟହର୍ମ୍ୟ ମଧ୍ୟରେ ଚିରନ୍ତନ ସିଂହାସନରେ ବିରାଜମାନ ।"

ପ୍ରାଚୀନସାହିତ୍ୟ—ରବୀନ୍ଦ୍ରନାଥ ଠାକୁର, ପୃ: ୩: ।

## ଦାଣ୍ଡିରାମାୟଣରେ ସମାଜଚିତ୍ର—

ରାମାୟଣ ଓ ମହାଭାରତକୁ ବିଶ୍ୱକବି ରବୀନ୍ଦ୍ରନାଥ ଭାରତବର୍ଷର ଚିରକାଳର ଇତିହାସ ବୋଲି କହିଅଛନ୍ତି । ଏହି ଦୃଷ୍ଟିରେ ଚିରକାଳର ଇତିହାସ ହେଉ ବା ନ ହେଉ ସାରଳା ମହାଭାରତ ଓ ଦାଣ୍ଡିରାମାୟଣକୁ ବିଗତ କାଳର ଏକ ପରିପୂର୍ଣ୍ଣ ଇତିହାସ ବୋଲି ସହଜରେ ଗ୍ରହଣ କରାଯାଇ ପାରିବ । ଭାରତବର୍ଷର ମହାପରିବାର ଭିତରେ ହଜାର ହଜାର ବର୍ଷ ଧରି ବିକଶିତ ଓଡ଼ିଆ ଜାତିର ଏକ ସମଗ୍ର ଚିତ୍ର ଜୀବନ୍ତ ଭାବରେ ଏଥିରୁ ଉଦ୍ଧାର କରି ହେବ । ରବୀନ୍ଦ୍ରନାଥଙ୍କ ଭାଷାରେ କହିଲେ—ଉତ୍କଳର ଯାହା ସାଧନା, ଯାହା ଆରାଧନା, ଯାହା ସଙ୍କଳ୍ପ, ତାହାର ଇତିହାସ ଏହି ଦୁଇଟି ବିପୁଳ କାବ୍ୟ-ହର୍ମ୍ୟ ମଧ୍ୟରେ ଚିରନ୍ତନ ସିଂହାସନରେ ବିରାଜମାନ । ମାନବର ଶ୍ରେଷ୍ଠ ସାଧନା ତାର ଆପଣାର ସମାଜ । ଓଡ଼ିଆ ସମାଜ ହିଁ ଓଡ଼ିଆର ଶ୍ରେଷ୍ଠ ସାଧନା । କହିବା ବାହୁଲ୍ୟ, ତାହାର ଇତିହାସ ଦାଣ୍ଡି-ରାମାୟଣର ବିପୁଳ କାବ୍ୟ-ହର୍ମ୍ୟରେ ଅଧିଷ୍ଠିତ ।

ବଳରାମ ଦାସ ପ୍ରତ୍ୟକ୍ଷ ଭାବରେ ଓଡ଼ିଶାର ସାମାଜିକ ଇତିହାସ ଲେଖି ନାହାନ୍ତି । ସେ କାବ୍ୟ ଲେଖିଛନ୍ତି । କିନ୍ତୁ କାବ୍ୟ ଯୁଗ କାଳର

ସାମାଜିକ ଜୀବନରୁ ରସ ଗ୍ରହଣ କରି ପୁଷ୍ଟ ହୋଇଥାଏ ତେବେ ସେ ତାର ପ୍ରତିଚ୍ଛବି ବହନ କରେ । ବଳରାମ ଦାସଙ୍କ ରାମାୟଣରେ ଏହା ହିଁ ହୋଇଛି । ଓଡ଼ିଶାର ବାୟୁମଣ୍ଡଳରେ ତାଙ୍କର ପ୍ରତ୍ୟେକ ପାତ୍ର ବିଚରଣ କରିଅଛନ୍ତି । ଆମର ପାରିବାରିକ ଜୀବନ, ସାମାଜିକ ବିଧିବିଧାନ, ରାଜା ଓ ରାଜ୍ୟଶାସନ ଆଦିର ବିଶଦ ବର୍ଣ୍ଣନା ଏଥିରେ ସନ୍ନିବେଶିତ କରି-ହୋଇଛି । "ବଳରାମ ଦାସ ରାମାୟଣରେ ଓଡ଼ିଆ ସମାଜର ବହୁଚିତ୍ର ଅଙ୍କନ କରି ଯାଇଅଛନ୍ତି" ବୋଲି ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସଙ୍କର ମନ୍ତବ୍ୟର ସତ୍ୟତା ଏହାର ଯେ କୌଣସି ଛିତ୍ର ବିଶ୍ଳେଷଣ କରି ଦେଖିଲେ ପ୍ରମାଣିତ ହୁଏ । ବିଭିନ୍ନ ପ୍ରକାର ଲୋକାଚାର, ପାରିବାରିକ ଆଦର୍ଶ, ନାରୀ ଓ ପୁରୁଷର ସାମାଜିକ ସ୍ଥାନ, ରାଜା ଓ ଦରବାର ଚିତ୍ର, ରାଜା ଓ ପ୍ରଜାଙ୍କ ସମ୍ପର୍କ, ବ୍ରାହ୍ମଣ ଓ କ୍ଷତ୍ରିୟ ଆଦିଙ୍କ ସାମାଜିକ ସ୍ଥାନ ଇତ୍ୟାଦି ବିଷୟରେ ଦାଣ୍ଡି ରାମାୟଣର ବିଭିନ୍ନ ପ୍ରସଙ୍ଗରୁ ଯେଉଁ ଇଙ୍ଗିତ-ମାନ ମିଳୁଛି, ତାକୁ ଏକତ୍ର ବିଚାର କରି ଦେଖିଲେ, ସେ ସମୟରେ ଓଡ଼ିଆ ସମାଜ ଓ ତାର ଆଦର୍ଶର ଏକ ପ୍ରାଞ୍ଜଳ ଚିତ୍ର ଆମ ଆଖି ଆଗରେ ସ୍ପଷ୍ଟ ହୋଇ ଉଠେ ।

## ଲୋକାଚାର—

ରାମାୟଣକୁ ଗୋଟିଏ ପାରିବାରିକ ମହାକାବ୍ୟ ବୋଲି କୁହା-ଯାଇଅଛି । ପାରିବାରିକ ଚିତ୍ରରେ ଏହାର ପ୍ରତିଛତ୍ର ମଣ୍ଡିତ । ଲୋକ ଜୀବନର ଧାରା ପରିବାରରେ ପ୍ରତିଷ୍ଠିତ ହୁଏ । ପ୍ରତ୍ୟେକ ପରିବାରରେ ଅନୁଷ୍ଠିତ ପୂଜା ପାର୍ବଣ, ବ୍ରତ, ଜାତକର୍ମ, ବିଭା, ବିଦାଶ, ମୃତାହକ୍ରିୟା ଆଦିରେ ଲୋକାଚାରର ସ୍ୱରୂପ ପ୍ରକାଶ ପାଏ । ଏଇଭଳି ପାରିବାରିକ କ୍ରିୟାକର୍ମ ଭିତରେ ବଳରାମ ଦାସ ଲୋକାଚାରର ରୀତିନୀତିମାନ ବର୍ଣ୍ଣନା କରିଅଛନ୍ତି । ଏ ସବୁକୁ ତୁଳନା କରି ଦେଖିଲେ, ଆମ ସମାଜରେ ବର୍ତ୍ତମାନ ପ୍ରଚଳିତ ଲୋକାଚାରଗୁଡ଼ିକ ସହ ମିଳିଯାଏ । ଏଇ ଲୋକାଚାର-ଗୁଡ଼ିକ ଆମ ଜାତୀୟ ଜୀବନ ଭିତରେ କିପରି ବିକାଶ ଲଭିଥିଲା—ତାହା ନିର୍ଣ୍ଣୟ କରିବାର ଅବସର ଏଠାରେ ନାହିଁ । ବଳରାମ ଦାସ ଲେଖନୀରେ ଓଡ଼ିଆ ଲୋକ-ଜୀବନର ଏଇ ଦିଗ କିପରି ଜୀବନ୍ତ ଅଭିବ୍ୟକ୍ତି ଲଭିଅଛି, ତାହା ଏଠି ଦେଖିବାର କଥା ।

ପ୍ରଥମେ ଜାତକର୍ମ କଥା ଧରାଯାଉ । ଏବେ ଆମ ଗାଁ ଗହଳରେ ଶିଶୁଟିଏ ଜନ୍ମ ହେଲେ ପରମ୍ପରା ଅନୁସାରେ ଜାତକର୍ମ ପାଳନ କରାଯାଏ । ଗ୍ରହବିପ୍ର ଆସି କୋଷ୍ଠୀ ଗଣନା କରେ । ପାଞ୍ଚ ଦିନରେ ମାମୁଁ ଆସି ପଞ୍ଚୁଆତି ବସନ୍ତି । ଛଅ ଦିନରେ "ଷଠୀ ଦେଉଳୁ"ଙ୍କ ପୂଜା ହୁଏ । ପୁଣି ସୂତକ ଶୌଚ, ଏକୋଇଶିଆ ଆଦି ବେଢେକ ବିଧି ନିଖୁଣ ଭାବରେ ପାଳନ କରାଯାଏ । ଏସବୁ ସାମାଜିକ ଜୀବନର ଅଙ୍ଗ । ଏହାର ଭିତରେ ଗୋଟିଏ ପରିବାର ସହିତ ଆଉ ଗୋଟିଏ ପରିବାରର ସମବାୟ ସାଧିତ ହୁଏ । ବୃହତ୍ତର ସମାଜର ସଂହତି ରକ୍ଷିତ ହୁଏ । ଏହି ଦୃଷ୍ଟିରୁ ଦେଖିଲେ, ଚୂଡ଼ାକରଣ, ବା କର୍ଣ୍ଣବେଧ, ଉପନୟନ, ବିଭାବିଧି, ବନ୍ଧାଣ ଆଦି ମହତ୍ତ୍ୱପୂର୍ଣ୍ଣ । ଏହି ଗୁଡ଼ିକ ଭିତରେ ସମାଜର ପ୍ରକୃତ ରୂପ ନିହିତ । ପ୍ରତ୍ୟେକ ସମାଜର ରୁଚି, ପରମ୍ପରା ଓ ପରିବେଶ ଏହି ଲୋକାଚାର ଭିତରେ ଆତ୍ମପ୍ରକାଶ କରେ ।

ପୁରାଣକବି ବଳରାମ ଦାସ ନାନା ଭାବରେ ପ୍ରାଚୀନ ପୁରାଣ ଓ ଶାସ୍ତ୍ରମାନଙ୍କର ଅନୁସରଣ କରି ଅଛନ୍ତି । କିନ୍ତୁ ଯେଉଁଠି ସାମାଜିକ ବିଧିବିଧାନର ବର୍ଣ୍ଣନା ପାଇଁ ଅବସର ମିଳିଅଛି, ସେଠି କବି ସମ୍ପୂର୍ଣ୍ଣରୂପେ ବାସ୍ତବ ଲୋକାଚାର ଉପରେ ଦୃଷ୍ଟି ନିବଦ୍ଧ କରିଅଛନ୍ତି । ଦଶରଥଙ୍କ ସନ୍ତାନ ଜନ୍ମ ପରେ ଜାତକର୍ମ ଓ ରାମଚନ୍ଦ୍ର ଭରତ ଆଦିଙ୍କ ବିଭା-ପ୍ରସଙ୍ଗରେ ବିଭାବିଧି ବର୍ଣ୍ଣନାରୁ ଏହାର ପରିଚୟ ମିଳେ । କବି ଦଶରଥଙ୍କ ରାଣୀମାନଙ୍କର ଅଠମାସ ଗର୍ଭ ବେଳେ ଅଷ୍ଟମାସ ବନ୍ଦାପନା, ପୁତ୍ରମାନେ ଜନ୍ମ ହେବା ପରେ ଯଥାବିଧି ଜାତକର୍ମର ବର୍ଣ୍ଣନା ଦେଇଛନ୍ତି (୧) । ପ୍ରଥମେ ଜାତକ ଗଣନା, ତା'ପରେ ପଞ୍ଚୁଆତି, "ଷଷ୍ଠୀ ଦେଉଳୁ" ପୂଜା, ଓ ଏକୋଇଶିଆ ଆଦିର ବିସ୍ତୃତ ବର୍ଣ୍ଣନା କରିଅଛନ୍ତି । ପୁଣି ବିଭାବିଧି ବର୍ଣ୍ଣନା ସବୁଠାରୁ ବିଶଦ ଓ ମନୋରମ । ଦଶରଥଙ୍କ କନ୍ୟାଦେଖା, "ଦେଖୁଣି ସୁନା" ଅଳଙ୍କାରଦାନ, ଜନକଙ୍କର ବରବରଣ, ଦିନ ଅନୁକୂଳ, ଅହ୍ୟସ୍ତ୍ରୀଙ୍କ ଜଳତୋଳା, "କୋଇଲିବୁଡ଼ି" ସ୍ନାନ, ଗ୍ରାମଦେବତୀ ମଙ୍ଗୁଳା, ଶାଳୀ ଭାଉଜଙ୍କ ଚମାଳୀ, ଦଶରଥ ଓ ଋଷିମାନଙ୍କର ଶୁଭକର୍ମରେ ହଳଦି ଦେବା, ସୀତାଙ୍କର ଅହିଅପୂଜା, ଲବଣ-ଚଉଁରୀ-ବନ୍ଧା, ଜନକଙ୍କର ଯୌତୁକଦାନ, ବରକନ୍ୟାଙ୍କ କଉଡ଼ିଖେଳ, ମଧୁର ଅନ୍ନ

(୧) ଆଦିକାଣ୍ଡ ପୃ: ୫୬-୫୭ ।

ଭୋଜନ, ବରବାହୁଡ଼ା, ଜନକଙ୍କର କନ୍ୟାପ୍ରବୋଧନା ଓ ରାମଙ୍କଠାରେ ଜନକଙ୍କର ଦଶଦୋଷ ସ୍ୱୀକାରର ଜୀବନ୍ତ ଚିତ୍ର ଭିତରେ ଓଡ଼ିଶାର ପୁରପଲ୍ଲୀ ଯେପରି କି ଆତ୍ମପ୍ରକାଶ କରିଅଛି । ସର୍ବତ୍ର ଓଡ଼ିଶାର ଜନସମାଜ, ପୁରୁଷ ଓ ନାରୀ, ବ୍ରାହ୍ମଣ ଓ ଶୂଦ୍ର, ରାଜା ଭିଖାରୀ ସମସ୍ତେ ଯେପରି ଶୋଭାପାଇବା କରି ଚାଲିଅଛନ୍ତି । ପୁରାଣକବି ବଳରାମ ଦାସଙ୍କ ଏଇ ବର୍ଣ୍ଣନା ପଢ଼ିଲେ, ପାଞ୍ଚଶହ ବର୍ଷର ଓଡ଼ିଆ ଜନସମାଜ ନୂତନ ଜୀବନ୍ୟାସ ପାଇ ବିଚରଣ କରୁଥିବାର ପ୍ରତୀୟମାନ ହୁଏ ।

## ସମାଜର ନୈତିକ ଆଦର୍ଶ—

ବଳରାମ ଦାସ କେବଳ ସମାଜର ବହିରଙ୍ଗ ଚିତ୍ର ଦେଇ ନାହାନ୍ତି ତାର ଅନ୍ତରାତ୍ମାକୁ ମଧ୍ୟ ସ୍ପଷ୍ଟ ଆଲୋକକୁ ଆଣିଛନ୍ତି । ନୈତିକ ଆଦର୍ଶ ହିଁ ସମାଜର ଅନ୍ତରାତ୍ମା । ଲୋକଚଳଣି ଓ ଲୋକବିଶ୍ୱାସ ଭିତରେ ଏହାର ପ୍ରତିଷ୍ଠା ଓ ବିକାଶ ସାଧିତ ହୁଏ । ଯେଉଁ ଆଦର୍ଶର ଚିତ୍ର ବଳରାମ ଦାସଙ୍କ ରାମାୟଣର ପୃଷ୍ଠାରୁ ମିଳେ, ତାହା ଏବେ ବି ଲୋକ ମନରେ ପ୍ରତିଷ୍ଠିତ ରହିଛି । ଯୁକ୍ତିର କଷଟିରେ ନୁହେଁ, ପ୍ରାଣରେ ପ୍ରତିଷ୍ଠିତ ବିଶ୍ୱାସର ସିଂହାସନରେ ସେଇ ଆଦର୍ଶ ଏବେ ବି ବିରାଜିତ । ହିନ୍ଦୁଠାରେ ଧର୍ମ ସବୁବେଳେ ସମାଜ-ଜୀବନର ଅଙ୍ଗ ବିଶେଷ ରୂପେ ଅବଧାରିତ । ସାମାଜିକ ଆଦର୍ଶର ପରିପାଳନ ହିଁ ତା'ଠାରେ ଧର୍ମାନୁଶରଣର ଶ୍ରେଷ୍ଠ ମାର୍ଗରୂପେ ଗୃହୀତ ।

ଶ୍ରୀ ରାମଚନ୍ଦ୍ରଙ୍କ ବନବାସ ଓ ଦଶରଥଙ୍କ ଦେହତ୍ୟାଗର ଦାରୁଣ ସମ୍ବାଦ ପାଇ ଭରତ ମାମୁଁଘରୁ ଫେରି ଆସିଛନ୍ତି । ପ୍ରଥମେ ରାଜପୁରରେ କୌଶଲ୍ୟାଙ୍କୁ ସାକ୍ଷାତ କରିଅଛନ୍ତି । ପ୍ରିୟପୁତ୍ରର ଦୁଃସହ ବିଚ୍ଛେଦ ଓ ପ୍ରାଣର ସ୍ୱାମୀଙ୍କ ଦାରୁଣ ବିୟୋଗରେ ଶୋକାକୁଳିତା କୌଶଲ୍ୟା ଭରତଙ୍କ ସାଧୁତା ପ୍ରତି ସନ୍ଦେହ ପ୍ରକାଶ କରିଛନ୍ତି । ଏଥିରେ ବିଚଳିତ ହୋଇ ଧର୍ମପ୍ରାଣ, ଭ୍ରାତୃଭକ୍ତ ଭରତ ନିଜର ଅନ୍ତର କଥା ପ୍ରକାଶ କରିବାକୁ ଯାଇ, ସମାଜର ନୀତି କିଣ, ପାପ ପୁଣ୍ୟ କାହାକୁ କହନ୍ତି—ଏହା ବ୍ୟାଖ୍ୟା କରିଅଛନ୍ତି (୧) ।

---

(୧) କୌଶଲ୍ୟାଙ୍କପୁରରେ ଭରତର ପ୍ରବେଶ ଓ କଥୋପକଥନ, ଦାଣ୍ଡି ରାମାୟଣ ଅଯୋଧ୍ୟାକାଣ୍ଡ ପୃଃ ୭୯ ।

ସାଧାରଣ ଅଧର୍ମାଚାରୀ ବା ପାପୀ—ଅପୂର୍ବିକ, ଚୋର ଜୀବହତ୍ୟାକାରୀ ଓ ମିଥ୍ୟାବାଦୀ । ଗୃହୀର ଅଧର୍ମାଚାର—ନିଜ କୁଟୁମ୍ବ ନ ପୋଷିବା, ପତ୍ନୀର ପତିସେବା ଓ ପତିର ପତ୍ନୀସେବା ନ କରିବା, ପିତାର ପୁତ୍ରକୁ ଅବିଶ୍ବାସ କରିବା, ପୁତ୍ରର ପିତାକୁ ଭୟ ନ କରିବା, ପାଦ ନ ପଖାଳି ଭୁଞ୍ଜିବା, ଲୁଗା ନ ଧୋଇ ପିନ୍ଧିବା, ଅତିଥି, ବ୍ରାହ୍ମଣ ଓ ଦେବତାଙ୍କୁ ଯଥାବିଧି ମାନ୍ୟ ଓ ଅର୍ଚ୍ଚନା ନ କରିବା, ବ୍ରତ ଉପବାସ ନ କରିବା, ସଂକ୍ରାନ୍ତି ଓ ଅମାବାସ୍ୟାରେ ତୈଳ ମର୍ଦ୍ଦନ କରିବା, ଦୁର୍ଭିକ୍ଷରେ ଧାନ ନ ବିକି ଲୁଚାଇ ରଖିବା, ଶ୍ରାଦ୍ଧସରେ ଅନ୍ନ ନ ଭୁଞ୍ଜିବା, ପିତୃପୁରୁଷଙ୍କୁ ଅନ୍ନ ନ ଦେବା, ପୁଣ୍ୟକାଳରେ ଅନ୍ନଦାନ ନ କରିବା, କୋଦଣ୍ଡା ଭାଙ୍ଗି କୃଷି କରିବା, ଗୋଧନ ହଜିଲେ ତିନିଦିନ ପର୍ଯ୍ୟନ୍ତ ନ ଖୋଜିବା, ଅପନ୍ତରାରୁ ବୃକ୍ଷ କାଟିବା, ଆପଣା କୁଳଧର୍ମ ନ ଜାଣିବା, ଜାତି ଲୁଚେଇବା ଆଦି ଗୃହୀର କର୍ତ୍ତବ୍ୟ ନୁହେ । ଏଗୁଡ଼ିକ ପାପ ।

ବ୍ରାହ୍ମଣର ଅଧର୍ମାଚାର—ମଦିରା ପାନ, ଅନାଚାର (ଏଥିରେ ଗୃହୀର ସନ୍ତ୍ର ଆଚାରଧର୍ମର ଲଙ୍ଘନ ବୁଝିବାକୁ ହେବ), ଶାସ୍ତ୍ରାଲୋଚନା ନ କରିବା, ତର୍ପଣ ବିଧି ନ କରିବା, ଅସ୍ତ୍ରଧାରଣ କରିବା ଆଦି ବ୍ରାହ୍ମଣର ଅଧର୍ମାଚାର ।

କ୍ଷତ୍ରିୟ ଓ ରାଜାର ଅଧର୍ମାଚାର—ଦେଉଳ ନ ତୋଳିବା, ପ୍ରଜାପାଳନ ନ କରିବା, ଶତ୍ରୁଙ୍କୁ ବିଶ୍ବାସ କରିବା ଓ ଅନାଚାରୀ ହେବା କ୍ଷତ୍ରିୟ ପକ୍ଷରେ ଗର୍ହିତ ।

ସାଧାରଣ ଅନାଚାର—ପାଣିରେ ବସ୍ତ୍ରଫେଡ଼ି ଉଲଗ୍ନ ହେବା, ନଦୀକୂଳରେ କେଶ ଝାଡ଼ିବା, ବନ୍ଧୁସଙ୍ଗେ ବଡ଼ ଯୁବତୀ, ଗର୍ଭବତୀ, ପରସ୍ତ୍ରୀ ଆଦି ସମ୍ଭୋଗ କରିବା, ଆପଣାର ବଡ଼େଇ କରିବା, ପରର ପଦାର୍ଥ ଲୁଚେଇ ଖାଇବା ଆଦି ସାଧାରଣ ପ୍ରତ୍ୟେକଙ୍କର ଗର୍ହିତ କାର୍ଯ୍ୟ ।

ପୌରାଣିକ ଯୁଗରେ ଏ ଦେଶରେ ଯେଉଁ ଆଦର୍ଶ-ସମାଜର ପରିକଳ୍ପନା କରାଯାଇଥିଲା,ତାହାର ପ୍ରକାଶ ବଳରାମ ଦାସଙ୍କ ରାମାୟଣରେ ଦେଖିବାକୁ ମିଳେ । ଆପଣା ବର୍ଣ୍ଣ ଓ କୁଳଧର୍ମ ପାଳନ ଉପରେ ପୁରାଣ ଗ୍ରନ୍ଥମାନଙ୍କରେ ଜୋର ଦିଆଯାଇଥିଲା । ବିଷ୍ଣୁପୁରାଣରେ ସଗର ରାଜାଙ୍କୁ ଔର୍ବ ମୁନି ଉପଦେଶ ଦେଇ କହୁଛନ୍ତି—"ଆପଣା ବର୍ଣ୍ଣ ଓ କୁଳଧର୍ମ ପାଳନ କଲେ ପରମପୁରୁଷ ସନ୍ତୁଷ୍ଟ ହୋଇ ଥାଆନ୍ତି । ଏହା ବ୍ୟତୀତ ଅନ୍ୟ କୌଣସି

ପ୍ରକାରେ ସେ ସନ୍ତୁଷ୍ଟ ହୁଅନ୍ତି ନାହିଁ (୧)" । ସ୍ମୃତିଶାସ୍ତ୍ରର ବର୍ଣ୍ଣାଶ୍ରମ ଧର୍ମ ପାଳନ ପ୍ରତି ପୁରାଣଗ୍ରନ୍ଥକରେ ବିଶେଷ ଦୃଷ୍ଟି ଦିଆଯାଇଥିଲା । ଏ ସବୁର ଅବଲମ୍ବନରେ ଭକ୍ତକବି ନିଜ ସମାଜର ନୈତିକ ଆଦର୍ଶ ପ୍ରତିଷ୍ଠା ଲାଗି ଉଦ୍ୟମ କରିଅଛନ୍ତି ।

## ଗୃହଚର୍ଯ୍ୟା—

ରାମାୟଣ ସମ୍ବନ୍ଧରେ ରବୀନ୍ଦ୍ରନାଥ କହୁଅଛନ୍ତି—"ଗୃହାଶ୍ରମ ଭାରତୀୟ ଆର୍ଯ୍ୟ ସମାଜର ଭିତ୍ତି । ରାମାୟଣ ସେଇ ଗୃହାଶ୍ରମର କାବ୍ୟ (୨)" । ଏଇ ଉକ୍ତି ବାଲ୍ମୀକିଙ୍କ ରାମାୟଣ ପ୍ରତି ଯେତେଦୂର ପ୍ରଯୁଜ୍ୟ, ବଳରାମଙ୍କ ରାମାୟଣ ପ୍ରତି ମଧ୍ୟ ସେଇ ପରିମାଣରେ ପ୍ରଯୁଜ୍ୟ । ଗୃହରକ୍ଷା ପାଇଁ ତ୍ୟାଗର ଚରମ ଆଦର୍ଶ ଉପରେ ଗୃହସ୍ଥଳୀର ମଧୁର ଚିତ୍ର ଏଥିରେ ଅଙ୍କିତ ହୋଇଅଛି । ପରିବାର ମଧ୍ୟରେ ପିତାମାତା, ଗୁରୁଜନ, ଅନ୍ୟାନ୍ୟ ଜ୍ଞାତି ସୋଦରଙ୍କ ସ୍ଥାନ ମହତ୍ ହେଲେ ବି ସ୍ୱାମୀ ଓ ସ୍ତ୍ରୀଙ୍କ ସ୍ଥାନ ମୁଖ୍ୟ । ସେମାନଙ୍କ ନିଷ୍ଠା ଓ ଗୃହଚର୍ଯ୍ୟା ଉପରେ ଗୃହର ବିକାଶ ସମ୍ଭବ । ସଂଯମ ଓ ନିଷ୍ଠା ଉପରେ ବଳରାମ ଦାସ ସବୁଠାରୁ ଗୁରୁତ୍ୱ ଆରୋପ କରିଅଛନ୍ତି । ଚକ୍ରବାକ ପକ୍ଷୀର ଶ୍ରୀରାମଙ୍କୁ ଭର୍ତ୍ସନା (୩) ପ୍ରସଙ୍ଗରେ ଏହାର ସୂଚନା ଦିଆଯାଇଅଛି । ପଶୁପକ୍ଷୀର ରମଣ ଦେଖିବା, ଉଲଗ୍ନ ଜଳି ଉପଭୋଗନ୍ୟା; ଯୁବତୀର ମୁଖ ଦର୍ଶନ କରିବା ପାପ । ନାରୀର ପୁରୁଷ ଦେଖି ସଂକୋଚ ନ ପାଇବା ପାପ । ପୁଣି ଗୃହସ୍ଥଳୀରେ ପୁରୁଷ ଓ ସ୍ତ୍ରୀ କପରି ସମସ୍ଥାନୀୟ ତାର ଇଙ୍ଗିତ ରାମଚନ୍ଦ୍ରଙ୍କର ବକପକ୍ଷୀକୁ ବରଦାନ ପ୍ରସଙ୍ଗରେ ସୂଚିତ ହୋଇଅଛି (୪) । ବର୍ଷାଦିନରେ ବକପକ୍ଷୀ ତାର ଭାର୍ଯ୍ୟାଠାରୁ ଆହାର ଗ୍ରହଣ କରିବ ବୋଲି ରାମଚନ୍ଦ୍ର ବର ଦିଅନ୍ତେ—ବକ ସ୍ୱଭାବ କିମ୍ପା ନିଜ ସ୍ତ୍ରୀଠାରୁ କପରି ଆହାର ଗ୍ରହଣ କରିବ ବୋଲି ପ୍ରଶ୍ନ କରିଅଛି । ତାର ଉତ୍ତରରେ ରାମଚନ୍ଦ୍ର କହୁଛନ୍ତି—ସ୍ୱାମୀ ଓ ସ୍ତ୍ରୀ ହେଉଛନ୍ତି ବେନି ଶରୀର, ମାତ୍ର ଆତ୍ମା ସେମାନଙ୍କର ଗୋଟିଏ । ଏଥିରେ ସାନବଡ଼ ଭେଦ ନାହିଁ । ଗୃହଚର୍ଯ୍ୟାରେ ନାରୀର

(୧) ବିଷ୍ଣୁ ପୁରାଣ—ଅଂଶ ଖଣ୍ଡ ୮ଅ.୯—୧୨ ଶ୍ଳୋକ ।
(୨) ପ୍ରାଚୀନ ସାହିତ୍ୟ, ପୃ: ୨ ।
(୩) ଆରଣ୍ୟକ, ପୃ: ୫୬ ।
(୪) କିଷ୍କିନ୍ଧ୍ୟା କାଣ୍ଡ, ପୃ: ୫୦-୫୧ ।

ଦାୟିତ୍ୱ ଓ ମହତ୍ତ୍ୱ ବେଶୀ । ସମସ୍ତଙ୍କ ସହିତ ସୌଖ୍ୟ ରଖିବା ତାର କର୍ତ୍ତବ୍ୟ । ପୁଣି ନିଜକୁ ନିଜେ ନାରୀ କେବଳ ରକ୍ଷା କରିପାରେ (୧) । ଅନ୍ୟ କଥାରେ କହିଲେ, ନିଜର ତଥା ଗୃହର ରକ୍ଷା-କବଚ ହେଉଛନ୍ତି ନାରୀ । ଗୃହରେ ସ୍ୱାମୀକୁ ସର୍ବପ୍ରକାର ସାହାଯ୍ୟ କରିବା ଓ ଆନନ୍ଦ ଦେବା ଗୃହିଣୀର କର୍ତ୍ତବ୍ୟ । କୌଣସି ଅପୂର୍ବ ପଦାର୍ଥକୁ ସ୍ତ୍ରୀର ଲୋଭ କରିବା ଉଚିତ ନୁହେଁ । ଆୟବ୍ୟୟରେ ସେ ସଞ୍ଚୟଶୀଳା ହେବା ଉଚିତ । ଧନକର ଅନ୍ଧରୁ ଅଳ୍ପ ଧନକୁ ଧର୍ମନ୍ଦି କରିଲେଇ ରଖିବା ଉଚିତ (୨) ।

ନାରୀ ପ୍ରସଙ୍ଗ—

ନାରୀ ପ୍ରସଙ୍ଗ ବଳରାମ ଦାସଙ୍କ ରାମାୟଣରେ ବହୁସ୍ଥାନରେ ଉଲ୍ଲିଖିତ ହୋଇଅଛି । ତ୍ୟାଗ ଓ ଭୋଗ ଉଭୟ ଦିଗକୁ ଯଥାସମ୍ଭବ କବି ଦୃଷ୍ଟି ଦେଇଛନ୍ତି । ଏଥିଲାଗି ସମୟ ସମୟରେ ପରସ୍ପର-ବିରୁଦ୍ଧ ମତମାନ ବ୍ୟକ୍ତ ହୋଇଥିବାର ଦେଖିବାକୁ ମିଳେ । ପାତାଳପୁରରେ ରାବଣ ଓ ଦିବ୍ୟପୁରୁଷର ନାରୀ ପ୍ରସଙ୍ଗରେ କଥୋପକଥନ ଓ ବୈଦେହୀ-ବିସର୍ଜନ ପରେ ରାମଚନ୍ଦ୍ରଙ୍କୁ ଲକ୍ଷ୍ମଣର ସାନ୍ତ୍ୱନା ବାକ୍ୟରେ ନାରୀ ପ୍ରତି ସ୍ପଷ୍ଟ ମତମାନ ଅଭିବ୍ୟକ୍ତ ହୋଇଅଛି । ବିଶ୍ଳେଷଣ କରି ଦେଖିଲେ ଜଣାଯିବ ପ୍ରଥମ ସ୍ଥାନରେ କବି ଭୋଗରେ ଓ ଦ୍ୱିତୀୟ ସ୍ଥଳରେ ତ୍ୟାଗର ଦିଗ ପ୍ରତି ଅବହିତ ହୋଇଅଛନ୍ତି । ଆପଣା ଜୀବନକୁ ସୁରଭିତ ଓ ସୌଭାଗ୍ୟମୟ କରିବାକୁ ପୁରୁଷ ପକ୍ଷରେ ନାରୀର ସହଯୋଗ ଯେତିକି ଆବଶ୍ୟକ, ଆପଣା ଜୀବନକୁ ସଂଯତ ଓ ସମୃଦ୍ଧ କରିବାକୁ ପୁରୁଷ ପକ୍ଷରେ ନାରୀଠାରୁ ଦୂରରେ ରହିବା ମଧ୍ୟ ସେଇପରି ଆବଶ୍ୟକ ।

ରାବଣ ପାତାଳପୁରରେ ଭ୍ରମଣ କରୁ କରୁ ଜଣେ ଦିବ୍ୟ ପୁରୁଷ ଗୋଟିଏ ପାହାଡ଼ ଉପରେ ବହୁ ଅପ୍ସରାଙ୍କୁ ଏକତ୍ର ସମ୍ଭୋଗ କରୁଥିବାର ଦେଖିଲା । ଏଥିରେ ବିରକ୍ତ ଓ ଘୃଣା ସହିତ ସମସ୍ତ ଘଟଣା ବୁଝିବା ଲାଗି ରାବଣର କୌତୂହଳ ଜାତ ହେଲା । ରାବଣକୁ ତୃପ୍ତ କରିବା ପାଇଁ ଦିବ୍ୟ ପୁରୁଷ

---

(୧) ଜାନକୀପୁରରେ ବନବାସ ପୂର୍ବରୁ ରାମଚନ୍ଦ୍ରଙ୍କ କଥୋପକଥନ—
ଅଯୋଧ୍ୟା—ପୃ: ୪୧ ।

(୨) ବନଗମନ ପୂର୍ବରୁ ସୀତାଙ୍କ କୌଶଲ୍ୟାଙ୍କ ଉପଦେଶ—ଅଯୋଧ୍ୟା-ପୃ: ୪୧ ।

ନାରୀର ମହତ୍ତ୍ୱ ନିମ୍ନ ପ୍ରକାରେ ବର୍ଣ୍ଣନା କରିଥିଲା (୧) । ନାରୀ ସଂସାରରେ ଭାଗ୍ୟଦାୟିନୀ । ସେ ପୁରୁଷର ସଂସାର ଓ ଅନ୍ତରଙ୍ଗ ବାନ୍ଧବୀ । ପୁରୁଷର ଧର୍ମ, କର୍ମ, ଶୌର୍ଯ୍ୟ, ବୀର୍ଯ୍ୟମୂଳରେ ନାରୀର ପ୍ରେରଣା ନିହିତ । ସେ ସଂସାରର ଆଦି ଜନନୀ ଓ ସୃଷ୍ଟିକାରିଣୀ । ପୁରୁଷର ମହତ୍ତ୍ୱ ନାରୀର ସମାବେଶରେହିଁ ସଦା ବିକଶିତ । ଗାୟତ୍ରୀଙ୍କୁ ଘେନି ବ୍ରହ୍ମା, ଲକ୍ଷ୍ମୀଙ୍କୁ ଘେନି ବିଷ୍ଣୁ, ପାର୍ବତୀଙ୍କୁ ଘେନି ଈଶ୍ୱର ସକଳର ଶୀର୍ଷ ସ୍ଥାନରେ ଆସୀନ ।

ସାଧାରଣ ଅବସ୍ଥାରେ କୌଣସି ନାରୀର ଆକର୍ଷଣ ପୁରୁଷ ପକ୍ଷରେ ଲଙ୍ଘନ କରିବା ଅସମ୍ଭବ । ପୁରାଣରେ ଏହାର ଅଜସ୍ର ନିଦର୍ଶନ ରହିଅଛି । ସ୍ୱୟଂ ବ୍ରହ୍ମା ଉର୍ବଶୀର ଆକର୍ଷଣରେ ପଡ଼ି ବଶିଷ୍ଠଙ୍କର ଜନକ ହେଲେ । ପାର୍ବତୀଙ୍କର ବିଭା କାଳରେ ରେତ ତ୍ୟାଗ କରି ଷାଠିଏ ସହସ୍ର ବାଳଖିଲ୍ୟଙ୍କ ଜନ୍ମର କାରଣ ହେଲେ । ଗଙ୍ଗାଙ୍କୁ ହର ମସ୍ତକରେ ସ୍ଥାନ ଦେଲେ । ବିଶ୍ୱାମିତ୍ର ମେନକାର ବଶ ହେଲେ । ମହିଷାସୁର ନାରୀ ଲୋଭରେ ପ୍ରାଣ ଦେଲା । ନାରୀ ଲାଗି ଧର୍ମ ଲଙ୍ଘନ କରିବାର ଦୃଷ୍ଟାନ୍ତ ଦେବରାଜ ଇନ୍ଦ୍ର ଓ ଦେବଗୁରୁ ବୃହସ୍ପତିଙ୍କଠାରେ ବି ଦେଖାଯାଏ ।

ବିଶ୍ୱ ସୃଷ୍ଟିରେ ନାରୀ ସୃଷ୍ଟି ଶ୍ରେଷ୍ଠ । ନାରୀ ଲାଗି ଅସୀମ ଦୁଃଖ ବରଣ କରିବାକୁ ହେଉଥିଲେ ମଧ୍ୟ, ଚରମ ସୁଖର କାରଣ ହୋଇ ପୁରୁଷ ତାକୁ ଛାଡ଼ି ପାରେ ନାହିଁ । ସବୁଠାରୁ ସାର ପଦାର୍ଥ ଆଣି ବିଧାତା ନାରୀ ସୃଷ୍ଟି କରି ଅଛନ୍ତି । ସେ ବିଶ୍ୱସୃଷ୍ଟିରେ ତିଳୋତ୍ତମା । ତାର ଅଧରରେ ଅମୃତ, ମୁଖରେ ଚନ୍ଦ୍ର, ଆଖିରେ ପଞ୍ଚବାଣ । ବାହ୍ୟ ସୌନ୍ଦର୍ଯ୍ୟରେ ସେ ଯେପରି ମଣ୍ଡିତା, ସେଇପରି ଅନ୍ତରର ବହୁ ସୁଗୁଣାବଳୀରେ ବିଭୂଷିତା । ପ୍ରମଦା, ବାମା, ବଲ୍ଲଭୀ ଆଦି ପ୍ରତ୍ୟେକ ନାମ ତାର ସୁଗୁଣର ପରିଚୟ ଦିଏ । ଚିତ୍ତର ପ୍ରମୋଦକାରିଣୀ ହୋଇ, ସେ ପ୍ରମଦା, ତାର ଅସୀମ ସୌନ୍ଦର୍ଯ୍ୟ ମନରେ ଭାବ ବିହ୍ୱଳତା ଆଣେ ବୋଲି ସେ ବାମା, ପ୍ରାଣରେ ପ୍ରୀତି ସଞ୍ଚାରିଣୀ ହୋଇ ଥିବାରୁ ବଲ୍ଲଭୀ ନାମରେ ସେ ଲୋକରେ ବନ୍ଦିତା । ଦୈହିକ ଶକ୍ତିରେ ଦୁର୍ବଳା ବୋଲି ଲୋକେ ତାକୁ ଅବଳା କହୁଥାନ୍ତି; କିନ୍ତୁ ପ୍ରକୃତରେ ତାର ବଳର କଳନା ସମ୍ଭବ ନୁହେଁ ହୋଇ ସେ ଅବଳା । ସାରି ନୁନିଆଁର ଧର୍ମ ଓ ନ୍ୟାୟଶକ୍ତି ନାରୀ ପକ୍ଷରେ ଥିବାରୁ ପ୍ରକୃତରେ ନାରୀ

(୧) ରାବଣ ଓ ଦଣ୍ଡ୍ୟପୁରୁଷ କଥୋପକଥନ—ଉତ୍ତର, ପୃ: ୬୩-୬୪

ଶତ୍ରୁର କଳନା ନାହିଁ । ତାକୁ ଅବୋଧ ଓ ମ୍ଳାନବୁଦ୍ଧି ବୋଲି ମନେ କରିବା ବୃଥା । ମାନବ ସୃଷ୍ଟିର ଶ୍ରେଷ୍ଠ ଅନ୍ତର୍ନିହିତ ସୌନ୍ଦର୍ଯ୍ୟରେ ସେ ମହିମାନ୍ୱିତା ।

ସୀତା ବିସର୍ଜନ ଅନ୍ତେ ଶୋକାକୁଳିତ ରାମଚନ୍ଦ୍ରଙ୍କୁ ଲକ୍ଷ୍ମଣଙ୍କ ସାନ୍ତ୍ୱନା ବାକ୍ୟରେ ନାରୀ ପ୍ରସଙ୍ଗର ଅନ୍ୟଦିଗ ସୂଚିତ ହୋଇଛି (୧) । ନାରୀ ଲାଗି ଯଦି କୁଳର ନିନ୍ଦା ହୁଏ, ଆପଣା ଚରିତ୍ରରେ କଳଙ୍କ ଲାଗେ— ତେବେ ପୁରୁଷର ନାରୀଠାରୁ ଦୂରରେ ରହିବା ଉଚିତ । ନାରୀମାନେ କଦାପି ଏକାନ୍ତ ବିଶ୍ୱାସର ପାତ୍ରୀ ନୁହନ୍ତି । ସେମାନେ ନିକଟରେ ଥିବାବେଳେ ଏକାନ୍ତ ନିଜର ହୋଇ ବିଶ୍ୱାସର ପାତ୍ରୀ ହୁଅନ୍ତି । ନିକଟରୁ ବାହାରିଗଲେ ଶତ୍ରୁଠାରେ ମଧ୍ୟ ଗୋପନ କଥା ନିଜର ହୃଦୟ ଖୋଲି ପ୍ରକାଶ କରିବାକୁ ଡରିଲେହେଲେ, କୁଣ୍ଠା ବୋଧ କରନ୍ତି ନାହିଁ । ନାରୀ ପ୍ରାଣର ବଇରୀ, ସକଳ ଅବଗୁଣର ଆଧାର ।

ସ୍ଥୂଳତଃ ଦେଖିଲେ, ବଳରାମ ଦାସ ନାରୀ ପ୍ରତି ଉଚ୍ଚ ମତ ପୋଷଣ କରିଅଛନ୍ତି । ପରିପୂର୍ଣ୍ଣ ନାରୀ ଚରିତ୍ର ଜାନକୀଙ୍କୁ ବାଦ ଦେଇ, ତାଙ୍କର ସୃଷ୍ଟ ତାରା, ମନ୍ଦୋଦରୀ ଆଦି ଯେକୌଣସି ନାରୀ ଚରିତ୍ର ପ୍ରତି ଦୃଷ୍ଟିଦେଲେ, ଦେଖିବାକୁ ମିଳେ, ସେ ନାରୀକୁ ସତ୍ୟ ଓ ନ୍ୟାୟ, ସଂଯମ ଓ ସହନଶୀଳତାର ପ୍ରତିମୂର୍ତ୍ତି ବ୍ୟତୀତ ଆଉ କିଛି କଳ୍ପନା କରିପାରି ନାହାନ୍ତି । ତଥାପି ସେ ଯୁଗରେ ନାରୀ ପ୍ରତି ଯେଉଁ ନୀଚ ମତ ପୋଷଣ କରାଯାଉଥିଲା ସେଥିରୁ କବି ସଂପୂର୍ଣ୍ଣ ମୁକ୍ତ ହୋଇ ପାରି ନାହାନ୍ତି । ଅନେକ ସମୟରେ ନାରୀ ପ୍ରତି ସନ୍ଦେହ ଦୃଷ୍ଟି ନିକ୍ଷେପ କରିଅଛନ୍ତି ।

ଗୃହସ୍ଥଳୀର ଚିତ୍ର—

ବଳରାମ ଦାସଙ୍କ ରାମାୟଣରେ ଆମ ଗୃହସ୍ଥଳୀର ଜୀବନ୍ତ ଚିତ୍ର ପ୍ରକାଶିତ ହୋଇଅଛି । ଗୃହୀର ଆତିଥ୍ୟ, ଗୃହିଣୀର ଉଦାରତା, ଶାଶୁ-ବୋହୂଙ୍କ ସ୍ନେହାଦର ଆଦିର ପ୍ରାଞ୍ଜଳ ବର୍ଣ୍ଣନା ଭିତରେ ପାଞ୍ଚଶହ ବର୍ଷ ପୂର୍ବେ ଯେଉଁ ଗୃହସ୍ଥଳୀର ଚିତ୍ର ପ୍ରକାଶ କବି ଦେଇ ଯାଇଅଛନ୍ତି, ତାହାହିଁ ଆଜି ଆମର ଗୃହସ୍ଥଳୀ ଭିତରେ ନିତ୍ୟ ନୂତନ ରୂପରେ ଦେଖିଲି ଭଳି

(୧) ଲକ୍ଷ୍ମଣଙ୍କ ପ୍ରବୋଧନା—ଉତ୍ତର, ପୃ: ୧୬୩-୧୬୪ ।

ମନେ ହୁଏ । ଲଙ୍କା ଯୁଦ୍ଧରୁ ଫେରି ରାମଚନ୍ଦ୍ର ଅଯୋଧ୍ୟାରେ ଅଭିଷିକ୍ତ ହେବା ପରେ ଲକ୍ଷ, କପିସେନା ଓ ନିମନ୍ତ୍ରିତ ରାଜାମାନଙ୍କୁ ଯେଉଁ ଆତିଥ୍ୟ ଦେଖାଇଛନ୍ତି, ସେଥିରେ ରାମଚନ୍ଦ୍ର ଓ ସୀତାଙ୍କଠାରେ ଗୃହସ୍ଥ ତଥା ଗୃହିଣୀର ଆଦର୍ଶ ଫୁଟିଛି (୧) । ଅଯୋଧ୍ୟାର ରାଜରାଣୀ ହୋଇ ବି ସୀତା ସାଧାରଣ ଗୃହିଣୀ । ସ୍ୱାମୀ ଓ ଗୃହର ଆଗନ୍ତୁକ ଅତିଥିମାନଙ୍କୁ ଆପଣା ହାତରେ ପାକ କରି ପରଷିବା ଗୃହିଣୀର ବିଧି । ଆଦର୍ଶ ଘରଣୀ ସୀତା ଏହା ବା ପାଳନ ନ କରନ୍ତେ କିପରି ? ନିଜ ହାତରେ ଷଡ଼ରସ ବ୍ୟଞ୍ଜନ ଓ ଶାଳିଅନ୍ନ ପାକ କଲେ । ପୁଣି ଉତ୍ତମ ବେଶରେ, ଖୁସି ମନରେ ରାମଚନ୍ଦ୍ରଙ୍କ-ଠାରୁ ଆରମ୍ଭକରି ସମସ୍ତଙ୍କୁ ନିଜେ ପରଷିଲେ । ଏଭଳି ତତ୍ପରତାର ସହିତ ପରଷିଲେ ଯେ, ସମସ୍ତେ ନିଜ ଆଗରେ ଅନ୍ନବ୍ୟଞ୍ଜନହସ୍ତା ସୀତାଙ୍କୁହିଁ ଦେଖିଲେ । ନାନା ପ୍ରକାର ଖିରି, ପଣା, ଫଳ, ଲଡ଼ୁମାନ ଧରି ଆଦରରେ ସମସ୍ତଙ୍କ ଭୋଜନ ପାଦରେ ବଳେଇ କରି ଆଉ ଗୋଟିଏ ପରଷିବାକୁ ସେପରି ଜାନକୀ ସଦା ତତ୍ପର । ସ୍ୱୟଂ ରାମଚନ୍ଦ୍ର ବି ଆତିଥ୍ୟରେ ଅବହେଳା କରି ନାହାନ୍ତି । ଭୋଜନବେଳେ ସମସ୍ତଙ୍କ ଗହଣରେ ନିଜର କାର୍ପଣ୍ୟ ଦେଖାଇ କହୁଛନ୍ତି—"ଆମେ ମାନି ଭାଳି ପୁରକୁ ଅଣିଲୁଁ । ସଞ୍ଜା ନାହିଁ । ମୋ ଘରେ ଖାଇ ଦୁଃଖ ପାଇଲ ବୋଲି ମନରେ ଅନ୍ୟଥା କିଛି ଭାବିବ ନାହିଁ ।" କିନ୍ତୁ ଭୂରି ଭୋଜନରେ ତୃପ୍ତ ରାଜାମାନଙ୍କୁ ଏହି କାର୍ପଣ୍ୟ ବାକ୍ୟର ଉତ୍ତର ଦେବାକୁ ମୁହଁରେ ଭାଷା ଆସିଲା ନାହିଁ ।

ଏ ହେଉଛି ଗୃହସ୍ଥଳୀର 'ବହିରଙ୍ଗ' ଚିତ୍ର । ତାର ଅନ୍ତରଙ୍ଗ ଚିତ୍ର ଆହୁରି ଜୀବନ୍ତ ଓ ମନୋରମ । ଜାଆମାନଙ୍କ ସହିତ ମିଶି ସୀତାଙ୍କର ତିନିଶାଶୁଙ୍କୁ ଅନ୍ନ ଭୁଞ୍ଜେଇବା, ପୁଣି ଘରେ ସମସ୍ତଙ୍କ ଭୋଜନ ପରେ, ଚାରିବୋହୂଙ୍କୁ କୌଶଲ୍ୟା, କୈକେୟୀ ଓ ସୁମିତ୍ରା ତିନିଜଣ ମିଶି ଆଦରରେ ଭୁଞ୍ଜେଇବା ଚିତ୍ରର ତୁଳନା ନାହିଁ (୨) । ଆମ ଘରମାନଙ୍କରେ ଏହି ସ୍ନେହ ସୋହାଗର ଚିତ୍ର ଯେତିକି ବାସ୍ତବ, ଜାଆ ଜାଆ, ଶାଶୁବୋହୂ ଆଦିଙ୍କ ମଧ୍ୟରେ କଳହ, ମନ ଫଟାଫଟିର ଚିତ୍ର ଊଣା ବାସ୍ତବ ନୁହେଁ । ବିଶେଷ

---

(୧) ସୀତାଙ୍କ ରାନ୍ଧଣା ବାଢ଼ ଓ ଅନ୍ନପରିବେଷଣ-ଲଙ୍କାକାଣ୍ଡ, ପୃଃ ୩୨୦-୨୨ ।
(୨) ଲଙ୍କାକାଣ୍ଡ, ପୃ: ୩୨୩ ।

ଭାବରେ ଶାଶୂବୋହୂ କଳି ଆମ ସମାଜରେ ଗୋଟିଏ ଅତି ପରିଚିତ ଘଟଣା । ଏହାର ମୂଳକାରଣ ହେଉଛି—ବୃଦ୍ଧା ଶାଶୂ ଶିଥିଳ ବାର୍ଦ୍ଧକ୍ୟରେ ବି ପରିବାର ଭିତରେ ଆପଣାର କର୍ତ୍ତୃତ୍ୱ ଜାରି ରଖିବାକୁ ଚାହେଁ । ଏହା ପୁଣି ସମ୍ପୂର୍ଣ୍ଣ ଭାବରେ କେବଳ ତରୁଣୀ ନବାଗତା ବଧୂ ଉପରେ । ସବୁବେଳେ ଏହାକୁ ମାନି ଚଳିବା ବୋହୂ ବିଚାରୀ ପକ୍ଷରେ ଦୁର୍ବହ ହୋଇ ପଡ଼େ । ଦୁର୍ବଳର ଶେଷ ଅସ୍ତ୍ର କ୍ରନ୍ଦନ ଯେତେବେଳେ ବିଫଳ ହୁଏ, ସହନଶୀଳତା ଯେତେ-ବେଳେ ସୀମା ଲଙ୍ଘନ କରେ, ସେତେବେଳେ ସେ ଏଇ ଅନାକାଂକ୍ଷିତ କର୍ତ୍ତୃତ୍ୱ ବିରୋଧରେ ସବାକ୍ ବିଦ୍ରୋହ ଘୋଷଣା କରେ । ଏଇଭଳି ଭାବରେ ଶାଶୂବୋହୂ କଳିର ଆରମ୍ଭ । ତରୁଣୀ ବଧୂର ସ୍ୱାମୀସୌଭାଗ୍ୟ ବୃଦ୍ଧାଶାଶୂର ଈର୍ଷ୍ୟାର ଇନ୍ଧନ ହୁଏ (୧) । ଏଇଭଳି ଶାଶୂ ବୋହୂ କଳିର ଚିତ୍ର ବଳରାମ ଦାସ ଦେଇଅଛନ୍ତି । ସସତ୍ତ୍ୱା ସୀତା ଥରେ ଋଷିମାନଙ୍କ ଆଶ୍ରମକୁ ଯାଇ ଫଳଫୁଲ ବିତରଣ କରି ଆସିବାକୁ ଇଚ୍ଛା କରିଛନ୍ତି । କୌଶଲ୍ୟା କୈକେୟୀ ସମେତ ଶ୍ରୀରାମଙ୍କ ସାତଶହ ପଚାଶ ଜନନୀ ଆସି ସୀତାଙ୍କ ବିରୋଧରେ ଅଭିଯୋଗ କରିଛନ୍ତି—"ତୁ ଶାଶୂ ମାନୁନାହୁଁ । ଗୁରୁଜନଙ୍କୁ ମାନୁନାହୁଁ । ପୁରୁଷଙ୍କ ମେଳରେ ବଣରେ ବୁଲି ଲଜ ଛାଡ଼ୁଛୁ ।" ଆଜିଠୁ ଏତିକିରେ ଶେଷ ହୋଇ ନାହିଁ । ପୁଣି ଅସୂୟା ବଶରେ କହୁଛନ୍ତି –"ସୀତା ଚତୁରୀ ନାଗରୀ । ତାର ସଉତୁଣୀ ନାହିଁ ;ଏକାକୀ ଶ୍ରୀରାମଙ୍କୁ ବଶ କରିଛି । ଯା'କୁ ରାମ କ୍ଷଣେ ହେଲେ ପାଖରୁ ଅନ୍ତର କରନ୍ତି ନାହିଁ । ଏବେ ପୁଣି ଗର୍ଭ ଉଦୟ ହେବାରୁ ତାର ଗର୍ବ ବଢ଼ିଯାଇଛି" (୨) । ଶେଷ ପର୍ଯ୍ୟନ୍ତ ଭାଗୀରଥୀ କୂଳର ଋଷି ଆଶ୍ରମକୁ ଯିବାଲାଗି ସୀତା କୌଶଲ୍ୟାଙ୍କର ସମର୍ଥନ ପାଇ ପାରି ନାହାନ୍ତି । ଶାଶୂଙ୍କ ଇଚ୍ଛା ତାଙ୍କୁ ଲଙ୍ଘନ କରିବାକୁ ହୋଇଛି । ଏଭଳି ସାନବଡ଼ ବହୁ ଘଟଣାରେ ବଳରାମ ଦାସଙ୍କ ରାମାୟଣରେ ଓଡ଼ିଆ ଗୃହସ୍ଥଳୀର ଚିତ୍ର ଜୀବନ୍ତ ହୋଇ ଉଠିଅଛି ।

**ଓଡ଼ିଆର ଖାଦ୍ୟ—**

ଓଡ଼ିଆ ସମାଜର ଏଇ ଅନ୍ତଃପୁରର ଚିତ୍ର ସହିତ ତାର ଖାଦ୍ୟପେୟ ବିଷୟରେ କବି ନିଜ ରାମାୟଣରେ ଆଲୋକପାତ କରିଅଛନ୍ତି । ସବୁ

(୧) ଲୋକ ଜୀବନର ଏପରି ଏକ ଜୀବନ୍ତ ଚିତ୍ର ଅଧ୍ୟାପକ କୁଞ୍ଜବିହାରୀ ଦାସ ଦେଇଛନ୍ତି । ଦ୍ରଷ୍ଟବ୍ୟ—A Study of Orissan Folklore—page. 15-16.

(୨) ଶାଶୂମାନଙ୍କର ସୀତାଙ୍କୁ ଭର୍ତ୍ସନା—ଉତ୍ତର, ପୃ: ୧୧୩ ।

ଦେଶରେ ବିଭିନ୍ନ ଜାତିର ଖାଦ୍ୟପେୟରେ ରୁଚିପାର୍ଥକ୍ୟ ଦେଖାଯାଏ । ଖାଦ୍ୟପେୟ ଯେଜି ଓଡ଼ିଆର ମଧ୍ୟ ଏକ ରୁଚିସ୍ୱାତନ୍ତ୍ର୍ୟ ଅଛି । ଆମ ରୁଚିରେ ଯାହା ଆଦର୍ଶ ରୂପେ ଗୃହୀତ, ଜଗନ୍ନାଥଙ୍କଠାରେ ତାହା ନୈବେଦ୍ୟରୂପେ ଅର୍ପିତ ହୁଏ । ଜଗନ୍ନାଥଙ୍କଠାରେ ସକାଳେ "ଶୀତଳ ସିଂହାର" ଭୋଗରେ— "ପାଚିଲା ଅମୃତପାଣି, କଦଳୀ, କର୍ପୂର ମରିଚ ମିଶା ଖଣ୍ଡଶାକର, ନଡ଼ିଆ-ରସ, କୋର, ସିଂହାର ଲଡୁ, ଦାଣ ଖଇଡ଼ ଓ ବିଭିନ୍ନ ଋତୁରେ ଲଭ୍ୟ ବିଭିନ୍ନ ଫଳମାନ ଭୋଗ ହୁଏ । ପୁଣି ଦ୍ୱିପହର 'ବଡ଼ ସିଂହାର' ଧୂପରେ ଷଡ଼ରସର ମନୋହର ପଦାର୍ଥ, ଶାଳିଅନ୍ନ, କ୍ଷୀର, ଦଧି, ଶୀତଳଅନ୍ନ, ନାନାପ୍ରକାର ଭଜା, ଟକାପିଠା, ସରପାପୁଡ଼ି, ଗୋଟିକା, ଛେନାଲଡ଼ୁ, ବଡ଼ା ଆଦି ସବ ରୂପେ ପରିକଳ୍ପିତ ହୋଇ ଅର୍ପିତ ହୁଏ" (୧) । ଜଗନ୍ନାଥ ମନ୍ଦିରରେ ଏଭଳି ଭୋଗ ସମ୍ଭାରର ବ୍ୟବସ୍ଥା କେବଠୁଁ କପରି ଭାବରେ ହୋଇଅଛି, ତାହା ଆମର ସାମାଜିକ ଇତିହାସରେ ଏକ ଗବେଷଣାର ବସ୍ତୁ । ନାନା ପ୍ରସଙ୍ଗରେ ବଳରାମ ଦାସ ଯେଉଁ ଷଡ଼ରସ ମନୋହର, ବ୍ୟଞ୍ଜନ, କ୍ଷୀରି, ପିଠା, ଖଜା, ଲଡ଼ୁ, ଫଳ ଓ ଫଳରସର ବର୍ଣ୍ଣନାମାନ ଦେଇଛନ୍ତି ତାହା ଜଗନ୍ନାଥ ମନ୍ଦିରରେ ହେଉଥିବା ଭୋଗର ଅନୁରୂପ (୨) । ଆମିଷ ଆହାରର ବି, ଉଲ୍ଲେଖ କରାଯାଇଛି । ଏସବୁ ପ୍ରକୃତରେ ଆମ ଜାତୀୟ-ଖାଦ୍ୟର ଆଦର୍ଶ ।

ବ୍ରାହ୍ମଣ ପ୍ରସଙ୍ଗ—

ସମାଜ ଗଠନରେ ଦୁଇଟି ଉପାଦାନ ବଡ଼ । ଗୋଟିଏ ଚାଳିତ ଅଙ୍ଗ, ଅନ୍ୟଟି ଚାଳକ ଶକ୍ତି । ତଳରୁ ଉପର ପର୍ଯ୍ୟନ୍ତ ସବୁସ୍ତରର ଅଗଣିତ ଜନସାଧାରଣହିଁ ସମାଜର ଅଙ୍ଗ । ପୁରୋହିତ, ରାଜା ବା ଶାସକ, ପଣ୍ଡିତ ଓ ବୁଦ୍ଧିଜୀବୀ ଏମାନେ ହେଉଛନ୍ତି ସମାଜର ଚାଳକଶକ୍ତି । ଦାଣ୍ଡିରାମାୟଣ ବର୍ଣ୍ଣିତ ସମାଜର ଏକ ସମ୍ପୂର୍ଣ୍ଣ ଚିତ୍ର ପାଇଁ, ଏଇ ଚାଳକଶକ୍ତି ବିଷୟରେ କବି ଯେଉଁ ସୂଚନାମାନ ଦେଇଅଛନ୍ତି ତାର ଏକତ୍ର ବିଚାର

(୧) ଦ୍ରଷ୍ଟବ୍ୟ—ଶ୍ରୀ ଜଗନ୍ନାଥ ମନ୍ଦିର—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ୫ମ ପରିଚ୍ଛେଦ । ଏଠାରେ ଜଗନ୍ନାଥ ମନ୍ଦିର ଭୋଗର ବିଶଦ ବିବରଣୀ ଦିଆଯାଇଛି ।

(୨) ସୀତାଙ୍କ ଅନ୍ନ ପରିବେଷଣ ପ୍ରସଙ୍ଗରେ ଖାଦ୍ୟର ବର୍ଣ୍ଣନା—ଲଙ୍କାକାଣ୍ଡ— ପୃ: ୩୨୨-୨୩ ।

ଅବଶ୍ୟକ । ପ୍ରଥମେ ଧରାଯାଉ ବ୍ରାହ୍ମଣ-ପ୍ରସଙ୍ଗ । ଭାରତୀୟ ସମାଜ ପଦ୍ଧତିରେ ଏମାନଙ୍କ ସ୍ଥାନ ଶୀର୍ଷ ଦେଶରେ ଥିଲା । ଏମାନେ ସମାଜର ମେଧା-ସ୍ୱରୂପ କାର୍ଯ୍ୟ କରୁଥିଲେ । ବ୍ରାହ୍ମଣ ସାହିତ୍ୟ, ମହାଭାରତ, ରାମାୟଣ ଓ ପ୍ରାଚୀନ ପୁରାଣଗ୍ରନ୍ଥଙ୍କରୁ ଏମାନଙ୍କ ସରଳ ସଂଯତ ଓ ନୈଷ୍ଠିକ ଧର୍ମ-ପରାୟଣ ଜୀବନର ପରିଚୟ ମିଳେ (୧) । ଏମାନଙ୍କର ଜୀବନଧାରଣ ପାଇଁ ମାତ୍ର ତିନୋଟି ପନ୍ଥା ନିର୍ଦ୍ଦିଷ୍ଟ ଥିଲା—ଯାଜନ ( ପୌରୋହିତ୍ୟ ), ଅଧ୍ୟାପନା ଓ ପ୍ରତିଗ୍ରହ (ଦାନ ଗ୍ରହଣ) । ପରବର୍ତ୍ତୀ କାଳରେ ଶୂଦ୍ର ଓ ବୈଦେଶିକ ଶକ, ହୁଣ ଆଦିଙ୍କ ରାଜତ୍ୱ, ବ୍ରାହ୍ମଣେତର ଧର୍ମଗ୍ରନ୍ଥଙ୍କର ପ୍ରତିଷ୍ଠା ହେତୁ ସମ୍ଭବତଃ ଏମାନଙ୍କର ପ୍ରଭାବ ସମାଜ ଉପରୁ ବହୁ ପରିମାଣରେ କ୍ଷୁଣ୍ଣ ହୋଇଥିଲା । ଏହାପରେ ଆର୍ଥିକ ଅଧୋଗତି ସହିତ ନୈତିକ-ପତନ ବି ଦେଖା ଦେଇଥିଲା । ସମାଜ ଉପରେ ପୁଣି ଥରେ ଆପଣାର ପୂର୍ବ ପ୍ରଭାବ ବିସ୍ତାର ଲାଗି ଏମାନେ ଉଦ୍ୟମ କରିଥିବାର ସାକ୍ଷ୍ୟ ପୁରାଣରୁ ମିଳେ । ଏହାକୁ ଲକ୍ଷ୍ୟକରି ଡା: ହାଜରା କହନ୍ତି– "ପୁରାଣଗ୍ରନ୍ଥକୁ ଠିକ୍‌ଏ ଟଭୀର ଭାବେ ଆଲୋଚନା କଲେ ଦେଖିବାକୁ ମିଳିବ, ଏହା ପଛରେ ଏକ ବ୍ୟକ୍ତିଗତ ସ୍ୱାର୍ଥ କାମ କରୁଥିଲା । ସାଧାରଣ ଭାବରେ ବ୍ରାହ୍ମଣ୍ୟ-ସଂସ୍କୃତିର ରକ୍ଷା ପାଇଁ ନୁହେଁ, ବ୍ରାହ୍ମଣମାନଙ୍କର ନିଜର ଆର୍ଥିକ ଓ ସାମାଜିକ ପ୍ରତିପତ୍ତି ହାସଲ କରିବାପାଇଁ ଉଦ୍ୟମ ଭିତରେହିଁ ,ପୌରାଣିକ ଧର୍ମର ବିକାଶ ଘଟିଥିଲା" (୨) । ଏହାର ଶେଷ ପରିଣାମ ଭଲ ହୋଇ ନ ଥିଲା । ଆର୍ଥିକ ଓ ନୈତିକ ଉଭୟ ଦିଗରେ ଅଧଃପତନର ମାତ୍ରା ନ କମି,ବରଂ ବଢ଼ି ଚାଲିଥିଲା । ବଳରାମ ଦାସଙ୍କ ରାମାୟଣରେ ବ୍ରାହ୍ମଣତ୍ୱର ଅବମାନନା କରା ହୋଇନାହିଁ । ବରଂ ବ୍ରାହ୍ମଣଙ୍କୁ ଭକ୍ତି କରିବା, ଦାନ ଦେବାଲାଗି ପ୍ରେରଣା ଦିଆଯାଇଛି । ତଥାପି ନାନା ପ୍ରସଙ୍ଗରେ ବ୍ରାହ୍ମଣମାନଙ୍କର ଯେଉଁ ଚିତ୍ର ଦିଆଯାଇଅଛି—ତାହା ସେମାନଙ୍କର ଚରମ ଅଧୋଗତି, ମାନସିକ ଦାରିଦ୍ର୍ୟ ଓ ପତନର ସୂଚନା ଦିଏ ।

ଗୟା ତୀର୍ଥରେ ଶ୍ରୀରାମ, ଲକ୍ଷ୍ମଣ, ଓ ସୀତାଙ୍କ ପ୍ରତି ବ୍ୟବହାରରୁ ବ୍ରାହ୍ମଣମାନଙ୍କ ଅପକର୍ମର ପରିଚୟ ବଳରାମ ଦାସ ଦେଇଅଛନ୍ତି (୩) । ରାମ, ସୀତା ଓ ଲକ୍ଷ୍ମଣ ଗୟା ତୀର୍ଥରେ ପିଣ୍ଡ ଦେଇ ଫେରିବାବେଳେ ବ୍ରାହ୍ମଣମାନେ ଦକ୍ଷିଣା ପାଇଁ ତାଙ୍କର ପଥ ଓଗାଳିଲେ । ରାମଚନ୍ଦ୍ର ନିଜେ

(୧) ଓ (୨)—R. C. Hazra [P. R. H. R. C.] page. 243.
(୩) ଗୟାତୀର୍ଥରେ ବ୍ରାହ୍ମଣଙ୍କ ଜଞ୍ଜାଳ—ଅରଣ୍ୟକ କାଣ୍ଡ, ପୃ:୧୪-୧୬ ।

ଗୃହତ୍ୟାଗୀ, ବନବାସୀ ଓ କପର୍ଦ୍ଦକଶୂନ୍ୟ ବୋଲି କହି, ସେମାନଙ୍କୁ ମଥ ଛାଡ଼ିଦେବାକୁ ଅନୁରୋଧ କଲେ । କିନ୍ତୁ ବ୍ରାହ୍ମଣମାନଙ୍କର ଲୋଭ ଆଗରେ ରାମଚନ୍ଦ୍ରଙ୍କ ଅନୁରୋଧ ବିଫଳ ହେଲା । ବ୍ରାହ୍ମଣମାନେ ସୀତାଙ୍କ ଅଳଙ୍କାର ପ୍ରତି ଲୋଭ କଲେ । ଯୁବତୀଙ୍କ ବସ୍ତ୍ର ଦେବା ଅପୁରୁଷାର୍ଥ ବୋଲି ରାମଚନ୍ଦ୍ର ଏଥିରେ ଅମଙ୍ଗ ହେଲେ । ବ୍ରାହ୍ମଣମାନେ ଉତ୍ତ୍ୟକ୍ତ ହୋଇ ସୀତାଙ୍କ ଅଳଙ୍କାରତକ ଲୁଟି ନେବାକୁ ଚାହିଁଲେ । ଲକ୍ଷ୍ମଣ ଶସ୍ତ୍ର ଧରି ପ୍ରତିରୋଧ କରିବାରୁ ରାମଚନ୍ଦ୍ର ସୀତାଙ୍କୁ ଧରି ସେଠାରୁ ପଳାଇ ଯିବାକୁ ସମର୍ଥ ହେଲେ । ଫଲ୍‌ଗୁ ନଦୀ ତୀର୍ଥକୁ ଜୀବନକାଳ ମଧ୍ୟରେ କେବେ ନ ଯିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇ ବ୍ରାହ୍ମଣମାନଙ୍କ ପ୍ରତି ରାମଚନ୍ଦ୍ର ଯେଉଁ ଉକ୍ତି ପ୍ରକାଶ କରିଥିଲେ, ତାର ସାର ମର୍ମ ହେଉଛି—"ତୀର୍ଥର ବ୍ରାହ୍ମଣମାନେ ମିଛରେ ବ୍ରାହ୍ମଣ ବୋଲାଉ ଅଛନ୍ତି । ସେମାନେ ସର୍ବଦା ଦରିଦ୍ର ହୋଇ ରହିବେ । ଦାନକର ଅର୍ଜନ ଆଉ ଦାନକୁ ନିଅଣ୍ଟ ହେବ । ଘରେ ଲକ୍ଷେ ଧନ ଥିଲେ ବି, ଏମାନେ ଭିକ୍ଷାବୃତ୍ତି ଅବଲମ୍ବନ କରିବେ । ପୁଣି ଏମାନେ ସମସ୍ତେ ବ୍ରାହ୍ମଣ କର୍ମ ଛାଡ଼ି ବୈଶ୍ୟ (ବଣିକାର) ହେବେ । ବାଳ ବୃଦ୍ଧ ଯୁବା କେହି ବଣିଜ ନ କରି ରହିବେ ନାହିଁ । ଲାଭ ଆଶାରେ ଏମାନେ ପୁତ୍ର କନ୍ୟାମାନଙ୍କୁ (ତନୁଜ) ମଧ୍ୟ ବିକିବାକୁ ଛାଡ଼ିବେ ନାହିଁ ।" ଏହାହିଁ ଥିଲା ବଳରାମ ଦାସଙ୍କ ସମୟରେ ବ୍ରାହ୍ମଣମାନଙ୍କର ଶୋଚନୀୟ ପରିସ୍ଥିତି । ଏଠାରେ ଲକ୍ଷ୍ୟ କରିବାର କଥା, ବ୍ରାହ୍ମଣମାନେ ଅପଣାର କୁଳକର୍ମ କରି ନ ପାରିଲେ, କ୍ଷତ୍ରିୟ ଓ ବୈଶ୍ୟକର୍ମ କରିବାର ବିଧି ମନୁ ଓ ଗୌତମ ଆଦି ସ୍ମୃତିଗ୍ରନ୍ଥ, ବିଷ୍ଣୁ, କୂର୍ମ ଆଦି ପୁରାଣଗୁଡ଼ିକରେ ନିର୍ଦ୍ଦେଶ ଦିଆ ଯାଇଅଛି । ତେବେ ଏହିଭଳି ଭାବରେ ବ୍ରାହ୍ମଣେତର ଜାତିର ଜୀବିକା ଗ୍ରହଣ କରୁଥିବା ବ୍ରାହ୍ମଣମାନେ ସର୍ବଦା ନୀଚ ବୋଲି ପରିଗଣିତ ହେଉଥିଲେ । ପୌରୋହିତ୍ୟ ପାଇଁ ବିବେଚିତ ହେଉ ନ ଥିଲେ (୧) ।

ତାଙ୍କ ସମୟରେ ରାଜଦରବାରରେ ବ୍ରହ୍ମଣଙ୍କର ସ୍ଥାନ ବିଷୟରେ ମଧ୍ୟ ବଳରାମ ଦାସ ସୂଚନା ଦେଇଅଛନ୍ତି । ରାଜଦରବାରରେ ଏମାନେ ଏକ ପ୍ରକାର ତୋଷାମୋଦକାରୀ ରୂପେ ରହୁଥିଲେ । ରାଜାଙ୍କର ସମସ୍ତ ପ୍ରକାର କାମକୁ ସମର୍ଥନ କରି, କୌଣସି ପ୍ରକାରେ ଉଦର ପୋଷଣ ଏମାନଙ୍କର ଜୀବିକା ଥିଲା । ଅଯୋଧ୍ୟାର ସିଂହାସନରେ ଅଭିଷିକ୍ତ ହେବା

(୧) R.C. Hazra-ଏଜନ ପୃ: ୨୪୪ ।

ପୂର୍ବରୁ ବ୍ରାହ୍ମଣଙ୍କଠାରୁ ରାମଚନ୍ଦ୍ର ବର ମାଗି ନେଇଛନ୍ତି ଯେ, ବ୍ରାହ୍ମଣମାନେ ତାଙ୍କର ପ୍ରଧାନ ସେବକ ହେବେ । ତାହା ହେଲେ, ଦୁନିଆରେ ରାଜାରୂପେ ତାଙ୍କର ପ୍ରତିଷ୍ଠା ବଢ଼ିବ । ନିୟମ ଅନିୟମ ସମୟରେ ବିପ୍ରମାନେ ରାଜାଙ୍କୁ ସମର୍ଥନ କରିବାକୁ ଥିବେ । ବିପ୍ରମାନେ ତାଙ୍କର ସମସ୍ତ ସେବା କଲେ, ସେ ଲୋକରେ ବିଷ୍ଣୁ ରୂପେ ସମ୍ମାନିତ ହେବେ (୧) ।

ପ୍ରଥମ ସାକ୍ଷାତ ସମୟରେ ବିଭୀଷଣ ଓ ରାମଚନ୍ଦ୍ରଙ୍କ କଥୋପକଥନରେ କଳିଯୁଗରେ ବ୍ରାହ୍ମଣମାନଙ୍କର ଚରମ ଅଧୋଗତିର ଚିତ୍ର ପ୍ରକାଶିତ ହୋଇଅଛି । ଏଠାରେ କୁହା ଯାଇଅଛି—(୨) କଳିଯୁଗରେ ବ୍ରାହ୍ମଣ ହୋଇ ଜନ୍ମ ହେବା ପାପ । ଏମାନେ ନାନା ପାପକର୍ମରେ ଲିପ୍ତ ରହି ନରକରେ ପଡ଼ନ୍ତି । ସେମାନେ ଅନାଚାରୀ ଶୂଦ୍ରଙ୍କ ସହ ପ୍ରୀତି କରନ୍ତି । ସଂଯମ ପାଳନ କରନ୍ତି ନାହିଁ । ସନ୍ଧ୍ୟା, ଗାୟତ୍ରୀ, ଅଗ୍ନିପୂଜା ଓ ବସୁଦେବ ଆଦି କରନ୍ତି ନାହିଁ । ପ୍ରାଣୀମାନଙ୍କ ପ୍ରତି ଅବଗୁଣ ରଖନ୍ତି ।

ବ୍ରାହ୍ମଣମାନଙ୍କ ପ୍ରସଙ୍ଗରେ ଦାଣ୍ଡି ରାମାୟଣରୁ ବଳରାମ ଦାସଙ୍କ ମତମାନ ବିଚାର କଲେ ଜଣାଯାଏ, ସମାଜରେ ଆଦର୍ଶ ବ୍ରାହ୍ମଣତ୍ୱର ପ୍ରତିଷ୍ଠାକୁ ଭକ୍ତକବି କେଉଁଠି ଅସମ୍ମାନ ଦେଖାଇ ନାହାନ୍ତି । ବରଂ ବ୍ରାହ୍ମଣ୍ୟ-ସଂସ୍କୃତିର ଯାହା ଶ୍ରେଷ୍ଠ ସମ୍ପଦ ତାକୁ ଆପଣା ଗ୍ରନ୍ଥରେ ପ୍ରକାଶ କରି ଅଛନ୍ତି । କିନ୍ତୁ, ସମାଜରେ ଯେ ଆଦର୍ଶ ବ୍ରାହ୍ମଣର ଅଭାବ ଥିଲା—ଏହା ସ୍ପଷ୍ଟରୂପେ ଜଣାଯାଏ । ବେଦାନ୍ତ ସାର ଗୁପ୍ତଗୀତା ଆଦିରେ ଯେଉଁ ଅହଂଗର୍ବୀ ବ୍ରାହ୍ମଣମାନଙ୍କୁ ଜ୍ଞାନ ଦେବା ପାଇଁ, ବଳରାମଦାସ ବେଦାନ୍ତର ତତ୍ତ୍ୱମାନ ବ୍ୟାଖ୍ୟା କରି ବୁଝାଇଥିଲେ, ସେଇମାନଙ୍କର ଚିତ୍ର ତାଙ୍କ ରାମାୟଣରେ ଦେଇଥିବା ସମ୍ଭବ ।

## ରାଜା ରାଜ୍ୟ ଓ ରାଜଧର୍ମ—

ବଳରାମ ଦାସଙ୍କ ରାମାୟଣରେ ଏକାଧିକ ସ୍ଥଳରେ ରାଜଧର୍ମ, ରାଜାଙ୍କ କର୍ତ୍ତବ୍ୟ, ଶାସନ, ସମର ବର୍ଣ୍ଣନ ଆଦି ରାଜନୀତି ସଂପର୍କୀୟ ପ୍ରସଙ୍ଗମାନ ଦେଖିବାକୁ ମିଳେ । ସେ ସମୟର ପରିସ୍ଥିତି ଉପରେ ଏହା କେତେଦୂର ଆଲୋକପାତ କରେ—ତାହା ଐତିହାସିକମାନଙ୍କର ବିଚାର୍ଯ୍ୟ । ତେବେ ଐତିହାସିକମାନେ ଏ ବିଷୟରେ ଏକମତ ଯେ, "ମଧ୍ୟଯୁଗର ହିନ୍ଦୁ ରାଜତ୍ୱରେ ସାମାନ୍ୟ କେତୋଟି ପରିବର୍ତ୍ତନକୁ ବାଦ ଦେଲେ, ପ୍ରାଚୀନ

(୧) ଲଙ୍କାକାଣ୍ଡ, ଏଜନ ୩୨୧ ।

(୨) ବିଭୀଷଣ ଓ ରାମଚନ୍ଦ୍ରଙ୍କ ସାକ୍ଷାତ୍, ସୁନସ, ପୃ: ୯୮ ।

ଶାସନ ପଦ୍ଧତି ହିଁ ପ୍ରଚଳିତ ହେଉଥିଲା । ଏହି ଶାସନଧାରାର ସ୍ପଷ୍ଟ ବର୍ଣ୍ଣନା ସ୍ମୃତି ଓ ନୀତିଶାସ୍ତ୍ର ତଥା କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଆଦିରୁ ମିଳି ଥାଏ (୧) । ନୀତିଶାସ୍ତ୍ର ପଢ଼ି ଆଗୁର ବ୍ୟବହାର ସ୍ଥିର କରିବା ରାଜାର କର୍ତ୍ତବ୍ୟ ବୋଲି ବଳରାମ ଦାସ ବହୁସ୍ଥଳରେ ଉଲ୍ଲେଖ କରିଅଛନ୍ତି । ତହିଁ ପ୍ରାଚୀନ ନୀତିଶାସ୍ତ୍ରଗ୍ରନ୍ଥଙ୍କୁ ଆଦର୍ଶ ରୂପେ ଗ୍ରହଣ କରିଥିବାର ସୂଚନା ମିଳେ ।

ଅର୍ଥଶାସ୍ତ୍ରରେ କୁହା ଯାଇଛି—"ଯେଉଁ ରାଜା ବିଦ୍ୟାବିନୟପୂର୍ଣ, ଅଧୀତ-ବିଜ୍ଞାନ, ପ୍ରଜାବର୍ଗର ସୁଶାସନରେ ନିୟୋଜିତ, ନିଖିଳର ମଙ୍ଗଳ ସାଧନରେ ଅଗ୍ରହୀ, ସେ ନିଷ୍କଣ୍ଟକ ରାଜ୍ୟ ଭୋଗ କରିଥାଆନ୍ତି" (୨) । ଏହା ଭାରତୀୟ ରାଜଧର୍ମର ଚିରାଚରିତ ଆଦର୍ଶ । ଏହାର ବିକାଶ ଦେଖିବାକୁ ମିଳେ ବଳରାମ ଦାସଙ୍କ ରାମାୟଣରେ । ଋଷ୍ୟଶୃଙ୍ଗଙ୍କର ଦଶରଥଙ୍କୁ କୁଶଳ ପ୍ରଶ୍ନ, ଅଭିଷେକ ପୂର୍ବରୁ ରାମଚନ୍ଦ୍ରଙ୍କୁ ଦଶରଥଙ୍କର ରାଜଧର୍ମ ଶିକ୍ଷା, ଭରତଙ୍କୁ ଶ୍ରୀରାମଙ୍କର ରାଜଧର୍ମ ବିଷୟକ ଉପଦେଶ, ଅଗସ୍ତିଙ୍କର ରାମଚନ୍ଦ୍ରଙ୍କୁ ରାଜଧର୍ମ ଶିକ୍ଷା ଆଦି ପ୍ରସଙ୍ଗରେ ମୂଳତଃ ଏହି ଆଦର୍ଶହିଁ ଫୁଟିଛି (୩) ।

ଧର୍ମାଚରଣ ଓ ଇନ୍ଦ୍ରିୟ ସଂଯମ ବ୍ୟକ୍ତିଗତ ଜୀବନରେ ରାଜାର ଆଦର୍ଶ ଥିଲା । ଯୁବରାଜ ଭାବେ ଅଭିଷେକ ପୂର୍ବରୁ ରାମଚନ୍ଦ୍ରଙ୍କୁ ଉପଦେଶ ଦେଇ ରାଜା ଦଶରଥ କହିଛନ୍ତି- "ସ୍ତ୍ରୀମାନଙ୍କଠାରେ ଆସକ୍ତ ହେବା ରାଜପୁତ୍ର ପକ୍ଷରେ ମୋଟେ ଉଚିତ ନୁହେଁ । ଏଥିରେ ଚିତ୍ତ ବିକୃତ ହୁଏ । ଟଙ୍କୋରେ କଷ୍ଟ କଲେ ।" ଆହୁରି କହିଛନ୍ତି—"ଦାନ ଓ କ୍ଷମା ତୋର ଗୁଣ ହେବା ଉଚିତ । ହେବା ଓ ଦିଆଇବା ଆଦର୍ଶ ନିକେ ଅନୁସରଣ କରିବୁ ।" ବିନୟ ଓ ସଂଯମର ଆଦର୍ଶ ଗ୍ରହଣ କରି ବିଗ୍ରହବନ୍ତ ହେବ ରାଜାର କର୍ତ୍ତବ୍ୟ ବୋଲି ମହର୍ଷି ବାଲ୍ମୀକି ମଧ୍ୟ ଏହି ସ୍ଥଳରେ ସୂଚିତ କରିଅଛନ୍ତି । ଦଶରଥଙ୍କ ମୁଖରେ କୁହାଇଛନ୍ତି- "ହେ ପୁତ୍ର, ତୁ ବିନୟୀ ସତ, ତଥାପି ଆହୁରି ବିନୟ ଅବଲମ୍ବନ କର । ସର୍ବଦା ଇନ୍ଦ୍ରିୟ ସଂଯମ କର । କାମ ଓ କ୍ରୋଧରୁ ଯେଉଁ ବ୍ୟସନ

(୧) Down-fall of Hindu India by C. V. Vaidya. Poona 1929. page. 457.

(୨) R. Shamsastryଙ୍କ ଅନୂଦିତ ଅର୍ଥଶାସ୍ତ୍ର-ବାଙ୍ଗାଲୋର ୧୯୧୫-ପୃ: ୧୧ ।

(୩) ଏହି ପ୍ରସଙ୍ଗଗୁଡ଼ିକ ଯଥାକ୍ରମେ, ଆଦିକାଣ୍ଡ, ପୃ: ୩୧, ଅଯୋଧ୍ୟା, ପୃ: ୬୧ ଅଯୋଧ୍ୟା, ପୃ: ୮୭ ଓ ଉତ୍ତର ପୃ: ୪ ୍ରେ ୫ ରେ ଦ୍ରଷ୍ଟବ୍ୟ ।

ଜନ୍ମେ, ତାହା ପରିତ୍ୟାଗ କର । ପରୋକ୍ଷ ଓ ପ୍ରତ୍ୟକ୍ଷ ବିଗ୍ରହ ଦ୍ୱାରା ପ୍ରଜା-ପାଳନରେ ତତ୍ପର ହୋଇ ଅମାତ୍ୟଗଣ ସମେତ ପ୍ରଜାବର୍ଗଙ୍କୁ ଅନୁରଞ୍ଜିତ କର । ଅସ୍ତ୍ରାଗାର, ଧନାଗାର ଓ ଧାନ୍ୟାଗାର ପରିପୂର୍ଣ୍ଣ କରି ରଖ । ଯେ ପ୍ରକୃତିବର୍ଗଙ୍କୁ ତୁଷ୍ଟ ଓ ଅନୁରଞ୍ଜିତ କରି ପ୍ରଜାପାଳନ କରି ପାରନ୍ତି, ଅମୃତ ଲାଭକରି ଦେବତାଗଣ ପ୍ରୀତ ହେଲା ପରି, ମିତ୍ରଗଣ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ଥାନ୍ତି (୧) ।”

ଦେଶ, ପ୍ରଜା, ଅମାତ୍ୟ, ବନ୍ଧୁ, ଭଣ୍ଡାର, ସୈନ୍ୟ ଓ ଭୃତ୍ୟ ଏଇ ସାତ ଅଙ୍ଗର ସମାବେଶରେ ରାଜା ମହାଶ୍ରୋତ କରନ୍ତି ବୋଲି ବଳରାମ ଦାସ କହିଅଛନ୍ତି (୨) । ରାଜତ୍ୱର ପ୍ରଥମ ଆବଶ୍ୟକତା ଦେଶ ଓ ପ୍ରଜାଙ୍କ ପରେ କବି ଅମାତ୍ୟଙ୍କୁ ସ୍ଥାନ ଦେଇଅଛନ୍ତି । ଦୁରୂହ ରାଜକାର୍ଯ୍ୟରେ ରାଜାର ପ୍ରଧାନ ସହାୟକ ମନ୍ତ୍ରୀ ବା ଅମାତ୍ୟ । ଏହାର ଗୁରୁତ୍ୱ ଉପଲବ୍ଧି କରି ଅର୍ଥଶାସ୍ତ୍ରରେ କୌଟିଲ୍ୟ କହିଛନ୍ତି—“ସହଯୋଗିତାରେହିଁ ରାଜତ୍ୱ ସମ୍ଭବ । ଗୋଟିଏ ଚକରେ ଗତି ସମ୍ଭବ ନୁହେଁ । ତେଣୁ ରାଜା ମନ୍ତ୍ରୀ ନିଯୋଗ କରିବେ ଓ ସେମାନଙ୍କ ମତ ପ୍ରତି ଅବହିତ ହେବେ (୩) ।” ମନ୍ତ୍ରୀ ଓ ଅମାତ୍ୟଙ୍କୁ ପୁତ୍ରବତ୍ ପାଳିବା, ପୁରାତନ ଅମାତ୍ୟଙ୍କ ମତ ପ୍ରତି ସମ୍ମାନ ଦେବା, ବିଶ୍ୱାସୀ ମନ୍ତ୍ରୀଙ୍କୁ ଆପଣାର ରକ୍ଷାଭାର ଦେବା (ଶିର ସମର୍ପିବା) ରାଜାର କର୍ତ୍ତବ୍ୟ । ଏମାନଙ୍କୁ ନିଯୁକ୍ତ କରିବାବେଳେ ରାଜାଙ୍କର ସତର୍କତା ଅବଲମ୍ବନ କରିବା ବାଞ୍ଛନୀୟ । ଅମାତ୍ୟ ତଥା ଅନ୍ୟ ରାଜସେବକଗଣ ଯେପରି ଗର୍ବୀ ଓ ଉଦ୍ଧତ ନ ହୁଅନ୍ତି ସେଥିପ୍ରତି ରାଜାଙ୍କର ଦୃଷ୍ଟିଦେବା ଉଚିତ । ଉଦ୍ଧତ ହେଲେ ଏମାନେ ଆଜ୍ଞା ଲଙ୍ଘନ କରନ୍ତି । ଫଳରେ କାର୍ଯ୍ୟ ନଷ୍ଟ ହୁଏ । ସତ୍‌ସଙ୍ଗ ସତ୍‌ମାର୍ଗ ଅନୁସରଣ ପାଇଁ ପ୍ରେରଣା ଦିଏ । ଏଣୁ ବ୍ରାହ୍ମଣ, ଜ୍ଞାନୀ, ଇନ୍ଦ୍ରିୟ ନିଗ୍ରହୀ ଲୋକମାନଙ୍କର ସଙ୍ଗଲାଭ ରାଜାର କର୍ତ୍ତବ୍ୟ । ଦଣ୍ଡ, ସାମ ଓ ଭେଦ ନୀତିରେ ରାଜ୍ୟଶାସନ କରିବା, ସୈନ୍ୟ,

---

(୧) ବାଲ୍ମୀକି ରାମାୟଣ, ଅଯୋଧ୍ୟା, ୧୦୦ ସର୍ଗ—ଶ୍ଳୋ ୪୩-୪୭ ।

(୨) “ଦେଶ ପରଜା ଅମାତ୍ୟ ବନ୍ଧୁ ଯେ ଭଣ୍ଡାର,
ସୈନ୍ୟ ଭୃତ୍ୟ ସମୂହ ଏ ସାତ ପରକାର ।
ଏହାଙ୍କୁ ଯେତେକ ଏକାଙ୍ଗ କରଣ ସମ୍ଭାଳ
ତେତେକେ ପ୍ରାପତ ହୁଅଇ ମହାସ୍ଥଳୀ । ଅଯୋଧ୍ୟା, ପୃ:୨୨ ।

(୩) ଏକାଳ ଅର୍ଥଶାସ୍ତ୍ର, ପୃ: ୧୪ ।

ସେନାପତି, ରାଉତ-ମାହୁନ୍ତମାନଙ୍କୁ ଅଧିକ ବେତନ ଦେଇ ଆପଣାର କରି ରଖିବା ରାଜାର ପ୍ରଥମ କାମ ।

ରାଜା ଆପଣାର ସୁଖ ପାଇଁ ରାଜ୍ୟଭାର ଗ୍ରହଣ କରନ୍ତି ନାହିଁ । ପ୍ରଜାଙ୍କ ମଙ୍ଗଳ ପାଇଁ, ଦେଶ-ରକ୍ଷା ଓ ସମାଜର ବିକାଶ ଲାଗି ରାଜଦଣ୍ଡ ଧାରଣ କରିଥାଆନ୍ତି । ପଥିକ ଓ ବଣିକମାନଙ୍କୁ ସାହାଯ୍ୟ କରିବା, ଗ୍ରୀଷ୍ମରେ ଜଳଛତ୍ର ଖୋଲିବା, ସାଧାରଣଙ୍କର ଶିକ୍ଷା ଓ ଶାସ୍ତ୍ର ଆଲୋଚନା ପାଇଁ ମଠ ଓ ପାଠଶାଳାମାନ ବସାଇବା, ମନ୍ଦିର ତୋଳାଇବା ଆଦି ରାଜାର ପୁଣ୍ୟ କର୍ତ୍ତବ୍ୟ ରୂପେ ଗ୍ରହଣ କରାଯାଇଛି । ବଳରାମ ଦାସ ଯେପରି ଆଦର୍ଶ ରାଜ୍ୟର ପରିକଳ୍ପନା କରିଅଛନ୍ତି, ତାଙ୍କ ପୂର୍ବରୁ କବି ଉଦୟନାଚାର୍ଯ୍ୟ ମେଘେଶ୍ୱର ଦେଉଳରେ ଥିବା ସ୍ୱପ୍ନେଶ୍ୱର ଦେବଙ୍କ ପ୍ରଶସ୍ତିଲେଖାରେ ଅନୁରୂପ ଚିତ୍ର ଦେଇଅଛନ୍ତି । ସ୍ୱପ୍ନେଶ୍ୱର ଦେବଙ୍କ ରାଜ୍ୟର "ପ୍ରତି ପଥରେ ଜଳଛତ୍ର; ପ୍ରତି ପୁରରେ ପୁଷ୍କରିଣୀ, ପ୍ରତ୍ୟେକ ଦେବମନ୍ଦିର ଉଜ୍ଜ୍ୱଳ ପ୍ରଦୀପମାଳାରେ ପୂର୍ଣ୍ଣ, ବ୍ରହ୍ମଅଢ଼େ ବେଦାଭ୍ୟାସ ଲାଗି ମଠ ଓ ଶାସନ, ଆଉ ଚତୁର୍ଦ୍ଦିଗ ଛତ୍ର ଓ ସେତୁରେ ପରିଶୋଭିତ ହୋଇଥିଲା (୧) ।

ସମାଜରେ ଆଦର୍ଶ ବ୍ରାହ୍ମଣତ୍ୱର ପ୍ରତିଷ୍ଠା ଭଳି ଦେଶରେ ଆଦର୍ଶ ରାଜଧର୍ମର ପ୍ରତିଷ୍ଠା ବଳରାମ ଦାସଙ୍କର ଲକ୍ଷ୍ୟ ଥିଲା । କଳିଯୁଗରେ ରାଜ-ପ୍ରସଙ୍ଗ ଓ ପ୍ରଜାଙ୍କ ଅବସ୍ଥା ବର୍ଣ୍ଣନାରୁ ଅନୁମିତ ହୁଏ, ରାଜାମାନେ ପ୍ରାଚୀନ ଆଦର୍ଶ ଅନୁସରଣ କରୁ ନ ଥିଲେ । ପ୍ରଜାମାନେ ଅସୀମ ଦୁଃଖ ଦୁର୍ଦ୍ଦଶା ମଧ୍ୟରେ କାଳ ବିତାଉଥିଲେ (୨) । କଳିଯୁଗରେ ପାପାଚାରୀ ପ୍ରଜାଙ୍କ ପାପ ରାଜାକୁ ଲାଗେ । ଏହି ପାପର ଫଳ ରାଜା ଭୋଗ କରନ୍ତି । ରାଜା ରାଜ୍ୟପାଳନ କରନ୍ତି ନାହିଁ । ଶତ୍ରୁର ପ୍ରତିରୋଧ ପାଇଁ ସମର୍ଥ ହୁଅନ୍ତି ନାହିଁ (ରାଜା ପ୍ରତାପରୁଦ୍ରଙ୍କ ପରାଜୟ ସୂଚନା କି ?) । ନିଶ୍ଚିନ୍ତ ହୋଇ ଆପଣା ପୁରରେ ରହନ୍ତି । ଏହାଦ୍ୱାରା ପ୍ରତିଦିନ ପାପ ଆଚରଣ କରନ୍ତି । ସେ କଳ୍ପେ ପର୍ଯ୍ୟନ୍ତ ନରକଭୋଗ କରନ୍ତି । ପଶୁଯୋନିରେ ଜନ୍ମ ନିଅନ୍ତି ।

---

(୧) ଅପାଂ ଶାଳା ମାଲାଃ ପଥି ପଥି ତଡ଼ାଗାଃ ପ୍ରତିପୁରଂ
ପ୍ରଦୀପାଃ ସମ୍ପୂର୍ଣ୍ଣାଃ ପ୍ରତିସୁରଗୃହଂ ଯସ୍ୟ ବିମଳଂ ।
ମଠା ବେଦାଧାନାଂ ଦ୍ୱିଜପୁର ବିହାରାଃ ପ୍ରତିଦିଶଂ
ବିରାଜନ୍ତେ ସତ୍ରାଣ୍ୟପି ଚ ପରିତଃ ସେତୁ ନିବହାଃ ॥

(୨) କଳିଯୁଗ ବର୍ଣ୍ଣନା, ସୁନ୍ଦରା, ପୃ: ୯୯ । ଗୁହାରିଆ ଓ ଭରତ, ଲଙ୍କା, ପୃ: ୩୪୯

ଗୁହାରିଆ ପ୍ରତି ଭରତ ଅଭିଶାପ ଦେଇ କହୁଛନ୍ତି—"କଳିଯୁଗରେ ପ୍ରଜାମାନଙ୍କର କଷ୍ଟର ସୀମା ନାହିଁ । ସେମାନଙ୍କୁ କେବେ ଅନ୍ନବସ୍ତ୍ର ଜୁଟିବ ନାହିଁ । ରାଜାଙ୍କ ମନରେ ପ୍ରଜାଙ୍କ ପ୍ରତି ଦୟା ନ ଥାଏ । ପ୍ରଜାଙ୍କ ଶତ୍ରୁ ରାଜାମାନେ ନିର୍ଦ୍ଦୟଭାବେ ଲୁଟି କରନ୍ତି । ରାଜକୁଳ ଭ୍ରାତୃଗଣଙ୍କ ଉପରେ ମଧ୍ୟ ପ୍ରକାର ବିଶ୍ୱାସ ନ ଥାଏ । ସମୟରେ ତାହା ପରକୁ ଭୋଗ ହୁଏ ।"

**ସମର ପ୍ରସଙ୍ଗ—**

ଭାରତୀୟ ପୌରାଣିକ ଓ କାବ୍ୟ ସାହିତ୍ୟରେ ଯୁଦ୍ଧ, ଦୁର୍ଗରକ୍ଷା ଆଦିର ଯେଉଁ ବର୍ଣ୍ଣନାମାନ ମିଳେ, ସେଥିରେ ସାଧାରଣତଃ ବହୁ ମାତ୍ରାରେ ଅତିରଞ୍ଜନ ଓ ଅମାନୁଷିକ ପରିକଳ୍ପନାମାନ ପରିଦୃଷ୍ଟ ହୁଏ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଏହି ପରମ୍ପରାରୁ ମୁକ୍ତ ନୁହେଁ । ଏଥିରୁ କୌଣସି ଐତିହାସିକ ସମୟ ବିଶେଷର ସମର ବିଜ୍ଞାନ ବିଷୟରେ ସଂପୂର୍ଣ୍ଣ ବାସ୍ତବତାମୂଳକ ଚିତ୍ର ଉଦ୍ଧାର କରିବା ଅସମ୍ଭବ । ଏହା ବ୍ୟତୀତ ଏଠାରେ ସ୍ମରଣ ରଖିବା ଉଚିତ—ବାଲ୍ମୀକି ରାମାୟଣ ଅଥବା ଦାଣ୍ଡି ରାମାୟଣ କାହିଁରେ ସମର ବର୍ଣ୍ଣନାର ପ୍ରାଧାନ୍ୟ ନାହିଁ । ପୁଣି ଏହାର ପ୍ରତିପକ୍ଷମାନେ ହେଉଛନ୍ତି ବାନର ଓ ରାକ୍ଷସ । ପୌରାଣିକ କଳ୍ପନାର ବାହାରକୁ ଆସି ବାସ୍ତବ ଜଗତର ଚିତ୍ର ଦେବାର ପରିସର ସ୍ୱାଭାବିକ ଭାବରେ ସଙ୍କୁଚିତ । ତଥାପି ଯେଉଁଠି ଅବସର ମିଳିଛି, କବି ବଳରାମ ବାସ୍ତବ ଜଗତ ଉପରେ ଆଲୋକପାତ କରିଅଛନ୍ତି । ସେଥିରୁ ସେ ସମୟର ଗଡ଼ରକ୍ଷା, ଗଡ଼ ଅବରୋଧ, ସୈନ୍ୟ ପରିଚାଳନା ଓ ଅସ୍ତ୍ର ଶସ୍ତ୍ର ଆଦି ବିଷୟରେ ଇଙ୍ଗିତ ମିଳେ ।

ଶକ୍ତିଶାଳୀ ଆଗ୍ନେୟାସ୍ତ୍ରଗୁଡ଼ିକର ଉଦ୍ଭାବନ ହୋଇ ନ ଥିବାରୁ ମଧ୍ୟଯୁଗରେ ଦୁର୍ଗମାନଙ୍କର ବିଶେଷ ଉପଯୋଗିତା ଥିଲା । ସୁରକ୍ଷିତ ଦୁର୍ଗସଂଖ୍ୟା ଅନୁସାରେ ରାଜ୍ୟର ସାମର୍ଥ୍ୟ କଳନା କରାଯାଉଥିଲା । ଦଶରଥଙ୍କୁ ବିଶ୍ୱାମିତ୍ରଙ୍କ କୁଶଳ ପ୍ରଶ୍ନ (୧) ପ୍ରସଙ୍ଗରୁ ସୂଚନା ମିଳେ—ସୁଗଭୀର ଜଳପୂର୍ଣ୍ଣ ଖାଇ ଓ ଖଣ୍ଡା ସାହାଯ୍ୟରେ ଦୁର୍ଗଗୁଡ଼ିକ ସୁରକ୍ଷିତ ହେଉଥିଲା । ଦୁର୍ଗର ବାହାର ପ୍ରାଚୀରକୁ ସୁଦୃଢ଼ ଓ ସୁଉଚ୍ଚ କରାଯାଉଥିଲା । ପ୍ରଚୁର ଖାଦ୍ୟଶସ୍ୟ ଓ ପାଣୀୟ ଦୁର୍ଗ ଭିତରେ ରଖିବା ବିଧି ଥିଲା । ଚୂଣା, ଜଳ ଓ ତେଲ

(୧) ଦଶରଥଙ୍କ, ବିଶ୍ୱାମିତ୍ରଙ୍କର କୁଶଳ ପ୍ରଶ୍ନ—ଆଦିକାଣ୍ଡ, ପୃ: ୬୩-୬୪ ।

ଆଦି ଯୁଦ୍ଧ ସମୟରେ ବ୍ୟବହାର ପାଇଁ ସଞ୍ଚୟ କରି ରଖା ଯାଇଥିଲା । ଦୁର୍ଗର ଦ୍ୱାରମାନଙ୍କରେ ଲୁହାର କବାଟଗୁଡ଼ିକୁ ଅଚଳ ପଥରମାନଙ୍କ ଦ୍ୱାରା ନିରୋଧ କରି ରଖାଯାଉଥିଲା । ପ୍ରହରୀମାନେ ଦିନରାତି ଜାଗ୍ରତ ରହି ପହରା ଦେଉଥିଲେ । ବିପଦ ସମୟରେ ବାହାର ସହିତ ସଂଯୋଗ ରକ୍ଷା ଲାଗି ଗୁପ୍ତ ପଥମାନ ରଖାଯାଉଥିଲା ।

କୌଣସି ବାହାର ଶତ୍ରୁ ଆସି ଦୁର୍ଗ ଅବରୋଧ କଲେ, କିପରି କୌଶଳରେ ଦୁର୍ଗ ରକ୍ଷା କରାଯାଉଥିଲା, ତାହାର ସୂଚନା ଲଙ୍କା-ଦୁର୍ଗ ରକ୍ଷା ଲାଗି ରାବଣର ସେନା ଓ ସେନାପତିମାନଙ୍କୁ ଉପଦେଶରୁ ମିଳେ (୧) । ଅଚଳ ପଥର ଓ ଲୁହାକଳା ଆଦି ସାହାଯ୍ୟରେ ଫାଟକଗୁଡ଼ିକ କପାଟମାନ ରକ୍ଷିତ ହେଉଥିଲା । ଦୁର୍ଗର ପ୍ରାଚୀର ଉପରୁ ସାଙ୍ଗି, ସାବଳ, କାଣ୍ଡ ଆଦି ଅସ୍ତ୍ରମାନ ପ୍ରୟୋଗ କରା ଯାଉଥିଲା । ଉଷ୍ଣ ତୈଳ ଓ ଜଳ ଆଦି ଶତ୍ରୁ ସୈନ୍ୟମାନଙ୍କ ଉପରେ ନିକ୍ଷେପ କରାଯାଉଥିଲା । ଏହା ବ୍ୟତୀତ ଏଠାରେ ପ୍ରୟୋଗ କରାଯାଇଥିବା ଛୁଟିକଣି, ବାଘ ମୁହାଁ, କଳପାତ, ବନ୍ଧାଫେର ଆଦି ବହୁ ପ୍ରକାର ଅଦ୍ଭୁତ ଶସ୍ତ୍ରମାନଙ୍କର ଉଲ୍ଲେଖ କରାଯାଇଛି । ଏ ସବୁର ବିଶେଷ ବିବରଣୀ ମିଳେ ନାହିଁ । ରାତିରେ ଦୁର୍ଗର ପ୍ରାଚୀର-ରକ୍ଷକମାନେ ଗୋରୁ ହାଡ଼ ( ଗୋହେଣ୍ଡା କାଠ ? ), ଗବତେଲ ଓ ଅରଖରେ ଦୁଳାମାନ ଜଳାଉ ଥିଲେ । ଲୁହାନଳ ଗୁପମାନଙ୍କରେ ହରିତାଳ, ଗନ୍ଧକ ଓ ଯବକ୍ଷାର ଆଦିରେ ନିର୍ମିତ ଗୁଳି ପ୍ରୟୋଗ କରାଯାଉଥିଲା ।

ରାବଣର ଯୁଦ୍ଧଯାତ୍ରା ବର୍ଣ୍ଣନା (୨) ଗୋଟିଏ ପ୍ରକୃତ ସମର ଅଭିଯାନ ଭଳି ମନେ ହୁଏ । ଯୁଦ୍ଧଯାତ୍ରା ବେଳେ ସୈନ୍ୟମାନଙ୍କର ବେଶଭୂଷା ଅସ୍ତ୍ରଶସ୍ତ୍ର ବାଦ୍ୟାଦିର ବିଶଦ ବର୍ଣ୍ଣନା ସହିତ ଅଶ୍ୱ, ଗଜ ଓ ରଥ ଆଦିର ବର୍ଣ୍ଣନା ଦିଆଯାଇଅଛି । ପରବର୍ତ୍ତୀ କାଳରେ ଅଷ୍ଟାଦଶ ଶତକର କବି ବ୍ରଜନାଥ ବଡ଼ଜେନାଙ୍କର 'ସମର ତରଙ୍ଗ'ର ବର୍ଣ୍ଣନା ସହିତ ଏହାର ସାମ୍ୟ ଦେଖାଯାଏ । ଗଜ ଓ ଅଶ୍ୱମାନଙ୍କର ବିଶଦ ବର୍ଣ୍ଣନାରୁ ଯୁଦ୍ଧରେ ଏମାନେ ବହୁ ସଂଖ୍ୟାରେ ବ୍ୟବହୃତ ହେଉଥିବାର ଅନୁମାନ କରାଯାଏ । ଏହି ବର୍ଣ୍ଣନାରୁ ଅନୁମିତ ହୁଏ, ଅଶ୍ୱଗୁଡ଼ିକ ସୁଶିକ୍ଷିତଥିଲେ । ହାତୀମାନଙ୍କୁ

(୧) ରାବଣର ସୈନ୍ୟମାନଙ୍କୁ ଉପଦେଶ— ଲଙ୍କାକାଣ୍ଡ, ପୃ: ୧୬-୧୭ ।
(୨) ରାବଣର ଯୁଦ୍ଧଯାତ୍ରା—ଲଙ୍କାକାଣ୍ଡ, ପୃ: ୭୪ ।

ନାନା ପ୍ରକାରେ ମଣ୍ଡିତ କରି ଯୁଦ୍ଧକ୍ଷେତ୍ରକୁ ନିଆଯାଉଥିଲା । ହାତୀଙ୍କର ମଥାରେ ଫୁଲ ଓ ବସ୍ତ୍ର ବନ୍ଧା, ଗଳାରେ ଘଣ୍ଟା, ଘାଗୁଡିମାଳ ଓ ଶ୍ୱେତ ଚାମର ଆଦି ବନ୍ଧା ଯାଉଥିଲା । ସୈନ୍ୟମାନେ ମଧ୍ୟ ନାନା ପ୍ରକାର ବେଶ ହେଉଥିଲେ । ବିଭୂତି, ରଙ୍ଗମାଟି ଓ ଲତାପତ୍ର ସାହାଯ୍ୟରେ ମଣ୍ଡିତ ହୋଇ ଭୀଷଣାକୃତି ଧାରଣ କରୁଥିଲେ । ଯୋଦ୍ଧାମାନଙ୍କୁ ଉତ୍ସାହ ଦେବାଲାଗି "ବାଜେଣିଆ ଥାଟ"ମାନେ ତାଙ୍କ ସହିତ ରହୁଥିଲେ । ମୃତ ସୈନିକଙ୍କର ଅଳଙ୍କାର ଓ ଯୁଦ୍ଧ ସମୟରେ ନଷ୍ଟ ହେଉଥିବା ମୂଲ୍ୟବାନ୍ ପଦାର୍ଥମାନ ଲୁଟି କରିବା ପାଇଁ "ଦୁହୋଆ ଜୁହୋଆ" (ଏକ ପ୍ରକାର ଛଦ୍ମବେଶୀ ତସ୍କର ?) ଆଦି ରହୁଥିଲେ ।

ରାମଚନ୍ଦ୍ରଙ୍କର ସୈନ୍ୟଶାସନ ଓ ସେନାପତିମାନଙ୍କୁ ଉପଦେଶ ପ୍ରସଙ୍ଗରୁ ସେ ସମୟର ସୈନ୍ୟ ପରିଚାଳନା ବିଷୟରେ ସୂଚନା ମିଳେ (୧)। ସେନାପତିମାନଙ୍କ ଭିତରେ ଯେପରି ମତାନ୍ତର ନ ଘଟେ, ସେଥିପାଇଁ ବ୍ୟବସ୍ଥା କରାଯାଉଥିଲା । ସେନାବାହିନୀ ଭିତରେ ଏମାନଙ୍କର ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯାଉଥିଲା । ସମଗ୍ର ସେନାକୁ ଆଗୁଆଣି ଥାଟ, ପଛୁଆଣି ଥାଟ ଓ ବାମ ଆଉ ଦକ୍ଷିଣ ପାର୍ଶ୍ୱ ରକ୍ଷକ—ଏଇ ଭାବରେ ଚାରି ଭାଗରେ ବିଭକ୍ତ କରାଯାଉଥିଲା । ବିଭିନ୍ନ ଥାଟମାନଙ୍କ ଭିତରେ ସମ୍ପର୍କ ଓ ଶୃଙ୍ଖଳା ରକ୍ଷାର ତଥା ଶିବିରର ସୁରକ୍ଷାର ବିଶେଷ ବ୍ୟବସ୍ଥାମାନ କରାଯାଉଥିଲା ।

## ନାଗରକତା—

ଦରବାରମାନଙ୍କ ଚିତ୍ର, ରାଜପୁରୁଷମାନଙ୍କର ଜୀବନଯାତ୍ରା, ବେଶଭୂଷା, ଅଳଙ୍କାର ମଣ୍ଡନ, ସମ୍ଭୋଗ ଆଦିରେ ନାଗରକତାର ସ୍ପଷ୍ଟ ପ୍ରକାଶ ଦେଖିବାକୁ ମିଳେ । ରାଜା, ସାମନ୍ତ ଓ ରାଜପୁରୁଷମାନଙ୍କଠାରେ ପ୍ରାଚୁର୍ଯ୍ୟ ଓ ବିଳାସ ମଧ୍ୟରେ ଜୀବନ ବିତାଇବାର ଆଦର୍ଶ କିପରି କାର୍ଯ୍ୟ କରୁଥିଲା, ତାହା ଭରଦ୍ୱାଜଙ୍କ ଆଶ୍ରମରେ ଭରତଙ୍କ ସୈନ୍ୟମାନଙ୍କର ଭୋଗାକାଂକ୍ଷାରୁ ସୂଚିତ ହୁଏ (୨) । ମହାର୍ଘ ମଣି ଖଚିତ ପ୍ରାସାଦରେ ବାସ, ରତ୍ନଖଚିତ ପଲ୍ୟଙ୍କରେ ସୁକୋମଳ ଶଯ୍ୟାରେ ଶୟନ, ସେବା ଓ ଯଥେଚ୍ଛ

(୧) ରାମଚନ୍ଦ୍ରଙ୍କ ସୈନ୍ୟ ଶାସନ ଓ ସେନାପତିମାନଙ୍କୁ ଉପଦେଶ—ସୁନ୍ଦରକାଣ୍ଡ, ପୃ: ୧୧୯ ।

(୨) ଭରଦ୍ୱାଜଙ୍କ ଆଶ୍ରମରେ ସସୈନ୍ୟ ଭରତ—ଅଯୋଧ୍ୟା, ପୃ: ୭୬-୭୮ ।

ସମ୍ଭୋଗ ପାଇଁ ଅସଂଖ୍ୟ ସୁନ୍ଦରୀ ନାରୀ, ଦୁର୍ଲଭ ଭୋଜ୍ୟ ଓ ସୁରାପାନୀୟ ମଧ୍ୟରେ ବ୍ୟସନଲିପ୍ତ କର୍ମହୀନ ଜୀବନକୁ ଏମାନେ ବରଣୀୟ ମନେ କରୁଥିଲେ । ସେ କାଳର ସାମନ୍ତତନ୍ତ୍ରରେ ଏଇ ନାଗରିକ-ବିଳାସିତା ଏକ ବ୍ୟାଧି ସ୍ୱରୂପ ହୋଇଥିଲା ।

## ପଲ୍ଲୀ ପରିବେଶ—

ସ୍ଥଳ ବିଶେଷ ନାଗରିକତାର ପ୍ରଭାବ ଦାଣ୍ଡି ରାମାୟଣରେ ଦେଖିବାକୁ ମିଳୁଥିଲେ ହେଁ, ପଲ୍ଲୀ ପରିବେଶ ଏଥିରେ ମୁଖ୍ୟସ୍ଥାନ ଅଧିକାର କରିଅଛି । ବଳରାମ ଦାସଙ୍କର ଏଇ ରାମାୟଣ ଶତାବ୍ଦୀବ୍ୟାପୀ ପଲ୍ଲୀମାଳିନୀ ଓଡ଼ିଶାର ଲୋକମନକୁ ଉଦ୍‌ବୁଦ୍ଧ କରି ପାରିବାର ବୋଧହୁଏ ଏହା ଅନ୍ୟତମ କାରଣ । ବାଲ୍ମୀକି ବର୍ଣ୍ଣିତ ଅଯୋଧ୍ୟା ଏକ ହର୍ମ୍ୟମୟୀ ନଗରୀ । ବଳରାମ ଦାସଙ୍କ ଅଯୋଧ୍ୟା ଗୋଟିଏ ସୁଖୀ ଓ ସମୃଦ୍ଧ ପଲ୍ଲୀ । ଏଠାରେ ରାଜାଙ୍କ ନବର ବା ହର୍ମ୍ୟ ନୁହେ, ଚନ୍ଦନ ଓ ଅଗୁରୁ କାଠର ରୁଅ ଓ ତେଜପତ୍ରର ଛପରଣୀ ଏକ ପୁର । ଏହା ପଲ୍ଲୀର କୁଟୀର ଉପରେ ସମୃଦ୍ଧିର ପରିକଳ୍ପନା ମାତ୍ର । ଗୁହକ ଶବରର ରାଜ୍ୟ ଓ ସେଥିର ଅଧିବାସୀମାନଙ୍କର ବର୍ଣ୍ଣନା ଗୋଟିଏ ଆଦିବାସୀ ପଲ୍ଲୀର ଚିତ୍ର ଦିଏ । ଶବରମାନଙ୍କର ବର୍ଣ୍ଣନା ବଡ଼ ମନୋରମ । କାହାର ଜୁଡ଼ାରେ ମନ୍ଦାର ଫୁଲ, କାହାର କଟିରେ କଉଡ଼ି, କାହା ନାକରେ ପିତଳ ମୁଦି । ଏମାନଙ୍କର "ଖାଙ୍କର କେଶ", ଉମ୍ବା ଉମ୍ବା ଆଖି, ଅଗଠଣ ଦେହର ବର୍ଣ୍ଣନା ଏକ ବିଚିତ୍ର ପରିବେଶ ସୃଷ୍ଟି କରେ (୧) । ଅରଣ୍ୟକ କାଣ୍ଡରେ କେତେକ ଗୋପାଳଙ୍କୁ ରାମ ଓ ଲକ୍ଷ୍ମଣ ଭେଟି କ୍ଷୁଧା ସମୟରେ ସେମାନଙ୍କଠାରୁ ଦୁଗ୍ଧ ପାନ କରିଥିବାର ବର୍ଣ୍ଣନା ଦିଆ ଯାଇଅଛି । ଏଠାରେ ଏଇ ଗୋପାଳମାନଙ୍କୁ ଏକାନ୍ତ ଗାଁଉଲି ଭାବେ ଚିତ୍ର କରା ଯାଇଅଛି । ଦୁଧର ମୂଲ୍ୟ ସ୍ୱରୂପ ରାମ ଲକ୍ଷ୍ମଣ ମଣି ଯାଚିବା ବେଳେ, ଗୋପାଳମାନେ ମଣି କେଉଁ ଗଛର ଫଳ ବୋଲି କୌତୂହଳ ପ୍ରକାଶ କରିଅଛନ୍ତି (୨) । ସୁନ୍ଦରକାଣ୍ଡରେ ଦିଆ ଯାଇଥିବା ଲଙ୍କାପୋଡ଼ିର ଚିତ୍ର, ଗୋଟିଏ ଗାଆଁର ଘରପୋଡ଼ି ଚିତ୍ର ଭଳି ମନେ ହୁଏ (୩) ।

---

(୧) ଅଯୋଧ୍ୟା, ପୃ: ୪୯ ।
(୨) ଆରଣ୍ୟକ, ପୃ: ୭୮ । (୩) ସୁନ୍ଦର, ପୃ: ୬୩-୬୪ ।

## ଆମ ସମାଜର ଇତିହାସ—

ଭାରତବର୍ଷ ତଥା ଓଡ଼ିଶାର ସାମାଜିକ ଜୀବନଧାରାର ସୁସଂବଦ୍ଧ ଇତିହାସ ଏ ପର୍ଯ୍ୟନ୍ତ ବିଜ୍ଞାନସମ୍ମତ ଭାବେ ଆଲୋଚିତ ହୋଇ ନାହିଁ । ପୁଣି ଏ ଆଲୋଚନାର ପରିସର ଅତ୍ୟନ୍ତ ବିସ୍ତୃତ । ଏହା ନୃତତ୍ତ୍ୱ, ପ୍ରତ୍ନତତ୍ତ୍ୱ, ଅନୁଧ୍ୟାନତତ୍ତ୍ୱ ଆଦିର ଅପେକ୍ଷା ରଖେ । କୌଣସି ମାନବଗୋଷ୍ଠୀର ସମାଜ-ଜୀବନର ଧାରା ବୁଝିବାକୁ ହେଲେ, ତାର ସାଂସ୍କୃତିକ ଜୀବନର ସମଗ୍ରରୂପ ବିଷୟରେ ସ୍ପଷ୍ଟ ଧାରଣା ଆବଶ୍ୟକ । ସଂସ୍କୃତିର ପରିସର ବିଷୟରେ ଅଧ୍ୟାପକ ଗର୍ଡନ ଚାଇଲ୍ଡ୍ ଯଥାର୍ଥ କହିଛନ୍ତି—"ପ୍ରକୃତି ଓ ପ୍ରବୃତ୍ତିଠାରୁ ସରଳ ଭାବରେ ମଣିଷ ଯାହା ପାଇଥାଏ, ସେଇତକ ବାଦ୍ ଦେଲେ ତା' ଜୀବନ ଧାରାର ଅନ୍ୟ ସମସ୍ତ ବିଭବ ସଂସ୍କୃତି-ସାଧନାର ଅନ୍ତର୍ଗତ" (୧) । ଦାଣ୍ଡି ରାମାୟଣରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଯେଉଁ ସାମାଜିକ ଚିତ୍ର ମିଳୁଅଛି, ତାର ସମ୍ପୂର୍ଣ୍ଣ ଐତିହାସିକ ସମୀକ୍ଷା ଏଠାରେ ସମ୍ଭବ ନୁହେଁ । ଏଥିରେ ପୁଣି ସଂପୃକ୍ତ ଯୁଗର ପ୍ରଭାବ ସହିତ, ସାଧକ କବି ବଳରାମ ଦାସଙ୍କର ଆଦର୍ଶ-ମୁଖୀ ପ୍ରତିଭାର ସମାବେଶ କିପରି ଭାବରେ ଘଟିଅଛି, ତାହା ବିଚାର କରିବା କେବଳ ଅନୁମାନ-ସାପେକ୍ଷ । ତେବେ ସମାଜଧର୍ମ ଓ ସମାଜ ରକ୍ଷାର ଆଦର୍ଶର ଚିତ୍ର ସହିତ ସମସାମୟିକ ସମାଜର ବାସ୍ତବ ଚିତ୍ର ପ୍ରତି ରହିଥିବା ସ୍ୱାଭାବିକ ; କାରଣ, "କବି ବିଶେଷ ଆପଣା ଯୁଗର ସୀମା ଭିତରେ ରହି ବି, ତାଙ୍କର ବିଶିଷ୍ଟ ଚିନ୍ତା ଓ ଆଦର୍ଶ ଦ୍ୱାରା ଯୁଗର ଗତି ଊର୍ଦ୍ଧ୍ୱମୁଖୀ କରାଇ ପାରନ୍ତି । କିନ୍ତୁ ଏଇ ଊର୍ଦ୍ଧ୍ୱଗତି ତାଙ୍କ ମାନସ ଲୋକର ପ୍ରକୃତିକୁ ସଂପୂର୍ଣ୍ଣ ବଦଳାଇ ଦେଇ ପାରେ ନାହିଁ । ଏଇ ମାନସଲୋକ ତାଙ୍କ ସମାଜର ହିଁ ସୃଷ୍ଟି" (୨) । ପ୍ରାଚୀନ ଭାରତୀୟ ପୁରାଣ ଓ ସ୍ମୃତିଶାସ୍ତ୍ର ଆଦିର ପ୍ରଭାବରେ ଯେଉଁ ଆଦର୍ଶ ସମାଜର ଚିତ୍ର ବଳରାମ ଦାସ କଳ୍ପନା କରିଥିଲେ, ସ୍ଥୂଳତଃ ତାହାହିଁ

---

(୧) Social Evolution—V. Gordon Childe, London 1921. Chap III. p. 31.

(୨) History of Sanskrit literature, (Classical period)—S. N. Dasgupta. Cal. 1947. Introduction—LIII.

ତାଙ୍କ ରାମାୟଣରେ ପ୍ରତିବିମ୍ବିତ ହୋଇଥିଲେ ହେଁ, ତାଙ୍କ ସମକାଳୀନ ସମାଜର ବାସ୍ତବ ରୂପରେଖର ଇଙ୍ଗିତ ଏଥିରେ ପୂର ରହିଅଛି । ଅଧ୍ୟାପକ କୁଞ୍ଜବିହାରୀଙ୍କ ଭାଷାରେ କହିଲେ ଦାଣ୍ଡି ରାମାୟଣ—"ଆମର ଚଳଣି ଓ ପରମ୍ପରାର ବଶଦ ଚିତ୍ର ସମ୍ବଳିତ ଆମ ସମାଜର ଏକ ମନୋରମ ଇତିହାସ ଭଳି ପ୍ରତୀତ ହୁଏ (୧)" ।

---

(୧) A Study of Orissan Folklore—K. B. Das, page. 125,

# ଦାଣ୍ଡିରାମାୟଣର ଅନୁଶୀଳନ

୨

## —ଧର୍ମ—

"ହିନ୍ଦୁ ଧର୍ମ ଏକ ଚିନ୍ତାଧାରା ବିଶେଷ ନୁହେଁ, ଏହା ମୁଖ୍ୟତଃ ଜୀବନ ଯାତ୍ରାର ଗୋଟିଏ ମାର୍ଗ। ଚିନ୍ତାଜଗତରେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ ହେଁ ଏହା ଏକ କଠିନ କର୍ମ-ବିଧି ନିର୍ଦ୍ଦେଶିତ କରେ।" —ସର୍ବପଲ୍ଲୀ ରାଧାକୃଷ୍ଣନ୍,

The Hindu view of life, page. 77.

### ଧର୍ମ ସାଧନର ବ୍ୟାପକ ଦୃଷ୍ଟି—

ଧର୍ମ ଭାରତୀୟ ହିନ୍ଦୁ ଠାରେ କେବଳ ଏକ ଚିନ୍ତା ବିଶେଷ ନୁହେଁ। ଏହା ତାର ଜୀବନଧାରାର ଅଙ୍ଗ। ଏହାରି ଉପରେ ତାର ଜୀବନ-ଯାତ୍ରା ଅବଧାରିତ। ସବୁ ପ୍ରକାର ବ୍ୟାବହାରିକ ତଥା ସାମାଜିକ ଚଳଣି ଭିତର ଦେଇ ହିନ୍ଦୁ କେବଳ ଧର୍ମହିଁ ପାଳନ କରିଥାଏ। ବଚନ ଓ କର୍ମରେ ଉଚିତ ଅନୁଚିତ ବାଛିବା, ସୁଖ ଦୁଃଖରେ ଶକ୍ତି ସଞ୍ଚୟ କରିବା ପାଇଁ ଧର୍ମ ତା'ର ଏକମାତ୍ର ସାଧନ। ଧର୍ମ ହିଁ ତା ପାଇଁ ସକଳ ପ୍ରକାର ସିଦ୍ଧିର ପଥ ଉନ୍ମୁକ୍ତ କରେ। ଧର୍ମ, ଅର୍ଥ, କାମ, ମୋକ୍ଷ, ଏଇ ଚତୁଃବର୍ଗ ଫଳ ପ୍ରାପ୍ତି ଭିତରେ ଜୀବନର କୌଣସି ଦିଗ ଅବହେଳିତ ହୋଇ ନାହିଁ। ସମୂହ ଭାବରେ ବିଚାର କଲେ, ଦେଖିବାକୁ ମିଳିବ, ଏଇ ଚତୁଃବର୍ଗ ଫଳଲାଭ ପାଇଁ ସାଧନା ହିଁ ହିନ୍ଦୁ ଠାରେ ଧର୍ମ ସାଧନା ରୂପେ ସବୁଯୁଗରେ ପରିଗଣିତ ହୋଇ ଆସିଅଛି। ଯୁଗେ ଯୁଗେ ଏଇ ଦେଶରେ ବୈଦିକ, ସ୍ମାର୍ତ୍ତ, ବୌଦ୍ଧ, ଜୈନ, ଶାକ୍ତ ବୈଷ୍ଣବ, ତାନ୍ତ୍ରିକ ଆଦି ବିଭିନ୍ନ ମତବାଦର ପ୍ରଚାର ଓ ପ୍ରସାର ହୋଇଅଛି। ସମଗ୍ର ରୂପେ ହିନ୍ଦୁ କୌଣସି ମତବାଦକୁ ଅସମ୍ମାନ କରିନାହିଁ, କିମ୍ବା କୌଣସି ଗୋଟିକୁ ଚୂଡ଼ାନ୍ତ ବୋଲି ଗ୍ରହଣ କରି ନାହିଁ। ମତବାଦ ନିର୍ବିଶେଷରେ, ଯେଉଁମାନେ ସିଦ୍ଧ, ଯେଉଁମାନେ ମହତ୍, ମହାଜନ, ସେଇମାନଙ୍କର ଆଚରିତ ପନ୍ଥାକୁ ଆଦର୍ଶ ରୂପେ ଅବଲମ୍ବନ କରି ଆସିଅଛି। ସେଥିପାଇଁ ମହାଭାରତରେ କୁହାଯାଇଅଛି —

ଶ୍ରୁତିର୍ବିଭିନ୍ନା ସ୍ମୃତୟୋ ବିଭିନ୍ନାଃ
ନୈକୋ ମୁନିର୍ଯସ୍ୟ ବଚଃ ପ୍ରମାଣଂ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥା ।

ଏଭଳି ଭାବରେ ଦେଖିଲେ, ହିନ୍ଦୁଠାରେ ଯେଉଁ ସମସ୍ତ ଧର୍ମଧାରା ବିକଶିତ ହୋଇଅଛି, ସେଥିରେ ତିନୋଟି ଦିଗର ସ୍ପଷ୍ଟ ସୂଚନା ମିଳେ । ପ୍ରଥମତଃ ବୁଦ୍ଧିବାଦ, ଦ୍ୱିତୀୟରେ ହୃଦୟବାଦ, ତୃତୀୟରେ ଦେହବାଦ । ସ୍ଥୂଳଭାବରେ ମାନବର ଏଇ ତିନୋଟି ମୌଳିକ ପ୍ରବୃତ୍ତି ହିନ୍ଦୁଧର୍ମ ଧାରାର ଜ୍ଞାନ, ଭକ୍ତି ଓ କର୍ମ, ଏଇ ତିନି ଧାରାରେ ବିକଶିତ ହୋଇଅଛି । ବେଦାନ୍ତ ଉପନିଷଦ,ବୌଦ୍ଧ ଓ ଜୈନ ଆଦି ଧର୍ମ ଓ ଦର୍ଶନର ବିକାଶ ଭିତରେ ଆମର ମନୀଷୀ-ଗଣ ଜ୍ଞାନ ସାଧନାର ଚରମ ସିଦ୍ଧି ରଖି ଯାଇଅଛନ୍ତି । ସ୍ମାର୍ତ୍ତ ବା ବ୍ରାହ୍ମଣ୍ୟ ଓ ପୌରାଣିକ ଧର୍ମଧାରାରେ ବ୍ରାହ୍ମଣାଦି ଗୋଷ୍ଠୀ ବିଶେଷ ପରମ୍ପରା ତଥା ସ୍ୱାଧିକାର ପ୍ରତିଷ୍ଠା ଲାଗି କର୍ମକାଣ୍ଡର କଠୋର ଶୃଙ୍ଖଳାରେ ସମାଜ ଜୀବନକୁ ବାନ୍ଧି ରଖିବାକୁ ଚରମ ପ୍ରୟାସ କରି ଯାଇଛନ୍ତି । କିନ୍ତୁ ଅଗଣିତ ସନ୍ଥ, ସାଧକ ଓ ସିଦ୍ଧମାନଙ୍କର ଜୀବନମୟ ସାଧନାଲବ୍ଧ ଭକ୍ତିମାର୍ଗ ହିଁ ଅଗଣିତ ଜନସାଧାରଣଙ୍କର ହୃଦୟ ସିଂହାସନରେ ଚିରଦିନ ଲାଗି ପ୍ରତିଷ୍ଠିତ ହୋଇ ରହିଅଛି । ଏହାହିଁ ପ୍ରକୃତରେ ଲୋକଧର୍ମ । ଏଇ ଧର୍ମର ସଂରକ୍ଷଣ ଓ ବିକାଶ ପାଇଁ ଏକାନ୍ତ ଆନ୍ତରିକତା ଦେଖାଇଛନ୍ତି—ଦାଣ୍ଡି ରାମାୟଣର ଭକ୍ତକବି ବଳରାମ ଦାସ । ତାଙ୍କ କୃତିରେ ପ୍ରସଙ୍ଗ କ୍ରମେ ଜ୍ଞାନମାର୍ଗ, ଯୋଗପନ୍ଥା, ସଂଯମ ସାଧନା ଆଦି ପ୍ରତ୍ୟେକ ଦିଗ ବିଷୟରେ ଆଲୋଚନା କରାଯାଇଅଛି । କିନ୍ତୁ ଏ ସବୁର କେନ୍ଦ୍ରରେ ରହିଛି, ଭକ୍ତିଧର୍ମ ।

**ଭକ୍ତିଧର୍ମର ପ୍ରାଚୀନତା—**

"ହେ ପରମ ପୁରୁଷ ମାଧବ, ତୋର ଜୟ ହେଉ । ତୁ ଅନନ୍ତ, ପୁରୁଷୋତ୍ତମ । ତୁ ସହସ୍ର ମୂର୍ତ୍ତି । ତୋର ସହସ୍ର ସହସ୍ର ପୟର । ତୋର ସହସ୍ର ନାମ ଖ୍ୟାତ । ହେ ପ୍ରଭୁ, କଳ୍ପାନ୍ତରରେ ତୁ ପ୍ରକାଶିତ ହେଉ । ତୁ ବେଦାନ୍ତ ପୁରୁଷ । ହେ ଗୋସାଇଁ, ତୁ ସତ୍ୟମୂର୍ତ୍ତି ଓ ସାତ୍ତ୍ୱିକ । ସବୁ ଜୀବ ମଧ୍ୟରେ ତୁହି ପ୍ରକାଶିତ । ତୋର ମହିମା ଅପାର । ତୋର କେଳି ବିଶଦ । ତୁ ସୁରଗଣର ସଖା । ଅସୁର କୁଳର ସଂହାରକର୍ତ୍ତା" (୧) ।

(୧) ଜୟ ଜୟ ମାଧବ—ଅସୁରକୁଳକାଳୀ —ଆଦିକାଣ୍ଡ, ପୃ: ୩ ।

ଭାରତବର୍ଷର ଶାସ୍ତ୍ରାଙ୍ଗଣରେ ଏଇଭଳି ଭାବନା ବହୁ ପ୍ରାଚୀନ କାଳରୁ ପରମ୍ପରାକ୍ରମେ ବିକଶିତ ହୋଇଆସିଅଛି । ପୁରୁଷ ସୂକ୍ତରେ କୁହାଯାଇଛି —"ସେ ପୁରୁଷ ଅସଂଖ୍ୟ ମସ୍ତକ, ଅସଂଖ୍ୟ ଚକ୍ଷୁ, ଅସଂଖ୍ୟ ପାଦମୟରୂପରେ ସର୍ବପ୍ରକାରେ ଏ ଭୂମି, ସ୍ୱର୍ଗକ୍ଷେତ୍ର ବା ସୃଷ୍ଟସ୍ଥାନକୁ ଅବୃତ୍ତ କରି, ଏଥିଁ ଅଧିକରେ ପରିବ୍ୟାପ୍ତ ଥିଲେ" (୧) । ପରମ ସତ୍ତ୍ୱଙ୍କର ସର୍ବବ୍ୟାପକତା ଓ ତାଙ୍କଠାରେ ସମର୍ପଣ ଭାବ ଭକ୍ତିଧର୍ମର ମୂଳକଥା । ଏହା କେବଳ ଭାରତ ନୁହେ, ପୃଥିବୀରେ ସର୍ବତ୍ର ବହୁ ପ୍ରାଚୀନ କାଳରୁ ପ୍ରକାଶିତ ହୋଇ ଆସିଅଛି । ଏକଦା ପାଶ୍ଚାତ୍ୟ ଜଗତରେ ମଧ୍ୟ ଭକ୍ତି ଓ ଧର୍ମକୁ ଏକାର୍ଥବୋଧକ ଶବ୍ଦ ବୋଲି ମନେ କରାଯାଉଥିଲା (୨) । ଆମ ଦେଶରେ ବୈଦିକଯୁଗରେ ଆର୍ଯ୍ୟଋଷିମାନଙ୍କର ଇନ୍ଦ୍ର, ବରୁଣ, ଅଗ୍ନି ଆଦିଙ୍କଠାରେ ପ୍ରାର୍ଥନା ଓ ଆତ୍ମ-ସମର୍ପଣ ଭାବନା ଭିତରେ ଭକ୍ତିମାର୍ଗର ବୀଜ ନିହିତ ଥିଲା । ପୁଣି ବେଦ ଭଳି ପ୍ରାଚୀନତା ଦାବୀ କରୁଥିବା ଆଗମ ବା ତନ୍ତ୍ରାଦି ସାହିତ୍ୟରେ ରୁଦ୍ର ଶିବ ଆଦିଙ୍କ ସାକାର କଳ୍ପନା, ନାନା ବିଧିବିଧାନପୂର୍ଣ୍ଣ ପୂଜାପଦ୍ଧତି, ମନ୍ତ୍ରବିଧି ଇତ୍ୟାଦି ଭକ୍ତିମାର୍ଗର ବିକାଶରେ ସହାୟତା କରିଥିଲା । ବିଭିନ୍ନ ଦେବତାମାନଙ୍କର ଗୁଣକର୍ମ, ଚରିତ, ଶକ୍ତି ଆଦି ଯେପରି ବିଶଦ ଭାବରେ ଏଥିରେ ବର୍ଣ୍ଣିତ ହୋଇଛି, ତାହା ଭକ୍ତିଧର୍ମକୁ କଙ୍କାଳ ଯୋଗାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଇ ଦୃଷ୍ଟିରେ ଭକ୍ତିମାର୍ଗର ସିଦ୍ଧାନ୍ତ ଓ ସାହିତ୍ୟକୁ ବିଶ୍ଳେଷଣ କରି ଦେଖିଲେ, ମନେ ହୁଏ, "ଭକ୍ତିମାର୍ଗର ଜ୍ଞାନ ଓ ତତ୍ତ୍ୱ ଅଂଶ ବିଶେଷରୂପେ ନିଗମସାହିତ୍ୟ ଦ୍ୱାରା (ବେଦାନ୍ତ ଆଦି), ଅଗ୍ରର ବିଧି ସାଧନ କିମ୍ବା ଆଦି କର୍ମଅଂଶ ଆଗମ ବା ତନ୍ତ୍ରସାହିତ୍ୟ ଦ୍ୱାରା ଓ ନାମ ମହାତ୍ମ୍ୟ, ସାକାର ଭାବନା, ତୀର୍ଥପ୍ରାଧାନ୍ୟ (ନାମ, ରୂପ, ଧାମ ସମ୍ବନ୍ଧୀ) ଅନୁରାଗ ଆଦି ଭାବ ଅଂଶ ବିଶେଷ ଭାବେ ପୁରାଣସାହିତ୍ୟ ଦ୍ୱାରା ପରିପୁଷ୍ଟ ହୋଇଅଛି" (୩) ।

---

(୧) ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ର ପାତ୍
ସ ଭୂମିଂ ବିଶ୍ୱତୋ ବୃତ୍ୱାଽ ତ୍ୟତିଷ୍ଠତ୍ ॥
ଏହାର ଓଡ଼ିଆ ଅନୁବାଦ ଆର୍ଯ୍ୟଜୀବନ, ପୃ: ୩୦ ରୁ ଦିଆଯାଇଅଛି ।

(୨) Devotion and religion have often been used as synonymous term—Encyclopedia of Religion and Ethics Vol. IV, page. 693.

(୩) ତୁଳସୀ ଦର୍ଶନ (ପ୍ରୟାଗ,୧୯୪୨) ଡା : ବଳଦେବମିଶ୍ର, ୨ୟ ପରିଚ୍ଛେଦ,ପୃ:୪୨

ଇତିହାସ—

ଭକ୍ତିମାର୍ଗର ସାଧାରଣ ବିଶ୍ୱାସ ଓ ବଳରାମ ଦାସଙ୍କ ରାମାୟଣରେ ଅଭିବ୍ୟକ୍ତ ଭକ୍ତିମାର୍ଗର ବିଶେଷ ପଦ୍ଧତି ବିଷୟରେ ଆଲୋଚନା କରିବା ପୂର୍ବରୁ ଭକ୍ତିଧର୍ମର ଐତିହାସିକ ବିକାଶ କ୍ରମ ପ୍ରତି ଏକ ଶୃଙ୍ଖଳାବଦ୍ଧ ଦୃଷ୍ଟି ଦେବା ଆବଶ୍ୟକ (୧)। ଐତିହାସିକ ଦୃଷ୍ଟିରେ ଦେଖିଲେ ଖ୍ରୀ: ପୂ: ୫ମ ଶତକରୁ ବୈଷ୍ଣବଧର୍ମର ସନ୍ଧାନ ମିଳେ। ପ୍ରଥମ ସ୍ତରରେ ଏହା ବୌଦ୍ଧ ଓ ଜୈନ ଧର୍ମ ଭଳି ଏକ ସଂସ୍କାରମୂଳକ ଧର୍ମରୂପେ ଦେଖା ଦେଇଥିଲେ ହେଁ, ଆସ୍ତିକବାଦ ଏହାର ମୂଳପିଣ୍ଡ ଥିଲା। ଖ୍ରୀ: ପୂ: ୪ର୍ଥ ଶତକରେ ଗ୍ରୀକ୍ ପଣ୍ଡିତ ମେଗାସ୍ଥିନିସ୍‌ଙ୍କ ଉଲ୍ଲେଖ ଅନୁସାରେ—(?) ବୈଷ୍ଣବଧର୍ମ ପାଞ୍ଚରାତ୍ର ବା ଭାଗବତ ଧର୍ମ ବୋଲି ମତବାଦ ବିଶେଷ ରୂପେ ଦେଖା ଦେଇଥିଲା। ସାତ୍ୱତ (Satvata) ନାମକ ଗୋଟିଏ କ୍ଷତ୍ରିୟ ଜାତି, ଏହି ଧର୍ମର ପୃଷ୍ଠପୋଷକତା କରୁଥିଲେ। ନରସୃଷ୍ଟିର ଉତ୍ସରୂପେ କଳ୍ପିତ ନାରାୟଣ ଓ ସମସ୍ତ ଦୃଶ୍ୟମାନ ପୃଥିବୀରେ ପରିବ୍ୟାପ୍ତ ବିଷ୍ଣୁଙ୍କୁ ଏମାନେ ମୁଖ୍ୟ ଆରାଧ୍ୟ ଦେବତା ରୂପେ ଗ୍ରହଣ କରୁଥିଲେ। ଖ୍ରୀଷ୍ଟ ପ୍ରଥମ ଶତକରେ ଅଭୀର ନାମକ ଗୋପାଳ ଜାତି ବିଶେଷ ଏହି ଧର୍ମର ପୃଷ୍ଠପୋଷକ ଥିଲେ। କୃଷ୍ଣଙ୍କ ବାଳଲୀଳା ଓ ଗୋପୀଭାବ ଏମାନଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା। ଏହି ପ୍ରେମଭକ୍ତିଧର୍ମର ବିକାଶ ପଥରେ ଅଷ୍ଟମ ଶତକର ଶେଷପାଦ ଓ ନବମ ଶତକର ଆରମ୍ଭରେ ପ୍ରଚାରିତ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ଦର୍ଶନ ଓ ମାୟାବାଦ ସାମୟିକ ପ୍ରତିବନ୍ଧକ ସୃଷ୍ଟି କରିଥିଲେ ହେଁ, ଏକାଦଶ ଶତକ ବେଳକୁ ଏହା ବହୁଭାବରେ ବିକଶିତ ହୋଇଥିଲା। ରାମାନୁଜାଚାର୍ଯ୍ୟ ଏଥିରେ ନବଜୀବନ ସଞ୍ଚାର କରିଥିଲେ। ଉତ୍ତରଭାରତରେ ରାମାନୁଜାଚାର୍ଯ୍ୟଙ୍କୁ ନିମ୍ବାର୍କ ଅନୁସରଣ କରିଥିଲେ। ରାମାନୁଜଙ୍କ ଦ୍ୱାରା ଉପେକ୍ଷିତ ରାଧାକୃଷ୍ଣ ଭାବକୁ ସେ ବିଶେଷ ପ୍ରାଧାନ୍ୟ ଦେଇଥିଲେ। ତ୍ରୟୋଦଶ ଶତକରେ ମାଧବାଚାର୍ଯ୍ୟ ଶଙ୍କର-ମତର ଦୃଢ଼ ପ୍ରତିରୋଧ କରି ବୈଷ୍ଣବଧର୍ମର ବିକାଶରେ ସାହାଯ୍ୟ କରିଥିଲେ। ଏହାପରେ ରାମାନନ୍ଦ ରାମଚନ୍ଦ୍ରଙ୍କୁ ପ୍ରଧାନ ଆରାଧ୍ୟ ଦେବତା ରୂପେ ଗ୍ରହଣ କରି ଭକ୍ତିଧର୍ମର ବିକାଶ ସାଧିତ କରିଥିଲେ। ତାଙ୍କର

(୧) Vaisnavism, Saivism and Minor religious systems, Sir R. G. Bhandarkar. page, 142—144 ର ତଥ୍ୟ ଉପରେ ଏହି ଆଲୋଚନା କରାଯାଇଛି।

ଶିଷ୍ୟମାନେ ପ୍ରାନ୍ତୀୟ ଭାଷାରେ ଧର୍ମଗ୍ରନ୍ଥମାନ ପ୍ରଚାର କରି, ଭକ୍ତିଧର୍ମକୁ ଲୋକପ୍ରିୟ କରିଥିଲେ । ଏମାନଙ୍କ ମଧ୍ୟରେ ପ୍ରଧାନ ସନ୍ଥକବି କବୀର ସଂସ୍କୃତକୁ କୂପଜଳ ଓ ଲୋକଭାଷାକୁ ବହମାନ ଜଳଧାର ବୋଲି ମନେ କରୁଥିଲେ । ଏହି ସମୟରେ ବିଭିନ୍ନ ପ୍ରାନ୍ତୀୟ ଭାଷାଗୁଡ଼ିକରେ ଭକ୍ତିଧର୍ମର ଗ୍ରନ୍ଥ, ପୁରାଣ ଆଦି ରଚିତ ହୋଇଥିଲା । ପଞ୍ଚଦଶ ଷୋଡ଼ଶ ଶତକ ମଧ୍ୟରେ କବୀର ନିଜର ନିର୍ଗୁଣ ମତବାଦର ତତ୍ତ୍ୱମୟୀ ବାଣୀ, ତୁଳସୀ ଦାସ ତାଙ୍କର ପ୍ରସିଦ୍ଧ ରାମଚରିତ ମାନସ ଓ ଅନ୍ୟାନ୍ୟ କାବ୍ୟମାନ ଅବଧିଭାଷାରେ ରଚନା କରିଥିଲେ । ମହାରାଷ୍ଟ୍ରର ନାମଦେବ, ତୁକାରାମ ଆଦି ପଣ୍ଢରପୁରର ବିଠୋବାଙ୍କୁ ଆରାଧ୍ୟ ଦେବତାରୂପେ ଗ୍ରହଣ କରି, ମହାରାଷ୍ଟ୍ରୀରେ ସରସ ବାଣୀ ପ୍ରଚାର କରିଥିଲେ । ଉତ୍କଳରେ ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କୁ ଆରାଧ୍ୟ ଦେବତା ରୂପେ ଗ୍ରହଣ କରି, ପଞ୍ଚସଖାମାନେ ତାଙ୍କର ସରସ ଧର୍ମମତ ପ୍ରଚାର କରିଥିଲେ । ବିଶାଳ ପୁରାଣ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥମାନ ରଚନା କରି, ଓଡ଼ିଆ ଭାଷାର ଜୀବନ୍ୟାସ ଦେଇଥିଲେ ।

## ଦାଣ୍ଡି ରାମାୟଣରେ ଭକ୍ତିମାର୍ଗ—

ଓଡ଼ିଶାର ପଞ୍ଚସଖାମାନେ କୌଣସି ବିଶେଷ ମତବାଦ ପ୍ରଚାର କରି ନାହାନ୍ତି । ଭକ୍ତକବି ବଳରାମ ଦାସଙ୍କ ଦାଣ୍ଡି ରାମାୟଣରେ ଥିବା ଭକ୍ତିମାର୍ଗର ବିଶ୍ଳେଷଣ କଲେ ମନେ ହୁଏ, ଏହା ହେଉଛି ଭାରତୀୟ ଧର୍ମଧାରାରେ ଭକ୍ତିମାର୍ଗର ଯେଉଁ ସ୍ୱାଭାବିକ ପ୍ରକାଶ ଦେଖା ଦେଇଥିଲା— ତାହାର ଅଭିବ୍ୟକ୍ତି ।

ଭକ୍ତିମାର୍ଗର ସାଧାରଣ ପରିଭାଷା ରୂପେ କୁହାଯାଇଅଛି, ଈଶ୍ୱରଙ୍କଠାରେ ଉତ୍କୃଷ୍ଟ ଅନୁରାଗ ହିଁ ଭକ୍ତି (୧) । ପ୍ରାର୍ଥନା, ମହିମା-କୀର୍ତ୍ତନ, ଅର୍ଚ୍ଚନା, ଧ୍ୟାନ, ଅଧ୍ୟାତ୍ମ-ସାଧନା, ଦିବ୍ୟାନନ୍ଦ ଆଦି ଏହି ଅନୁରାଗ ପ୍ରଦର୍ଶନର ମାର୍ଗ (୨) । ଭାରତୀୟ ଭକ୍ତିମାର୍ଗରେ ମୋକ୍ଷ ସିଦ୍ଧିଲାଭ ପାଇଁ "ପଞ୍ଚତତ୍ତ୍ୱ" ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଇଅଛି (୩) । ଏହି ପଞ୍ଚତତ୍ତ୍ୱ ହେଉଛି—ଗୁରୁତତ୍ତ୍ୱ,

---

(୧) "ଭକ୍ତିଃ ପରାନୁରକ୍ତିରୀଶ୍ୱରେ" । ଶାଣ୍ଡିଲ୍ୟ ଭକ୍ତିସୂତ୍ର ।

(୨) Devotion Encyclopedia of Religion and Ethics, Vol. IV. p. 693.

(୩) ପଞ୍ଚତତ୍ତ୍ୱ ବହୁନାନାଂ କଉଳୀ ସିଦ୍ଧିର୍ନ ଜାୟତେ । ତନ୍ତ୍ରସାର ।

ମନ୍ତ୍ରତତ୍ତ୍ୱ, ମନ, ଦେବ ଓ ଧ୍ୟାନତତ୍ତ୍ୱ (୧) । ଭକ୍ତିମାର୍ଗର ଏଇ ବିଶେଷ ଦିଗଗୁଡ଼ିକ ପଞ୍ଚସଖାଙ୍କ ବିଶାଳ ସାହିତ୍ୟ ମଧ୍ୟରେ ଆଲୋଚିତ ହୋଇଛି । ଦାଣ୍ଡି ରାମାୟଣରେ ଏହାର ଏକ ସାଧାରଣ ପ୍ରକାଶ ଦେଖିବାକୁ ମିଳେ ।

ଭକ୍ତର ଭଗବାନଙ୍କଠାରେ ଏକ ବ୍ୟକ୍ତିଗତ ଭାବନା ଭକ୍ତିମାର୍ଗର ମୂଳକଥା । ଭକ୍ତ ପାଖିରେ ଭଗବାନ କେବଳ ସତ୍ତମାନ ନୁହନ୍ତି । ସେ ଜଣେ ଶକ୍ତିଶାଳୀ ଜୀବନ୍ତ ପୁରୁଷ । ସେ ଭକ୍ତକୁ ଦୟା କରି ପାରନ୍ତି, ପ୍ରେମ କରି ପାରନ୍ତି, ଭକ୍ତିଦ୍ୱାରା ଅସମ୍ଭବକୁ ସମ୍ଭବ କରାଇ ପାରନ୍ତି । ଭକ୍ତ ତାଙ୍କର ଅଭାବରେ ଦୁଃଖ ଓ ତାଙ୍କର ସୁନ୍ଦର ମୁଖ ଦେଖିଲେ ଅପାର ଆନନ୍ଦ ଲାଭ କରନ୍ତି । ଏଇ ଭାବରେ ଭକ୍ତକବି ଲେଖିଛନ୍ତି—ଜଗନ୍ନାଥ ବିପଦରେ ତାଙ୍କର କଷ୍ଟ ଫେଡ଼ନ୍ତି । ମନୋବାଞ୍ଛା ପୂର୍ଣ୍ଣ କରନ୍ତି । ଜଗନ୍ନାଥ ତାଙ୍କର ସୋଦର, ସଖା ଓ ପ୍ରାଣବନ୍ଧୁ । ଜଗନ୍ନାଥଙ୍କୁ ଦିନେ ଦିନ ବନ୍ଧିବା ହିଁ ତାଙ୍କର କାମନା (୨) ।

ଜ୍ଞାନାଶ୍ରୟୀ ଭଗବାନଙ୍କୁ ଚିନ୍ମୟ ବ୍ରହ୍ମରୂପରେ ସାକ୍ଷାତ୍ କରନ୍ତି । ଯୋଗୀ ଆପଣା ସାଧନାବଳରେ ପରମାତ୍ମାଙ୍କର ସତ୍ତା ଅନୁଭବ କରନ୍ତି । କିନ୍ତୁ ଭକ୍ତର କାମନା ଚିନ୍ମୟ ବ୍ରହ୍ମର ସାକ୍ଷାତ୍ ନୁହେଁ କିମ୍ବା ପରମ ତତ୍ତ୍ୱର ଅନ୍ତରୋପଲବ୍ଧି ନୁହେଁ । ଲଙ୍କାକାଣ୍ଡରେ ଭକ୍ତ ବୀରବାହୁଙ୍କୁ ରାମଚନ୍ଦ୍ର ବର ପ୍ରଦାନ କରିବାକୁ ଯିବାବେଳେ, ଭକ୍ତ ବୀରବାହୁ କହନ୍ତି—ତାର ଲଙ୍କାରେ ରାଜପଦ ଲୋଡ଼ା ନାହିଁ । ସ୍ୱର୍ଗରେ ଇନ୍ଦ୍ରପଦରେ କାମନା ନାହିଁ । କେବଳ ରାମଚନ୍ଦ୍ରଙ୍କ ନାମ ମୁଖରେ ଧରି ମରିବା ହିଁ ତାର ପ୍ରାର୍ଥନା (୩) । ଭଗବାନଙ୍କଠାରେ ଏକନିଷ୍ଠ ଭକ୍ତି ଓ ନାମ ନିଷ୍ଠା ବ୍ୟତୀତ ସବୁବେଳେ ଭକ୍ତିମାର୍ଗରେ ଭକ୍ତର ମାହାତ୍ମ୍ୟକୁ ସ୍ୱୀକାର କରାଯାଇଅଛି । ସ୍ୱୟଂ ଭଗବାନ ମଧ୍ୟ ଭକ୍ତର ଦାସ । ଭକ୍ତ ଦୁନିଆରେ ସବୁଠାରୁ ବଡ଼ । ଭଗବାନଙ୍କଠାରୁ ବି ସାନ ନୁହେଁ, ବରଂ ଭଗବାନଙ୍କ ସହିତ ସମାନ । ଲଙ୍କାକାଣ୍ଡରେ ରାମଚନ୍ଦ୍ର ଭକ୍ତ ବୀରବାହୁଙ୍କୁ କହୁଛନ୍ତି—ତୁ ମୋର ଜୀବର ଜୀବନ । ମୋ ପ୍ରାଣର ପଞ୍ଚଭୂତ । ମୋ ନିକଟରେ ତୋଠାରୁ କେହି ବଡ଼ ନାହିଁ । ମୋର ଯେ ଭକ୍ତ, ସେ ମୋଠାରୁ ବି ବଡ଼ (୪) । ବିନମ୍ର ଆଚରଣ ଓ ଆପଣାର

(୧) ତତ୍ତ୍ୱଜ୍ଞାନମିଦଂ ପ୍ରୋକ୍ତଂ ଦେବେଶ୍ୱରେ ଶୃଣୁ ଯତ୍ନତଃ
ଗୁରୁତତ୍ତ୍ୱଂ ମନ୍ତ୍ରତତ୍ତ୍ୱଂ, ମନସ୍ତତ୍ତ୍ୱଂ, ସୁରେଶ୍ୱର ।
ଦେବତତ୍ତ୍ୱଂ, ଧ୍ୟାନତତ୍ତ୍ୱଂ, ପଞ୍ଚତତ୍ତ୍ୱଂ ବରାନନେ । ନିର୍ବାଣ ତନ୍ତ୍ର ।
(୨) ଲଙ୍କା, ପୃ: ୩୭୨ । (୩) ଲଙ୍କା, ପୃ: ୨୨୧ । (୪) ଲଙ୍କା, ପୃ: ୨୧୨ ।

ଦୀନତା ପ୍ରଦର୍ଶନ ଭକ୍ତର ଗୋଟିଏ ବିଶିଷ୍ଟ ଗୁଣ । ଏହା ଭଗବାନଙ୍କଠାରେ ଆତ୍ମସମର୍ପଣ ପାଇଁ ତାଙ୍କୁ ଅନୁପ୍ରେରିତ କରେ । ଭକ୍ତ ବଳରାମ ଦାସ ବହୁସ୍ଥଳରେ ନିଜକୁ ଅଜ୍ଞାନ, ମୂର୍ଖ, ଅଳ୍ପବୁଦ୍ଧି ବୋଲି ବର୍ଣ୍ଣନା କରି ଅଛନ୍ତି । ଭଗବାନଙ୍କଠାରେ ଆତ୍ମସମର୍ପଣ ଭାବନା ତାଙ୍କ କୃତିରେ ସର୍ବତ୍ର ଦେଖାଯାଏ ।

ଭକ୍ତିମାର୍ଗର ସାଧାରଣ ପଦ୍ଧତି ମଧ୍ୟରୁ ଦାସ୍ୟଭାବକୁ ବଳରାମ ଦାସ ପ୍ରାଧାନ୍ୟ ଦେଇଅଛନ୍ତି । ଏହାହିଁ ତାଙ୍କର ବିଶେଷତ୍ୱ । ଭକ୍ତିମାର୍ଗରେ ସିଦ୍ଧାନ୍ତ ଅନୁସାରେ କେତେକ ବିଶେଷ ସ୍ତର ଦେଇ ଗତି କରିବା ପରେ ସାଧକଠାରେ ଭଗବାନଙ୍କ ପ୍ରତି ପ୍ରେମ ଉଦୟ ହୁଏ; ଏକନିଷ୍ଠ ଅନୁରାଗ ଜାତ ହୁଏ । କ୍ରମ ଅନୁସାରେ ଏହି ନିର୍ଦ୍ଧାରିତ ସ୍ତରମାନ ହେଉଛି— ଶ୍ରଦ୍ଧା, ସାଧୁସଙ୍ଗ, ଭଜନକ୍ରିୟା, ଅନର୍ଥନିବୃତ୍ତି, ନିଷ୍ଠା, ରୁଚି, ଆସକ୍ତି, ଭାବ ଓ ପ୍ରେମ (୧) । ଶେଷ ସ୍ତରରୁ ଉତ୍ତୀର୍ଣ୍ଣ ହୋଇ, ଭକ୍ତଠାରେ ପ୍ରେମ ଉଦୟ ହେବାପରେ ସାଧନା ଭେଦରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ପାଞ୍ଚପ୍ରକାର ସମ୍ବନ୍ଧ ସ୍ଥାପିତ ହୋଇଥାଏ । ସେ ଗୁଡ଼ିକ ହେଉଛି—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର । କୃଷ୍ଣଭକ୍ତି ଶାଖାରେ ଶାନ୍ତ, ବାତ୍ସଲ୍ୟ ଓ ମାଧୁର୍ଯ୍ୟକୁ ସାଧାରଣତଃ ଗ୍ରହଣ କରାଯାଇଥାଏ । ସମୟ ସମୟରେ ମଧୁର୍ଯ୍ୟ ପ୍ରତି ମାତ୍ରାତିରିକ୍ତ ଆସକ୍ତି ମଧ୍ୟ ପ୍ରକାଶ ପାଇଥାଏ । କିନ୍ତୁ ରାମଭକ୍ତି ଶାଖାରେ ସଖ୍ୟ ଓ ଦାସ୍ୟର ପ୍ରାଧାନ୍ୟ । ଗୁହକର ଭକ୍ତିରେ ସଖ୍ୟ, ସୁଗ୍ରୀବ ଓ ବିଭୀଷଣ ଆଦିଙ୍କ ଭକ୍ତିରେ ସଖ୍ୟ ଓ ଦାସ୍ୟ, ହନୁମାନ, ଅଙ୍ଗଦ ଆଦିଙ୍କ ଭକ୍ତିରେ କେବଳ ଦାସ୍ୟ ଭାବର ପ୍ରକାଶ ଦେଖିବାକୁ ମିଳେ । ରାମଭକ୍ତିମାର୍ଗର ପ୍ରସିଦ୍ଧ ସାଧକ ଗୋସ୍ୱାମୀ ତୁଳସୀ ଦାସ ମଧ୍ୟ ଦାସ୍ୟ-ଭାବର ସବୁଠାରୁ ଅଧିକ ପ୍ରଶଂସା କରିଯାଇଅଛନ୍ତି । ଗୋଟିଏ ସ୍ଥାନରେ ସେ କହିଛନ୍ତି— "ସେବ୍ୟ ସେବକ ଭାବ ବିନା ସଂସାରରୁ ତ୍ରାଣ ଲଭିବା ଅସମ୍ଭବ, ଏହା ଭାବି ରାମନାମ ଭଜନ କରିବା ଉଚିତ" (୨) । ପ୍ରସଙ୍ଗକ୍ରମେ ଦାଣ୍ଡି ରାମାୟଣରେ

---

(୧) ଆଦୌ ଶ୍ରଦ୍ଧା ତତଃ ସାଧୁସଙ୍ଗୋଽଥ ଭଜନକ୍ରିୟା
ତତୋଽନର୍ଥନିବୃତ୍ତିଃ ସ୍ୟାତ୍ତତୋ ନିଷ୍ଠା ରୁଚିସ୍ତତଃ ।
ଅଥାସକ୍ତିସ୍ତତୋ ଭାବସ୍ତତଃ ପ୍ରେମାଭ୍ୟୁଦଞ୍ଚତି
ସାଧକାନାମୟଂ ପ୍ରେମ୍ଣଃ ପ୍ରାଦୁର୍ଭାବେ ଭବେତ୍ କ୍ରମଃ ।
ଭକ୍ତିରସାମୃତ ସିନ୍ଧୁ ।

(୨) ହିନ୍ଦୀ ସାହିତ୍ୟ କୀ ଭୂମିକା—ଡା: ହଜାରୀ ପ୍ରସାଦ ଦ୍ୱିବେଦୀ, ପୃ: ୮୨-୮୪ ।

ଜଗନ୍ନାଥ ଓ ରାମଚନ୍ଦ୍ରଙ୍କୁ ବଳରାମ ଦାସ ସେବକ ଭାବରେ ହିଁ ପ୍ରାର୍ଥନା କରିଅଛନ୍ତି । ସେବକ ଭକ୍ତ ଆଖିରେ ଆରାଧ୍ୟ ଦେବତାଙ୍କ ଐଶ୍ୱର୍ଯ୍ୟ ମହିମାହିଁ ଅଧିକ ପରିସ୍ଫୁଟ ହୋଇଥାଏ । ଜଗନ୍ନାଥଙ୍କ ଐଶ୍ୱର୍ଯ୍ୟର ବର୍ଣ୍ଣନା କରି ବଳରାମ ଦାସ ଲେଖିଛନ୍ତି—"ସେ ଅନନ୍ତ କୋଟି ବ୍ରହ୍ମାଣ୍ଡର ଈଶ୍ୱର । ବିଷ୍ଣୁକ୍ଷେତ୍ର ମଧ୍ୟରେ ବିରାଜିତ ହିଙ୍ଗୁଳାକ୍ଷେଶ୍ୱର ରାଜା । ବ୍ରହ୍ମା, ରୁଦ୍ର, ଚନ୍ଦ୍ର ଆଦି ଧ୍ୟାନରେ ତାଙ୍କ ବନ୍ଦନା କରନ୍ତି । ସେ ମର୍ତ୍ତ୍ୟରେ ସ୍ୱୟଂ ଅବତୀର୍ଣ୍ଣ ନାରାୟଣ, ପରମବ୍ରହ୍ମ ଓ ଅନାଦି" (୧) । ଜଗନ୍ନାଥଙ୍କ ମନ୍ଦିର ଓ ଅଧିବାସ କ୍ଷେତ୍ରରେ ମଧ୍ୟ ଐଶ୍ୱର୍ଯ୍ୟଭାବନା ନିହିତ । "ଜଗନ୍ନାଥଙ୍କ ପାଟଣା ନଗରର ନାମ ପୁରୁଷୋତ୍ତମ ପୁରୀ । ବ୍ରହ୍ମାଙ୍କ ଦ୍ୱାରା ଅତି ଯତ୍ନରେ ତାହା ସର୍ଜ୍ଜିତ । ଲବଣ ସମୁଦ୍ର ଏହି ନଗରର ଗଡ଼ ଖାଇ । ମାର୍କଣ୍ଡେଶ୍ୱର ଲିଙ୍ଗ ଏହି ନଗରର ଦଣ୍ଡପାଟ । ଏହାର ସମସ୍ତ ପୁର ସୁବର୍ଣ୍ଣରେ ତିଆରି ଓ ଶୋଭନୀୟ । ସେଠାରେ କାଳଦଣ୍ଡର ପ୍ରଭା ପ୍ରବେଶ କରିପାରେ ନାହିଁ ।" ଭକ୍ତ ଆରାଧ୍ୟ ଦେବତାଙ୍କର ଐଶ୍ୱର୍ଯ୍ୟ ଓ ମହିମାରେ ବିଭୋର ହୋଇ ତାଙ୍କର ସେବକ ଭାବେ, ନିଜେ ମଧ୍ୟ ଗୌରବ ବୋଧ କରି ଥାଆନ୍ତି । ଆରାଧ୍ୟ ଦେବତାଙ୍କର ଦୟାର କଣିକା ସହିତ ପାର୍ଥିବ ଜଗତର କୌଣସି ମୂଲ୍ୟବାନ୍ ବସ୍ତୁର ତୁଳନା ଖୋଜି ପାଇ ହୁଏ ନାହିଁ । କବି ବଳରାମ ଦାସ କହିଛନ୍ତି— "ଦେବତାମାନେ ବି ଜଗନ୍ନାଥଙ୍କ ଦୟାର ପାତ୍ର । ଜଗନ୍ନାଥଙ୍କ କିଞ୍ଚିତ ସୁଦୟା ଯେ ଲାଭ କରେ, ତାର ଜଗତରେ ତୁଳନା ନାହିଁ ।" ଏହି ଦୃଷ୍ଟିରେ କବିଙ୍କ ଆରାଧ୍ୟ ଦେବତା ପୁଣି, "ଶରଣ ବତ୍ସଳ" ଓ "କରୁଣା ସାଗର" । ସେ ଦୁଇଭୁଜ ଟେକି ଜଗତଜନଙ୍କୁ ଶରଣ ଯାଚନ୍ତି ।

ମଧୁର ଭାବରେ ଯେଉଁ ଭକ୍ତମାନେ ଭଗବାନଙ୍କୁ ଆରାଧନା କରନ୍ତି ସେମାନଙ୍କଠାରେ ଭଗବାନଙ୍କ ଲୀଳାବିଳାସ, ପ୍ରେମଗାଥା, ଶୃଙ୍ଗାରବିଚେଷ୍ଟା ଓ ମଦନମୋହନ ରୂପ ହିଁ ପ୍ରଧାନ ହୋଇ ଉଠେ । କହିବା ବାହୁଲ୍ୟ, ଅନେକ ସମୟରେ ଆଧ୍ୟାତ୍ମିକ ଶୁଚିତାର ହାନି ଘଟେ । କିନ୍ତୁ ସେବକ ଭାବରେ ଯେଉଁମାନେ ଆରାଧ୍ୟ ଦେବତାଙ୍କଠାରେ ଆତ୍ମସମର୍ପଣ କରନ୍ତି, ସେମାନଙ୍କଠାରେ ଅନ୍ତର୍ନିଷ୍ଠା ଓ ଆଧ୍ୟାତ୍ମିକ ଶୁଚିତାର ଭୂୟୋବିକାଶ ପରିଦୃଷ୍ଟ ହୁଏ । ଗର୍ବ ଓ ଅହଂକାରର ସୀମା ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ଭକ୍ତ-ଭାବେ ବଳରାମ ଦାସ ଏହି ଚରମ ସୋପାନକୁ ଉଠିଥିଲେ । "ତୁମର ଚରଣ

(୧) ଏଠାରେ ସମସ୍ତ ଉଦ୍ଧୃତ ଅଯୋଧ୍ୟାକାଣ୍ଡର ଗ୍ରନ୍ଥାରମ୍ଭସ୍ଥ ପ୍ରାର୍ଥନାରୁ ଦିଆଯାଇଛି ।

ଧୂଳି ତଳେ ମୋର ମଥା ନତ କରିଦିଅ" (୧) ବୋଲି ପରମପୁରୁଷଙ୍କଠାରେ ବିଶ୍ୱକବିଙ୍କର ଏଇ ପ୍ରାର୍ଥନାଠାରୁ, ଜଗନ୍ନାଥଙ୍କର ଚରଣସେବକ ରୂପେ ଭକ୍ତକବି ବଳରାମ ଦାସଙ୍କର ପ୍ରାର୍ଥନା କମ୍ ଗଭୀର, କମ୍ ମର୍ମସ୍ପର୍ଶୀ ନୁହେଁ ।

**ଯୋଗସାଧନାର ପରମ୍ପରା—**

ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡରେ ସୀତା ବିସର୍ଜନ ପରେ ଶୋକାକୁଳିତ ରାମଚନ୍ଦ୍ରଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ଲକ୍ଷ୍ମଣ, ଯୋଗସାଧନା ପାଇଁ ଉପଦେଶ ଦେଇଛନ୍ତି । ଯୋଗମାର୍ଗ ଓ କାୟାସାଧନା ଆଦିର ବିସ୍ତୃତ ବର୍ଣ୍ଣନା ବଳରାମ ଦାସଙ୍କ ରଚିତ ଅମରକୋଷ ଗୀତା ଓ ବ୍ରହ୍ମଗୀତା ଆଦିରେ ଦେଖିବାକୁ ମିଳେ । ଏଯୁଗର ଧର୍ମଧାରାରେ ଯୋଗମାର୍ଗର ଯେଉଁ ପ୍ରକାଶ ଦେଖିବାକୁ ମିଳେ, ଭାରତୀୟ ଧର୍ମସାଧନାରେ ବହୁ ପ୍ରାଚୀନ କାଳରୁ ତାହା ପ୍ରଚଳିତ । ପ୍ରାଚୀନ ସାହିତ୍ୟରେ ଯୋଗଶବ୍ଦ ବିଭିନ୍ନ ଅର୍ଥରେ ପ୍ରଯୁକ୍ତ ହୋଇଥିଲେ ବି ଏହାର ଆଧ୍ୟାତ୍ମିକ ଅର୍ଥ ଏକାବେଳକେ ସାମ୍ପ୍ରତିକ ବିଜ୍ଞାନ ନୁହେ । ନାନା ପ୍ରକାର ସାଧନକ୍ରିୟା ଓ ଚିନ୍ତାର ଘାତପ୍ରତିଘାତ ଦ୍ୱାରା ଏହି ଯୋଗମାର୍ଗ ଖ୍ରୀଷ୍ଟ ଦ୍ୱିତୀୟ ଶତକରୁ ବିକଶିତ ହୋଇ ଆସିଅଛି । କଠ, ଶ୍ୱେତାଶ୍ୱତର ଆଦି ଉପନିଷଦଗୁଡ଼ିକରେ ଯୋଗବିଦ୍ୟାର ଉଲ୍ଲେଖ ମିଳୁଥିଲେ ହେଁ ପାତଞ୍ଜଳ ଯୋଗଶାସ୍ତ୍ର ହିଁ ଏହି ପ୍ରସଙ୍ଗରେ ପ୍ରଥମ ପ୍ରାମାଣିକ ଗ୍ରନ୍ଥ । ଏହା ଉପରେ ଲିଖିତ ଟୀକାଗ୍ରନ୍ଥଗୁଡ଼ିକ ମଧ୍ୟରେ ବ୍ୟାସଦେବଙ୍କ ଭାଷ୍ୟ ବିଜ୍ଞାନ ଭିକ୍ଷୁଙ୍କ ବାର୍ତ୍ତିକ, ବାଚସ୍ପତି ମିଶ୍ରଙ୍କ ଟୀକା ଓ ଭୋଜଦେବଙ୍କ ବୃତ୍ତି ଆଦି ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ଶହେ ପଞ୍ଚାନବେ ଗୋଟି ସୂତ୍ରସମନ୍ୱିତ ପାତଞ୍ଜଳ ଯୋଗ ଶାସ୍ତ୍ର, ସମାଧି ପାଦ, ସାଧନପାଦ, ବିଭୂତିପାଦ ଓ କୈବଲ୍ୟ ପାଦ ରୂପେ ଚାରୋଟି ପାଦରେ ବିଭକ୍ତ । ମୂଳ ପାତଞ୍ଜଳ ଯୋଗଶାସ୍ତ୍ରରେ "ଚିତ୍ତବୃତ୍ତି ନିରୋଧ"କୁ ଯୋଗ ବୋଲି କୁହାଯାଇଅଛି । ବ୍ୟାସଦେବ ତାଙ୍କ ଭାଷ୍ୟରେ "ସମାଧି"କୁ ଯୋଗ କହିଅଛନ୍ତି । ଚିତ୍ତବୃତ୍ତିର ନିରୋଧ ଦ୍ୱାରା ଅବିଦ୍ୟାଦି ପଞ୍ଚକ୍ଲେଶ ନଷ୍ଟ ହୁଏ । ଏହାଦ୍ୱାରା ସାତ୍ତ୍ୱିକ ନିର୍ମଳଭାବ ବୁଦ୍ଧିରେ ପ୍ରତିଷ୍ଠିତ ହେଲେ, ଯେଉଁ "ସହଜାବସ୍ଥା"ପ୍ରାପ୍ତ ହୁଏ ତାହାହିଁ ପ୍ରକୃତ "ଚିତ୍ତବୃତ୍ତି ନିରୋଧ" ବା ଯୋଗ । ପାତଞ୍ଜଳି ଯୋଗଦର୍ଶନର ସମାଧିପାଦରେ କୁହାଯାଇଅଛି, ସାଧାରଣ ଜୀବ ବା ପୁରୁଷ ଅବିଦ୍ୟାଦି

(୧) ଆମାର ମାଥା ନତ କରେ ଦାଓ ହେ ତୋମାର ଚରଣ ଧୁଲାର ତଲେ—
ଗୀତାଞ୍ଜଳି ।

କ୍ଳେଶର ଅଧୀନ ( ଅବିଦ୍ୟାଦି କ୍ଳେଶ—ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ); ଜନ୍ମମରଣ ଚକ୍ରଗ୍ରସ୍ତ ଓ ପାପପୁଣ୍ୟ ବଶବର୍ତ୍ତୀ । କିନ୍ତୁ ଈଶ୍ୱର ଅନନ୍ତ ଜ୍ଞାନର ଆକର, ଦୋଷହୀନ, କ୍ଳେଶହୀନ, ନିତ୍ୟଶୁଦ୍ଧ ଓ ନିତ୍ୟମୁକ୍ତ । ଏହି ଈଶ୍ୱର ବାଚକ ଶବ୍ଦ ହେଉଛି "ପ୍ରଣବ" ବା ଓଁକାର । ଏହି ନାମର (ଓଁକାର) ଜପ ଓ ନାମୀଙ୍କ (ଈଶ୍ୱର) ଚିନ୍ତାଦ୍ୱାରା ସାଧକର ଚିତ୍ତ ଏକାଗ୍ର ହୁଏ । ଫଳରେ ସାଧକ ବ୍ୟାଧି (ଶରୀର ପୀଡ଼ା), ସ୍ତ୍ୟାନ (ମାନସିକ ଜଡ଼ତା), ସଂଶୟ (ଯୋଗ ବିଷୟକ ସଂଶୟ), ଅବିରତି (ବିଷୟ ଭୋଗର ତୃଷ୍ଣା), ଭ୍ରାନ୍ତ ଦର୍ଶନ (ବିପରୀତ ଜ୍ଞାନ), ଅଲବ୍ଧ ଭୂମିକତ୍ୱ (ଚିତ୍ତରେ ସମାଧି ଅନୁକୂଳ ଅବସ୍ଥାର ଅଭାବ) ଆଦି ବାଧା ଦୂର କରିବାକୁ ସକ୍ଷମ ହୁଏ । ଏହାର ଦ୍ୱିତୀୟ ପାଦ ବା ସାଧନ ପାଦରେ ତପସ୍ୟା, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନକୁ ପ୍ରାଧାନ୍ୟ ଦିଆଯାଇଅଛି । ସମାଧି ଭାବନାର ବିକାଶ ଓ "କ୍ଳେଶ ତନୁକରଣ" ଅର୍ଥାତ୍ ଅବିଦ୍ୟାଦି କ୍ଳେଶଗୁଡ଼ିକର ହ୍ରାସ ଘଟିବା ଦ୍ୱାରା "ସମାଧି ଭାବନା" ସହଜସିଦ୍ଧ ହୋଇଥାଏ । ଏହି ପ୍ରସଙ୍ଗରେ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ଆଦି ବାହ୍ୟାଙ୍ଗଗୁଡ଼ିକ ଧ୍ୟାନ, ଧାରଣା, ସମାଧି ଆଦି ଅନ୍ତରଙ୍ଗଗୁଡ଼ିକ ପ୍ରତି ବିଶେଷ ସ୍ଥାନ ଦିଆ ହୋଇଅଛି । ବିଭୂତି ପାଦ ହେଉଛି ଯୋଗୀର ତୃତୀୟ ଅବସ୍ଥା । ଏହି ଅବସ୍ଥାରେ ଯୋଗୀ ସମାଧି ପୂର୍ବ ଅବସ୍ଥାର ସଂସ୍କାର, ଆଉ ଚିତ୍ତବୃତ୍ତି ନିରୋଧ ଜନିତ ସଂସ୍କାର ମଧ୍ୟରେ ଦ୍ୱନ୍ଦ୍ୱ ଅନୁଭବ କରେ । ସ୍ୱର୍ଗର ଦେବତାମାନେ ଯୋଗୀକୁ ନାନା ଭାବରେ ପ୍ରଲୁବ୍ଧ କରନ୍ତି । କିନ୍ତୁ ପ୍ରକୃତ ଯୋଗୀ ଏଥିରେ ଭ୍ରଷ୍ଟ ନ ହୋଇ ଅବିଚଳିତ ରହନ୍ତି । ସୂତ୍ରକାରମାନେ କୈବଲ୍ୟ ପାଦରେ ପ୍ରଥମେ ଉଲ୍ଲେଖ କରି-ଅଛନ୍ତି ଯେ, ଏହି ସମୟରେ ଯୋଗୀ ପୂର୍ବଜନ୍ମ ସଂସ୍କାରସିଦ୍ଧି, ରସାୟନ-ସିଦ୍ଧି, ମନ୍ତ୍ରସିଦ୍ଧି, ତପସିଦ୍ଧି ଓ ସମାଧିସିଦ୍ଧି ଆଦି ଲାଭ କରିଥାଆନ୍ତି । ଏହି ସିଦ୍ଧିଗୁଡ଼ିକ ପ୍ରଥମେ ସାଧକକୁ ଲୋକରେ ପ୍ରତିଷ୍ଠା ଆଣିଦିଏ । କିନ୍ତୁ କୈବଲ୍ୟ ପ୍ରାପ୍ତିରେ ବାଧା ଘଟାଏ । ସମାଧି ଦ୍ୱାରା ସମସ୍ତ ଅନାଗତ ବା ଭାବୀ କର୍ମ ଦଗ୍ଧ ବୀଜ ଭଳି ନାଶ ହୋଇ ଗଲେ ବି ପ୍ରାରବ୍ଧ ଜୀବିତ ଥାଏ । ଯୋଗଶକ୍ତି ବଳରେ ସାଧକ ଅନେକ ସମୟରେ ଏକାଧିକ କାୟା ଭୋଗ କରି ଏଥିରୁ ମୁକ୍ତ ହୁଏ । ସକଳପ୍ରକାର କ୍ଳେଶ ଓ କର୍ମବନ୍ଧନରୁ ନିବୃତ୍ତ ହୋଇ ଯୋଗୀ ଚରମ ସିଦ୍ଧି ଲାଭ କରେ । ଏହି ଅବସ୍ଥାରେ ପୁରୁଷ (ଜୀବାତ୍ମା) ବିଶୁଦ୍ଧ ସ୍ୱରୂପରେ ଅବସ୍ଥାନ କରେ । ତାର ସ୍ୱରୂପ

ଶରୀର ଭିତରର ଉପାଦାନରେ ଲୀନ ହୋଇଯାଏ (୧)। ଏହାହିଁ ଯୋଗ-ଶାସ୍ତ୍ରର ପରମ ପ୍ରତିପାଦ୍ୟ ।

**ଦାଣ୍ଡିରାମାୟଣରେ ଯୋଗ ପରମ୍ପରା—**

ପାତଞ୍ଜଳ-ଯୋଗଶାସ୍ତ୍ରରେ ଯୋଗମାର୍ଗର ଯେଉଁ ସବୁ ପ୍ରକ୍ରିୟା କଥା କୁହା ଯାଇଅଛି, ତାହାର ମୂଳ ପ୍ରକାଶ ସାଧାରଣତଃ ଯୋଗ ସମ୍ବନ୍ଧରେ ପରବର୍ତ୍ତୀ କାଳରେ ରଚିତ ସାହିତ୍ୟରେ ଦେଖିବାକୁ ମିଳେ । ଅବଶ୍ୟ ବଭିନ୍ନସ୍ଥଳରେ ପାରିଭାଷିକ ଶବ୍ଦଗୁଡ଼ିକର ପାର୍ଥକ୍ୟ ସ୍ପଷ୍ଟ । ସାଧକ ଓ ଭକ୍ତ-କବିମାନଙ୍କର ଯୋଗ ସମ୍ବନ୍ଧୀୟ ରଚନାଗୁଡ଼ିକ ଅନେକ ସମୟରେ ସାଧକ ଗୋଷ୍ଠୀଙ୍କ ପ୍ରତି ଅଭିପ୍ରେତ ଥିଲା । କୌଣସି ଗୁରୁଙ୍କର ସହାୟତା ବିନା ଯୋଗସାଧନ ଅସମ୍ଭବ ବୋଲି ସର୍ବଦା କୁହାଯାଇଅଛି । ଏଇକଥା ଗୋଟିଏ ସ୍ଥାନରେ ପଞ୍ଚସଖା ଗୋଷ୍ଠୀର ଅଚ୍ୟୁତାନନ୍ଦ ସ୍ପଷ୍ଟ ଭାବରେ କହିଛନ୍ତି (୨)। ଏଣୁ ଏଇ ପାରିଭାଷିକ ଶବ୍ଦଗୁଡ଼ିକର ପ୍ରକୃତ ବ୍ୟାଖ୍ୟା ଓ ଅର୍ଥ କେହି ସାଧକ ନ ହେଲେ ବୁଝିବା ସମ୍ଭବ ନୁହେ । ପରବର୍ତ୍ତୀକାଳରେ ବହୁ ଧର୍ମ ସମ୍ପ୍ରଦାୟ ଏଇ ଯୋଗମାର୍ଗ ଉପରେ ଗୁରୁତ୍ୱ ଆରୋପ କରିଥିବାର ଦେଖାଯାଏ । ଗୋରଖନାଥଙ୍କ ପ୍ରବର୍ତ୍ତିତ ନାଥପନ୍ଥୀ, ସହଜଯାନୀ ଓ ବଜ୍ରଯାନୀ ସାଧକ-ଗଣ, ମହାରାଷ୍ଟ୍ରର ନିବୃତ୍ତିନାଥ ଓ ଜ୍ଞାନଦେବ ଆଦି, କବୀର ପ୍ରବର୍ତ୍ତିତ ନିର୍ଗୁଣ ମାର୍ଗର ସାଧକଗଣ ଯୋଗସାଧନାକୁ ବଶିଷ୍ଟ ସ୍ଥାନ ଦେଇଅଛନ୍ତି । ବଳରାମ ଦାସ, ଜଗନ୍ନାଥ ଦାସ ଓ ଅଚ୍ୟୁତାନନ୍ଦ ଆଦି ଓଡ଼ିଶାର ପଞ୍ଚସଖାମାନେ ଯୋଗସାଧନା ପ୍ରସଙ୍ଗରେ ବହୁ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ଏମାନଙ୍କ ପ୍ରବର୍ତ୍ତିତ ଯୋଗମାର୍ଗରେ ଗୁରୁବାଦକୁ ପ୍ରାଧାନ୍ୟ ଦେଇଛନ୍ତି । ଏମାନଙ୍କ ମତରେ ମନୁଷ୍ୟ ଦେହ ଭିତରେ ପରମାତ୍ମା ବିଦ୍ୟମାନ (୩)। କିନ୍ତୁ ତାଙ୍କର ପରିଚୟ ସାଧନା ବିନା ଘଟେ ନାହିଁ । ଏ ସାଧନା ଯୋଗ ସାଧନା । ଏଇ ସାଧନାର ବିଶେଷ ଅଙ୍ଗ ଗୁଡ଼ିକରେ ସିଦ୍ଧ ହେବାକୁ ବାରବର୍ଷ

(୧) ଡା: ହଜାରୀପ୍ରସାଦ ଦ୍ୱିବେଦୀଙ୍କ ନାଥ ସମ୍ପ୍ରଦାୟ ଗ୍ରନ୍ଥର "ପାତଞ୍ଜଳ ଯୋଗ ଦର୍ଶନ" ଶୀର୍ଷକ ଆଲୋଚନାର ଅବଲମ୍ବନରେ ଲିଖିତ ।

(୨) "ଏ ତତ୍ତ୍ୱ ଜାଣନ୍ତି ସେ ଯୋଗୀ, ଶିକ୍ଷା ଘେନିବ ତାଙ୍କୁ ମାଗି ।
ବିନା ସଦ୍‌ଗୁରୁ ନ କହିଲେ, କେ ଜାଣିପାରିବ ଶଯ୍ୟଳେ ।"
ଚଉରାଶୀଆଜ୍ଞା—ଅଚ୍ୟୁତାନନ୍ଦ—ପାଟୀ, ନବମ କଳି ।

(୩) "ଏ ପଞ୍ଚଭୂତ ମଧ୍ୟେ ବ୍ୟାପୀ । ଖେଳନ୍ତି ପରମ ପରମ-ସ୍ୱରୂପୀ ॥
ବ୍ରହ୍ମଶଙ୍କୁଳ—ଅଚ୍ୟୁତାନନ୍ଦଦାସ, ନବମ କଳି ।

ଅବଶ୍ୟକ ବୋଲି ଅଚ୍ୟୁତାନନ୍ଦ କହୁଛନ୍ତି । ସେ ଯେଉଁ ବାରବର୍ଣ୍ଣରେ ବାରଗୋଟି ସାଧନାର ଉଲ୍ଲେଖ କରିଅଛନ୍ତି ତାହା ହେଉଅଛି—ମନ୍ତ୍ର ସାଧନା, ଯନ୍ତ୍ର, ତନ୍ତ୍ର, ପୂଜା, ଛାୟା, ଅବାଡ଼ ଓ ଜ୍ୟୋତସାଧନା, ପବନ ଅଭ୍ୟାସ, ସମାଧି ସାଧନା, ରୂପଚିନ୍ତା, ଅଧାର ସାଧନା ଓ ଦକ୍ଷିଣ ସାଧନା । ଏଇ କ୍ରମଗୁଡ଼ିକର ବିଶେଷ ତାତ୍ପର୍ଯ୍ୟ ସମ୍ବନ୍ଧରେ ବିଶେଷ କିଛି କହିବା କଠିନ । ତେବେ ପାତଞ୍ଜଳ-ଯୋଗମାର୍ଗ ସହିତ ଏହାର ଯେ ଅନେକ ସାମ୍ୟ ଅଛି, ତାହା ସହଜରେ ଲକ୍ଷ୍ୟ କରାଯାଇପାରେ । ପୁଣି ଦାଣ୍ଡି-ରାମାୟଣରେ ଅଷ୍ଟାଙ୍ଗଯୋଗକୁହିଁ ପ୍ରାଧାନ୍ୟ ଦିଆଯାଇଅଛି । ଏଥିରେ କୁହାଯାଇଛି—ଅଷ୍ଟାଙ୍ଗ ଯୋଗ ବ୍ୟତୀତ ଅନ୍ୟଯୋଗଗୁଡ଼ିକ କେବଳି ସୂତାରେ ମତ୍ତଗଜ ବନ୍ଧନ ଭଳି ଅସାର (୧) । ଦାଣ୍ଡି ରାମାୟଣରେ ଯୋଗ ପ୍ରସଙ୍ଗ ଉଲ୍ଲେଖ କରି ବଳରାମ ଦାସ ଶରୀରଭେଦ ପ୍ରତି ପ୍ରଥମେ ଦୃଷ୍ଟି ଦେଇଛନ୍ତି । ଶରୀରଭେଦ ଅର୍ଥ ଦେହ ଭିତରେ କଳ୍ପିତ ଷଡ଼ଚକ୍ରାଦି ଭେଦ ସୂଚକ (୨) । ପ୍ରାଣଶକ୍ତିକୁ ଗୁହ୍ୟ, ଲିଙ୍ଗ, ନାଭି, ହୃଦ, କଣ୍ଠ ଆଦିର ବିଭିନ୍ନ ଚକ୍ର ଦେଇ ଲଲାଟଚକ୍ର ବା ଗୋଲହାଟ ପର୍ଯ୍ୟନ୍ତ ଟେକି ନେବାଲାଗି ଏହା ଏକ ବିଶେଷ ସାଧନା । ଶରୀରରେ ଏଇ ସ୍ଥାନଗୁଡ଼ିକୁ ଏମାନେ ଗୋଟିଏ ଗୋଟିଏ ଚକ୍ର ବା କମଳ ବୋଲି କଳ୍ପନା କରିଛନ୍ତି । ପୁଣି ଏଇ ପ୍ରତ୍ୟେକ ଚକ୍ରରେ ବିଭିନ୍ନ "ଅକ୍ଷର ବିସାଣ" ଓ ବିଶେଷ ବିଶେଷ ଦେବତାଙ୍କର ଅଧିବାସ କଳ୍ପନା କରା ହୋଇଅଛି ।

ଯୋଗମାର୍ଗ ପ୍ରସଙ୍ଗରେ ସଂଯମ ଓ ବ୍ରହ୍ମଚର୍ଯ୍ୟ ଉପରେ ବଳରାମ ଦାସ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଅଛନ୍ତି । ସେ ବିନ୍ଦୁକୁ (ବୀର୍ଯ୍ୟବିନ୍ଦୁ) ବ୍ରହ୍ମ ଓ ବ୍ରହ୍ମମୟ ବ୍ରହ୍ମାଣ୍ଡ ବୋଲି କହୁଅଛନ୍ତି । ଏଇ ଶୁକ୍ଳବର୍ଣ୍ଣ ବିନ୍ଦୁ ହିଁ ମହାରସ । ଏଇ ମହାରସ ଯଦି ଶରୀରରୁ ବାହାର ହୋଇଯାଏ, ତେବେ ପ୍ରାଣିଗଣ ମୃତ୍ୟୁମୁଖରେ ପଡ଼ନ୍ତି । ଏଇ ମହାରସ ଥିବା ସ୍ଥାନ ପ୍ରାଣଲିଙ୍ଗ ବୋଲି କଥିତ । "ଯୋଗଯୁକ୍ତ ପ୍ରାଣୀ" ଅର୍ଥାତ୍ ଯୋଗୀମାନେ ଏ ମହାରସକୁ ଓଲଟ ଦିଗରେ, ଅର୍ଥାତ୍ ଊର୍ଦ୍ଧ୍ୱମାର୍ଗରେ ପରିଚାଳିତ କରନ୍ତି । ସେମାନେ ରମଣୀ

(୧) ଉତ୍ତର, ପୃ: ୧୨୪-୧୨୫ ଲକ୍ଷ୍ମଣଙ୍କର ରାମଚନ୍ଦ୍ରଙ୍କୁ ଶାନ୍ତ୍ୱନା ବାକ୍ୟରେ ଯୋଗ ପ୍ରସଙ୍ଗ ଦ୍ରଷ୍ଟବ୍ୟ ।

(୨) ଗୁପ୍ତଗୀତା—ବଳରାମ ଦାସ, ୩ୟ ଅଧ୍ୟାୟରେ ଷଡ଼ଚକ୍ର ଓ ୫୦ ଅକ୍ଷର ବିସାଣ ଭେଦ ଆଦି ଦ୍ରଷ୍ଟବ୍ୟ ।

ଗ୍ରହଣ କରନ୍ତି ନାହିଁ । ସ୍ତ୍ରୀ ସଙ୍ଗରୁ ଦୂରରେ ରହନ୍ତି । ଏହାହିଁ ବ୍ରହ୍ମସାଧନା । ଯମ ନିୟମ ଆଦି ଦ୍ୱାରା ଏହା ସିଦ୍ଧ ହୁଏ । ପ୍ରକୃତିକି ଅନ୍ତର ନ କଲେ ମହାରସ ଉଜାଣି ବହେ ନାହିଁ । ଯାହାର ଇନ୍ଦ୍ରିୟ ମୁଖରେ ଧାତୁ ବା ବୀର୍ଯ୍ୟଶକ୍ତି ବାହାର ହୋଇଯାଏ, ସିଏ ଅଜପା (ଅଜପା ଗାୟତ୍ରୀ) ଜପ କରନ୍ତି ନାହିଁ, ସେ ମହାତ୍ମା ନୁହନ୍ତି । ସେ ଯୋଗୀ ନୁହନ୍ତି । ପରମବ୍ରହ୍ମ ପୁରୁଷ ସହିତ ଯାହାଙ୍କର ପରିଚୟ ଘଟିଅଛି, ଆତ୍ମା ସହିତ ସିଏ ପ୍ରତ୍ୟକ୍ଷରେ ପରିଚିତ ସେ ପରମଯୋଗୀ । ଆତ୍ମଜ୍ଞାନ ଉପରେ ପ୍ରାଧାନ୍ୟ ଦେଇ ବଳରାମ ଦାସ ପୁଣି କହୁଛନ୍ତି—ଆପଣାକୁ ଆପେ ଚିହ୍ନିଲେ ବ୍ରହ୍ମାଣ୍ଡ ଚିହ୍ନି ହୁଏ । ଆତ୍ମାର ପରିଚୟ ଘଟିଲେ ପିଣ୍ଡ ଛାଡ଼େ ନାହିଁ । ଏଇ ସାଧନ ମାର୍ଗରେ ଶିବ୍ରସଂଯମ ମଧ୍ୟ ଏକ ବଡ଼ ସାଧନ । ପବନ ପରି ଚଞ୍ଚଳ ମନଦ୍ୱାରା ଅବଦ୍ଧ ହେଲେ, ସହଜରେ ଶିବ୍ର ବିକ୍ଷୁବ୍ଧ ହୁଏ । ଶିବ୍ର ବିକ୍ଷୁବ୍ଧ ହେଲେ, ଜୀବନରସ ଶୁଖିଯାଏ । ଯେଉଁମାନେ ସଂସାର (ମାୟା ସଂସାର) ତ୍ୟାଗ କରି, ଆକାଶ (ଶୂନ୍ୟତା ବା ଶୂନ୍ୟ ରୂପୀ ପରମ ବ୍ରହ୍ମ) ପ୍ରତି ଆଗ୍ରହ ବଢ଼ାନ୍ତି, ମନକୁ ଦୃଢ଼ତା ସହିତ ବନ୍ଦୀ କରି (ଅର୍ଥାତ୍ ଅଚଞ୍ଚଳ ଶିବ୍ର ହୋଇ) ପବନ ଚଳାନ୍ତି (ଯୋଗର ନିୟମ ଅନୁସାରେ ପଞ୍ଚପବନ ସାଧନା କରନ୍ତି), ସେଇମାନେ ହିଁ ଯୋଗୀ । ସେମାନେ ମହାତ୍ମା । ସେମାନଙ୍କର ମୃତ୍ୟୁ ନାହିଁ ।

ଜ୍ଞାନଦୃଷ୍ଟି—

"ବିଶ୍ୱଜଗତରେ ସାନବଡ଼ ନାହିଁ, ଉତ୍କର୍ଷ ଅପକର୍ଷ ନାହିଁ, ଆଦର ଓ ଘୃଣା ନାହିଁ । ସମସ୍ତେ ନିଜ ନିଜ ସ୍ଥାନରେ ଯଥାର୍ଥ ଉପଯୋଗୀ । ଯେ ଯାହାର ନିର୍ଦ୍ଦିଷ୍ଟ କର୍ମ କରି ଫଳଭୋଗ କରୁଅଛନ୍ତି । ସର୍ବତ୍ର ଏକ ବିଧାନ, ଏକ ନୀତି"(୧) । ଏଇ ଜ୍ଞାନ ଦୃଷ୍ଟିହିଁ ଭାରତୀୟ ଆର୍ଯ୍ୟ ଜୀବନର ମୂଳାଧାର । ଏହାର ବିକାଶ ବହୁ ପ୍ରାଚୀନ କାଳରୁ, ହୁଏତ ବେଦାନ୍ତ ଉପନିଷଦ ଯୁଗରୁ ହୋଇ ଆସିଅଛି । ଏହାର ମୂଳକଥା ହେଉଛି କର୍ମଫଳବାଦ । ଆମର ସମସ୍ତ ଚିନ୍ତାଧାରାକୁ ଏହା ଏକ ପ୍ରକାର ନିୟନ୍ତ୍ରିତ କରୁଛି କହିଲେ ଚଳେ । ଇନ୍ଦ୍ରଜିତ ସହିତ ଯୁଦ୍ଧ ପୂର୍ବରୁ, ତା' ପ୍ରତି ଲକ୍ଷ୍ମଣଙ୍କ ଉକ୍ତିରେ ଏଇ କଥା ବଳରାମ ଦାସ କହୁଛନ୍ତି (୨) । ମର୍ତ୍ତ୍ୟରେ ସବୁ ପଦାର୍ଥ କ୍ଷୟଶୀଳ । ଏଥିରେ ଚିର ବୋଲି କୌଣସି ବସ୍ତୁ ନାହିଁ । ନିର୍ଦ୍ଦିଷ୍ଟ ମାର୍ଗରେ

(୧) ଆର୍ଯ୍ୟଜୀବନର ମୂଳାଧାର—ଆର୍ଯ୍ୟଜୀବନ, ପୃ: ୨୦ ।
(୨) ଲଙ୍କାକାଣ୍ଡ, ପୃ: ୧୬୫ ।

ପ୍ରକୃତର କ୍ରିୟା ଚାଲିଅଛି। ଚନ୍ଦ୍ର ସୂର୍ଯ୍ୟଙ୍କ ଉଦୟ-ଅସ୍ତ, ଋତୁଚକ୍ରର ପରିବର୍ତ୍ତନ, ଦିନରାତିର ପରିବର୍ତ୍ତନ, ଏକ ଧାରାରେ ଗୋଟିଏ ନିୟମରେ ଚାଲିଅଛି। ବିଶ୍ୱବିଧାତାଙ୍କ ନିୟମରେ ଜୀବ ଜନ୍ମହେଉଛି, ନାମ ରୂପ ଧାରଣ କରୁଅଛି। ତନିପୁର ଅତେଯାତ ହେଉଅଛି। ବାଲି, ମାଟି ପଥରରେ ଏ ମହୀ ସୃଷ୍ଟି ହେଉଛି। ପଥର ମାଟି ଓ ମାଟି ବାଲି ରୂପେ ପରିବର୍ତ୍ତିତ ହେଉଛି। ସ୍ତ୍ରୀ ଓ ପୁରୁଷଙ୍କ ସ୍ଥିତି ଓ ଗତି ଏଇ ନିୟମରେ। ସତ୍ୟ ଓ ମିଥ୍ୟା ଏଇ ନିୟମରେ କ୍ରିୟାଶୀଳ। ଏହା ହୋଇ କୌଣସି ବସ୍ତୁ ବିଦ୍ୟମାନ ନୁହେ। ବେଦ, ବୌଦ୍ଧ, ଶରୀରାର୍ଥ ଓ ପରମାର୍ଥ ପଦ ସବୁଲର ହାନି, ଜୟପରାଜୟ ହେଉଅଛି। ଏଇ ଜ୍ଞାନ ଦୃଷ୍ଟିରେ ଏକ ମହାନ୍ ସାମ୍ୟ ଭାବନା ମଧ୍ୟ ନିହିତ। ଚରାଚର ବ୍ରହ୍ମାଣ୍ଡରେ ସ୍ଥୂଳରୁ ଶୂନ୍ୟ ପର୍ଯ୍ୟନ୍ତ ସର୍ବତ୍ର ପରମେଶ୍ୱରଙ୍କର ପ୍ରକାଶ ବିଦ୍ୟମାନ (୧)। ତାଙ୍କ ଦୃଷ୍ଟିରେ ସବୁ ଜୀବ ସମାନ। ତାଙ୍କର ଅନନ୍ତ ଦୃଷ୍ଟିପ୍ରବାହରେ ସାନବଡ଼ର ଭେଦ ନାହିଁ। ଗର୍ବ, ଅହଂକାରର ସ୍ଥାନ ନାହିଁ। ଏ ଦୃଷ୍ଟିରେ ହାତୀ ଓ ପିମ୍ପୁଡ଼ି ବି ସମାନ। ପିମ୍ପୁଡ଼ି କ୍ଷୁଦ୍ର ବୋଲି ଶରୀର ଦେଖି ହାତୀର ଗର୍ବ କରିବାର କିଛି ନାହିଁ। ଯେତେବେଳେ ବାଲିକଣା ସହିତ ନବାତଖଣ୍ଡ ମିଶିତହୋଇ ପଡ଼ିଥାଏ, ସେତେବେଳେ ପିମ୍ପୁଡ଼ି ନବାତ ତୋଳି ନେଇପାରେ। ହାତୀ ତାର ଏତେ ବଡ଼ ଶୁଣ୍ଢରେ ସମର୍ଥ ହୁଏ ନାହିଁ। ତେଣୁ କ୍ଷୁଦ୍ରର ବି ଆପଣା ସ୍ଥାନରେ ମହତ୍ତ୍ୱ ଅଛି (୨)। ଅଣୁ କ୍ଷୁଦ୍ରତମ ହେଲେ ବି ସେ ସର୍ବବ୍ୟାପୀ। ସ୍ଥୂଳତଃ ଏହା ହେଉଛି ଦାଣ୍ଡି ରାମାୟଣରେ ଅଭିବ୍ୟକ୍ତ କବି ବଳରାମ ଦାସଙ୍କର ଦର୍ଶନ ଦୃଷ୍ଟି।

## ଲୋକଧର୍ମ ଓ ଲୋକବିଶ୍ୱାସ—

ଲୋକଧର୍ମ ଓ ଲୋକବିଶ୍ୱାସ ସମାଜର ସାଂସ୍କୃତିକ ଜୀବନର ଏକ ଜୀବନ୍ତ ଅଭିବ୍ୟକ୍ତି। ଆଧୁନିକ ଶିକ୍ଷାର ପ୍ରସାର ଫଳରେ ଏହାର ପ୍ରଭାବ କ୍ଷୀଣ ହୋଇ ଆସୁଥିଲେ ବି ଏବେ ଆମ ପଲ୍ଲୀର ଜୀବନଧାରା ଲୋକଧର୍ମ ଓ ଲୋକବିଶ୍ୱାସ ଉପରେ ପ୍ରତିଷ୍ଠିତ। ସମାଜ ଜୀବନର ଯେଉଁ ପରିବେଷ୍ଟନୀରେ ଏ

(୧) ବୀରବାହୁର ସ୍ତୁତି—ଲଙ୍କାକାଣ୍ଡ, ପୃ: ୨୨୮ ।
(୨) ହରିଶଗୁପ୍ତ ଗୀତାର ୧୧୪ ଅଧ୍ୟାୟରେ ହାତୀ ଓ ପିମ୍ପୁଡ଼ିର ଏଇ ତୁଳନା ଦିଆଯାଇଅଛି ।

ସବୁର ବିକାଶ ସମ୍ଭବ ହୋଇଅଛି, ତାହାର ଇତିହାସ ନିଶ୍ଚୟ କୌତୂହଳ-ପୂର୍ଣ୍ଣ । ଏଥିପ୍ରତି ଅଳ୍ପ ପର୍ଯ୍ୟନ୍ତ ଆମର ଦୃଷ୍ଟି କ୍ୱଚିତ୍ ଆକୃଷ୍ଟ ହୋଇଛି । ପାଞ୍ଚଶହ ବର୍ଷ ପୂର୍ବେ ରଚିତ ଭକ୍ତକବି ବଳରାମ ଦାସଙ୍କର ଦାଣ୍ଡିରାମାୟଣ ଏ ଦିଗରେ ବହୁ ମୂଲ୍ୟବାନ ଉପାଦାନ ଯୋଗାଇ ଥାଏ । ସମାଜ ଜୀବନ ସହ ଓତଃପ୍ରୋତ ଭାବରେ ଜଡ଼ିତ ଲୋକଧର୍ମ ଓ ଲୋକବିଶ୍ୱାସର ଯେଉଁ ସବୁ ସଂକ୍ଷିପ୍ତ ସୂଚନା ଦାଣ୍ଡିରାମାୟଣରୁ ମିଳେ, ସେଥିରୁ ହୁଏତ ସେ ଯୁଗର ଲୋକସଂସ୍କୃତିର ସମଗ୍ର ସ୍ୱରୂପ କଳନା କରିବା ସମ୍ଭବ ନୁହେ । ତଥାପି ତାହାର ଆଲୋଚନା ଆଜିର ଲୋକସଂସ୍କୃତିର ଇତିହାସ ଉପରେ ଯଥେଷ୍ଟ ଆଲୋକପାତ କରିଥାଏ ।

ଦାଣ୍ଡିରାମାୟଣରେ ଅଭିବ୍ୟକ୍ତ ଧର୍ମଧାରା ଓ ଦର୍ଶନଦୃଷ୍ଟି ପ୍ରତି ଲକ୍ଷ୍ୟ କଲେ, ମନେ ହୁଏ ଯେପରି ସମୁଦାୟ ଭାରତୀୟ ଶାସ୍ତ୍ରର ଏକ ବିପୁଳ ପୃଷ୍ଠୁଳ ଜ୍ଞାନକୋଷ । ବେଦର ଆଧ୍ୟାତ୍ମିକତା, ବେଦାନ୍ତର ଦର୍ଶନଦୃଷ୍ଟି, ତନ୍ତ୍ରାଦି ଆଗମର ଗୁହ୍ୟବାଦ, ପୁରାଣର ଅବତାରବାଦ, ବିଭିନ୍ନ ସ୍ମୃତିଶାସ୍ତ୍ରଗୁଡ଼ିକର ସମାଜ ବିବନ୍ଧନ ଓ ଆୟୁର ବିଧି ଆଦି ପ୍ରତ୍ୟେକର କିଛି ନା କିଛି ସୂଚନା ଦାଣ୍ଡିରାମାୟଣର ପ୍ରତି ଛନ୍ଦରେ ପୂରି ରହିଛି । ତଥାପି କେବଳ ଏହି ଶାସ୍ତ୍ରୀୟ ଉପାଦାନର ଆଧାର ଉପରେ ଭକ୍ତକବିଙ୍କ ଧର୍ମସାଧନାର ସୌଧ ନିର୍ମିତ ନୁହେ । ଲୋକ ଜୀବନର ସୁଖ ଦୁଃଖରେ ତାହା ଅନୁରଞ୍ଜିତ । ଲୋକମନର ଜୀବନ୍ତ ଦର୍ଶନ ହିଁ ତାହାର ଭିତ୍ତି ।

ଜୀବନର ବାସ୍ତବତା ଭିତ୍ତିରେ ଲୋକମନ ଦୁନିଆର ଗତି ବୁଝେ । ଏ ଦୁନିଆରେ ପ୍ରତ୍ୟେକ କେବଳ ଆପଣା ଉପାୟ ଘେନି ବ୍ୟସ୍ତ ତାହା ସହ-ଜରେ ତାର ଆଖିରେ ଧରାଦିଏ । ପିତୃଶୋକରେ ଅଧୀର ରାମଚନ୍ଦ୍ରଙ୍କୁ ବଶିଷ୍ଠଙ୍କ ପ୍ରବୋଧବାକ୍ୟ ପ୍ରସଙ୍ଗରେ ବଳରାମ ଦାସ ଅତି ସ୍ପଷ୍ଟ ଭାବରେ ଏହାହିଁ କହିଛନ୍ତି (୧) । ନିଜ ସ୍ୱାର୍ଥକୁ ଅବଲମ୍ବନ କରିବା ସଂସାରର ନୀତି । ଆମର ପାରିବାରିକ ଜୀବନ ଯଥାର୍ଥରେ ଏହାରି ଉପରେ ପ୍ରତିଷ୍ଠିତ । ବହୁ ଦୁଃଖରେ ମାତା ସନ୍ତାନ ଉପୁଜାନ୍ତି । ପ୍ରାଣରୁ ଅଧିକ କରି ତାକୁ ପାଳନ୍ତି । ସନ୍ତାନ ବି ପିତାମାତାଙ୍କ ପ୍ରତି ଅନୁରକ୍ତ ରହେ । କିନ୍ତୁ ପୁଅ ହୋଇଥିଲେ ବିବାହ ପରେ ପତ୍ନୀର ବଶ ହୁଏ । ପିତାମାତାଙ୍କ ପ୍ରତି ତାହାର କର୍ତ୍ତବ୍ୟ ଭୁଲିଯାଏ; ତାଙ୍କ କଥାକୁ ଉପହାସ କରେ ଓ ପତ୍ନୀକୁ ପ୍ରାଣକଳି ପୂଜି ପାଏ । ଯୁବତୀ ବି

(୧) ବଶିଷ୍ଠଙ୍କ ପ୍ରବୋଧବାକ୍ୟ, ଅଯୋଧ୍ୟାକାଣ୍ଡ, ପୃ: ୮୭ ।

ସେଇଭଳି ଆପଣାର ପିତାମାତା, ସୋଦର ସ୍ୱଜନଙ୍କ ଗାଢ଼ ଭକ୍ତିଗତ ପ୍ରାଣ ହୋଇପଡ଼େ । ଗାଢ଼ ପ୍ରୀତିରେ ବିଭୋର ହୋଇ, ଆପଣାକୁ ଭକ୍ତି ଶରୀରର ଅଙ୍ଗ ବୋଲି ମନେ କରେ । କିନ୍ତୁ ତାହାର ଜନନୀ ହେବାର ସୌଭାଗ୍ୟ ହେଲେ ସେ ପୁଣି ବଦଳି ଯାଏ । ସ୍ୱାମୀ ସନ୍ତତିରେ ଗାଢ଼ ପ୍ରୀତି ଷୀର ସନ୍ତତି ପୁତ୍ରଠାରେ ଅର୍ପଣ କରେ । ପୁଣି ବୟସ ହେଲେ ଏହି ପୁତ୍ର ସମସ୍ତ ପାଳଣାର ଅପଣା ଧର୍ମ ଅବଲମ୍ବନ କରେ । ଏହାହିଁ ଦୁନିଅର ଗତି । ପୁରୁଣାର ସ୍ନେହପ୍ରୀତି ଭୁଲି ନୂଆ ପ୍ରତି ହୃଦୟ ମୁକୁଳା ରଖିବା ମଣିଷର ସ୍ୱଭାବ ।

ଜଣେ ସାଧାରଣ ଗାଆଁଲି ଲୋକ ଅଜ ଯେଉଁ ଧର୍ମ ବୁଝୁ ବା ନ ବୁଝୁ, ସେ ଅନ୍ତତଃ ଏତିକ ଭଲ ଭାବରେ ବୁଝିଥାଏ ଯେ, ଆପଣା କୁଟୁମ୍ବ ପାଳନ କରିବା ତାର ଶ୍ରେଷ୍ଠ ଧର୍ମ । କୁମ୍ଭନାଶୀ ମୁଖରେ ରାବଣଙ୍କୁ ଉପଦେଶ ପ୍ରସଙ୍ଗରେ କବି ଏହି ଲୋକବିଶ୍ୱାସକୁ ସୁନ୍ଦର ଭାବରେ ଫୁଟାଇଅଛନ୍ତି (୨) । ନିଜ କୁଟୁମ୍ବ ନ ପୋଷି ଯେ ଅନ୍ୟ ଧର୍ମ ପାଳନ କରେ, ତାର କୌଣସି ପୁଣ୍ୟ ଲାଭ ହୁଏ ନାହିଁ । ସେ ନରକଗାମୀ ହୁଏ । ତାର କୁଳ ନାଶ ଯାଏ । ଆପଣା କୁଟୁମ୍ବ ପାଳନ ହିଁ ସବୁ ଧର୍ମର ମୂଳ । ପୁତ୍ର, ଦାରା, ବନ୍ଧୁ, ଭୂମି ଓ କୁଳବଧୂଙ୍କୁ ଜୀବନ ଥାଉଁ ଥାଉଁ ରକ୍ଷା କରିବା ପ୍ରତ୍ୟେକର କର୍ତ୍ତବ୍ୟ ।

କିଷ୍କିନ୍ଧ୍ୟାକାଣ୍ଡରେ ସୁଗ୍ରୀବର ରାମଚନ୍ଦ୍ରଙ୍କୁ ଉପଦେଶ ପ୍ରସଙ୍ଗରେ କବି କହିଛନ୍ତି, ମଣିଷ ଜୀବନରେ ଦୁଇଟି ଧନ ବଡ଼—ଗୋଟିଏ ଶରୀରର ସାମର୍ଥ୍ୟ ଓ ଅନ୍ୟଟି ଅର୍ଥର ଧନ । ଏକଥା ପ୍ରତ୍ୟେକ ସାଧାରଣ ଲୋକ ବୁଝିଥାଏ ଯେ, ଦେହରେ ଯଦି ଶକ୍ତି ନ ଥାଏ, ତେବେ ଜୀବନରେ କିଛି ଉପଭୋଗ କରି ହୁଏ ନାହିଁ । ଅର୍ଥାଭାବେ ଧନ ନ ଥିଲେ ସମାଜରେ କୌଣସି ସମ୍ମାନ ରହେ ନାହିଁ । ଅପଣା ପୁତ୍ର ଓ ସ୍ତ୍ରୀଙ୍କୁ ଅନୁଗତ କରି ଅପଣାର କରିବାକୁ ହେଲେ ଧନ ଓ ସ୍ୱାସ୍ଥ୍ୟ ଆବଶ୍ୟକ (୩) ।

"ଯାହାଠାରୁ ଯେପରି ବ୍ୟବହାର ପାଇବ, ତାକୁ ସେଇଭଳି ବ୍ୟବହାର କରିବ"—ଏହା ବ୍ୟାବହାରିକ ଲୋକଧର୍ମର ଏକ ବଡ଼ ନୀତି । ଯେ 'ଯେସାକୁ ତେସା' ନୀତି ଧରେ ତାର କେଉଁଠି ପରାଜୟ ଘଟେ ନାହିଁ ବୋଲି ସବୁ ଲୋକଙ୍କର ବିଶ୍ୱାସ । ଭକ୍ତକବିଙ୍କ ବର୍ଣ୍ଣନା ଅନୁସାରେ, ସମୁଦ୍ର ଅତିକ୍ରମ ଲାଗି ବରୁଣଙ୍କୁ ସ୍ତୁତିକରି ରାମଚନ୍ଦ୍ର ତିନି ଦିନ ତିନିରାତି ଉପାସରେ

(୨) କୁମ୍ଭନାଶୀର ରାବଣଙ୍କୁ ଉପଦେଶ, ଉତ୍ତରା, ପୃ: ୭୧ ।
(୩) ସୁଗ୍ରୀବର ରାମଙ୍କୁ ଉପଦେଶ, କିଷ୍କିନ୍ଧ୍ୟା, ପୃ: ୧୪ ।

ଶୋଇଲେ, ବରୁଣ ଦେବ ଆସିଲେ ନାହିଁ । ଏଥିରେ ବରୁଣଙ୍କର ଉପରେ ସମସ୍ତଙ୍କର ରାଗ ହେଲା । ସୁଗ୍ରୀବ ରାମଚନ୍ଦ୍ରଙ୍କୁ ଉପଦେଶ ଦେଲେ, ସମୁଦ୍ର ସାଧୁ ନୁହେଁ; ଖଳ ମାତମତ । ତମ୍ବାର କଳଙ୍କ ଅମ୍ଳିକରେ ଧୋଇଲେ ଯାଏ । ସେହିପରି ଖଳ ଲୋକଙ୍କ ପ୍ରତି ଭଲ ବ୍ୟବହାର କଲେ ସେମାନେ ବିପରୀତ ବୁଦ୍ଧି ଧରନ୍ତି । ସାଧୁଲୋକଙ୍କୁ ସାଧୁ ବ୍ୟବହାର ଓ ମନ୍ଦ ଲୋକଙ୍କୁ ମନ୍ଦ ବ୍ୟବହାର କରିବା ସବୁବେଳେ କର୍ତ୍ତବ୍ୟ (୧) ।

ହାତେ ମାପି ରାଜ୍ୟଣ୍ଡେ ଚାଲିବାକୁ ସାଧାରଣ ପଲ୍ଲୀବାସୀ ସବୁଠାରୁ ପସନ୍ଦ କରିଥାଏ । କୌଣସି ପ୍ରକାର ଚରମ ପନ୍ଥାରୁ ସେ ଦୂରରେ ରହେ । ତାର ଅତିପ୍ରିୟ ନୀତି ବଚନ ହେଉଛି —

ଅତି ଦର୍ପାତ୍ ହତା ଲଙ୍କା<br>
ଅତି ମାନାଚ୍ଚ କୌରବାଃ<br>
ଅତି ଦାନାଦ୍ ବଳିର୍ବଦ୍ଧଃ<br>
ସର୍ବ ମତ୍ୟନ୍ତ ଗର୍ହିତଂ ।

ମନ୍ତ୍ରୀ ସୁମନ୍ତ ଓ ଲକ୍ଷ୍ମଣ ସୀତାଙ୍କୁ ଭାଗୀରଥୀକୂଳ ବଣରେ ଛାଡ଼ି ଆସିବାବେଳେ, ରାମଚନ୍ଦ୍ରଙ୍କର ସୀତାଙ୍କୁ ତ୍ୟାଗ କରିବା କାପର ଉଚିତ ହୋଇ ନାହିଁ, ତାହା ଆଲୋଚନା କରିଛନ୍ତି । "ବେଶି ଜ୍ଞାନ ବିଜ୍ଞତା ଶିଖାଏ ନାହିଁ" (much knowledge does not teach wisdom) ବୋଲି ଗ୍ରୀକ୍ ମନୀଷୀ ହେରାକ୍ଲିଟାସ କହିଲେ ଭଳି ଏମାନଙ୍କ ମୁଖରେ ବଳରାମ ଦାସ କହିଛନ୍ତି—ଅତି ବୁଦ୍ଧିବନ୍ତ ନାଶ ଯାଏ । ଅତି ଗୁଣବନ୍ତ ଅନାଗୁଣୀ ହୁଏ । ଅତି ସତ୍ୟବନ୍ତର ଯଶ ଶତ୍ରୁମାନେ ଗ୍ରହଣ କରି ନିଅନ୍ତି । ଅତି ପ୍ରିୟଜନର ସୌଖ୍ୟ ଭାଗ୍ୟ ସହେ ନାହିଁ । ବେଶି ବଳବନ୍ତ ଚାଲି ପାରେ ନାହିଁ । ଅତି ଧାର୍ମିକକୁ ପୃଥିବୀ ସହେ ନାହିଁ । ଅତି ଧନ କେହି ଭୋଗ କରିପାରେ ନାହିଁ । ଅତି ଜ୍ଞାନୀ ଅଜ୍ଞାନର କାମ କରେ । ସବୁବେଳେ ଅତି କଷିଲେ ଭଲ ସୁନା ଭେଳ ହୁଏ (୨) ।

କଥାରେ ଅଛି, ଏ ହାତର ପାପ ସେ ହାତ ନିଏ ନାହିଁ । ନିଜ କାମ ପାଇଁ ନିଜକୁ ହିଁ ଦାୟୀ ହେବାକୁ ପଡ଼ିବ - ଏହାହିଁ ଏଥିର ଇଙ୍ଗିତ । ରାବଣକୁ ବ୍ରହ୍ମଶର ନିକ୍ଷେପ କରିବାକୁ ଯିବା ପୂର୍ବରୁ ରାମଚନ୍ଦ୍ରଙ୍କ ଦୁଇ ହାତ

(୧) ବରୁଣ ଉପରେ ରାମଚନ୍ଦ୍ରଙ୍କ କୋପ, ସୁନ୍ଦରା, ପୃ: ୧୦୯ ।
(୨) ସୁମନ୍ତ ଓ ଲକ୍ଷ୍ମଣଙ୍କ ଉକ୍ତି, ଉତ୍ତରା, ପୃ: ୧୨୯ ।

ମଧ୍ୟରେ କଥୋପକଥନ ଛଳରେ ବଳରାମ ଦାସ ଏହି କଥା ବ୍ୟକ୍ତ କରିଅଛନ୍ତି (୧)। ଧନୁର ଗୁଣ ଟାଣିବା ବେଳେ ରାମଚନ୍ଦ୍ରଙ୍କ ଦକ୍ଷିଣ ହସ୍ତ କାନମୂଳକୁ ଛୁଇଁଛି। ବାମ କର ଅଭିଯୋଗ କରିଛି—ଯୁଦ୍ଧକୁ ଡରି ଦକ୍ଷିଣ କର ପଛଘୁଞ୍ଚା ଦେଉଛି ବୋଲି। ଦକ୍ଷିଣ କର ଏହାର ଉତ୍ତର ଦେଇ କହୁଛି, "ସଂଗ୍ରାମକୁ ତାର ଭୟ ନାହିଁ। କିନ୍ତୁ ପାପକୁ ତାର ବଡ଼ ଭୟ। ରାବଣକୁ ମାରିବାର ପାପ ପୁଣ୍ୟ ସ୍ୱୟଂ ରାମଚନ୍ଦ୍ରଙ୍କର। ତେଣୁ ଅସ୍ତ୍ର ନିକ୍ଷେପ ପୂର୍ବରୁ ସତ ପଗୁରିବାକୁ ସେ ରାମଚନ୍ଦ୍ରଙ୍କ କାନମୂଳକୁ ଯାଉଛି।" ଲୋକମନର ପାପପୁଣ୍ୟ ବିଗୁରକୁ ରୂପ ଦେବାରେ ଏଭଳି ଜୀବନ୍ତ ବର୍ଣ୍ଣନାର ତାତ୍ପର୍ଯ୍ୟ ଏଠାରେ ବୁଝେଇ କହିବାର ନୁହେ।

ସବୁପ୍ରକାର ଭାଗ୍ୟବାଦ, ଜନ୍ମାନ୍ତର ବାଦ ଓ କର୍ମଫଳ ବିଶ୍ୱାସ ମଧ୍ୟରେ ଆପଣାର ଉଦ୍ୟୋଗ ବଳରେ ପୁରୁଷସିଂହ ହେବାର ଧାରଣା ସାଧାରଣ ମଣିଷକୁ ଦୈନନ୍ଦିନ ଜୀବନ ସଂଗ୍ରାମରେ ବଳ ଦେଇ ଆସିଅଛି। ଜୀବନର ଶେଷ ମୁହୂର୍ତ୍ତି ପର୍ଯ୍ୟନ୍ତ, ଏପରି କି ମରଣ ମୁଖରେ ବି ଆପଣାର ଉଦ୍ୟୋଗ କର୍ମରୁ ବିଶ୍ୱାସ ହରାଇବା ପାପ। କବିଙ୍କ ଶୁଆଶାରୀ କାହାଣୀ ମଧ୍ୟରେ ଏଇ ଲୋକବିଶ୍ୱାସ ଜୀବନ୍ତ ହୋଇଛି। ପ୍ରଥମେ ରାଜଭୋଗ ଛାଡ଼ି ପତ୍ନୀ ଓ ଭାଇକୁ ଧରି ରାମଚନ୍ଦ୍ର ଯେତେବେଳେ ବନକୁ ଆସିଚନ୍ତି, ତାଙ୍କୁ ସେତେବେଳେ ବନରେ ପ୍ରିୟତମା ପତ୍ନୀ ଓ ପ୍ରାଣସମ ଭାଇର ଦୁଃଖ ଖୁବ୍ ବାଧୁଛି। ପ୍ରିୟତମମାନଙ୍କର ସୁଖ ସନ୍ତୋଷ ବିଧାନ କରି ପାରୁ ନଥିବାରୁ ଆପଣାର ପୌରୁଷ ଉପରେ ରାମଚନ୍ଦ୍ରଙ୍କର ଧିକ୍କାର ଆସିଅଛି। ଏହି ଦାରୁଣ ବିପନ୍ନ ମୁହୂର୍ତ୍ତିରେ ଲକ୍ଷ୍ମଣଠାରେ ଶୁଆଶାରୀଙ୍କ ଉଦ୍ୟୋଗ ଓ ପୌରୁଷ କାହାଣୀ ବର୍ଣ୍ଣନା କରି ସେ ମନର ଦୃଢ଼ତା ରକ୍ଷା କରିଅଛନ୍ତି। କାହାଣୀଟି ହେଉଛି—ହେମଗିରି ନିକଟରେ ଯୋଡ଼ିଏ ଶୁଆଶାରୀ ବସା ବାନ୍ଧି ରହୁଥିଲେ। ଥରେ ଗୋଟିଏ ଶ୍ୟାମଳ ପକ୍ଷୀ ଆସି ଥଣ୍ଟରେ ଶାରୀକୁ ଓ ଚରଣରେ ଶୁଆକୁ ଧରି ସେମାନଙ୍କୁ ଆହାର କରିବା ଲାଗି ନୀଡ଼କୁ ଉଡ଼ିବାକୁ ଲାଗିଲା। ଶୁଆ ଜୀବନ ବିକଳରେ ହତୋତ୍ସାହ ହେବାରେ ଶାରୀ ତାକୁ ଉପଦେଶ ଦେଇ କହିଲା—"ପ୍ରାଣ ଯିବା ପର୍ଯ୍ୟନ୍ତ ଉଦ୍ୟୋଗ କରିବା ଉଚିତ। ଭବିଷ୍ୟତ କଥା କେହି ଜାଣେ ନାହିଁ। ଯେ ମନରେ ସର୍ବଦା ସାହସ ମାନ ପୋଷଣ ନ କରେ, ସେ ପୌରୁଷହୀନ, ଅଯୋଗ୍ୟ।" ଏହି କଥାରେ

(୧) ହରି ହରିଜଙ୍କ କଥୋପକଥନ ଲଙ୍କା, ପୃ: ୨୧୧।

ସାହସ ସଞ୍ଚସ୍ତ କରି ଶୁଆ ନିଜର ବଳ୍ପିଭଳି ଥଣ୍ଟରେ ଶ୍ୟାମଳର ପେଟକୁ ବିଦୀର୍ଣ୍ଣ କଲା । ଏହିରୂପେ ଶିକାରୀ ଶ୍ୟାମଳ କବଳରୁ ସାହସ ଓ ଉଦ୍‌ଯୋଗ ବଳରେ ଶୁଆଶାରୀ ରକ୍ଷା ପାଇଗଲେ (୧) ।

କେବଳ ପ୍ରାର୍ଥନା, ଉପାସନା, ଜପ ତପ ଆଦିକୁ ଧର୍ମ ବୋଲି ଗ୍ରହଣ କରି ଲୋକମନ ସନ୍ତୁଷ୍ଟ ହୋଇପାରେ ନାହିଁ । ସାଧାରଣଙ୍କ ମଙ୍ଗଳ ପାଇଁ କୌଣସି ପ୍ରକୃତ କାମକୁ ଧର୍ମ ବୋଲି ଲୋକେ ଗ୍ରହଣ କରିଥାଆନ୍ତି । ଧର୍ମକାର୍ଯ୍ୟ ନ କଲେ କେହି ଧାର୍ମିକ ବୋଲାଇ ପାରେ ନାହିଁ । "ଦେବ, ଦିଆଇବ, ଦେଇଥିଲେ ପାଇବ" ଏହି ବିଶ୍ୱାସ ଲୋକରେ ସୁପ୍ରତିଷ୍ଠିତ । ଦେବ ଦ୍ୱିଜଙ୍କୁ ଦାନ ଦେବା, ଭିଖାରୀ ଓ କ୍ଷୁଧାର୍ତ୍ତିକୁ ଗୃହଜଳ, ଅନ୍ନ ଆଦି ଦେବାରେ ଏହି ବିଶ୍ୱାସ ସମସ୍ତଙ୍କୁ ଅନୁପ୍ରାଣିତ କରେ । ଏଭଳି ଭାବରେ ଯିଏ ଦାନ ନ ଦିଏ, ପୁଣ୍ୟ ଅର୍ଜ୍ଜନ ନ କରେ, ସେ ପାପାଗ୍ରୁରୀ । ରାକ୍ଷସମାନଙ୍କ ଚରିତ୍ର ବର୍ଣ୍ଣନା କରିବାକୁ ଯାଇ ହନୁମାନ ରାମଚନ୍ଦ୍ରଙ୍କୁ କହୁଛନ୍ତି —ରାକ୍ଷସମାନେ ବେଦ ପଢ଼ନ୍ତି, ହୁତାଶନରେ ଘୃତ ଢାଳି ଯଜ୍ଞ କରନ୍ତି, କିନ୍ତୁ 'ଦେବା ଦୟା ଦମ' ଚିତ୍ତରେ ଧରନ୍ତି ନାହିଁ । ସେମାନେ ଶୁଣିବନ୍ତ ନୁହନ୍ତି । ସର୍ବଦା ରୋଷପ୍ରକାଶ କରନ୍ତି; ମାଗନ୍ତା ଲୋକଙ୍କୁ ନିରାଶ କରନ୍ତି । ତେଣୁ ସେମାନେ ପାପାଗ୍ରୁରୀ (୨) ।

ବ୍ୟାବହାରିକ ଧର୍ମର ଗତି କୌଣସି ଏକ ଆଦର୍ଶରେ ଦୃଢ଼ ଅବଲମ୍ବନରେ ଅବଧାରିତ ହୁଏ ନାହିଁ । ଅବସ୍ଥା ଦେଖି ବ୍ୟବସ୍ଥା କରିବାହିଁ ଏହାର ନୀତି । ରାବଣର ମୃତ୍ୟୁରେ ବିଭୀଷଣର ମିଥ୍ୟା ଶୋକ ପ୍ରସଙ୍ଗରେ ବଳରାମ ଦାସ ଏହି କଥା କହିଛନ୍ତି (୩) । ନିର୍ଦ୍ଦୋଷ ଲୋକମାନେ କେବେ ଅପମୃତ୍ୟୁ ଲଭନ୍ତି ନାହିଁ ବୋଲି ଲୋକବିଶ୍ୱାସ ପ୍ରଚଳିତ । ଲଙ୍କାଯୁଦ୍ଧ ପ୍ରସଙ୍ଗ ବର୍ଣ୍ଣନା କରିବାକୁ ଯାଇ କବି ଏହି ଲୋକ-ବିଶ୍ୱାସକୁ ଅଭିବ୍ୟକ୍ତ ଦେଇଛନ୍ତି । ଲଙ୍କାଯୁଦ୍ଧ ଶେଷ ହୋଇଯିବା ପରେ ନିର୍ଦ୍ଦୋଷରେ ମରିଥିବା ପ୍ରାଣୀମାନଙ୍କୁ ବ୍ରହ୍ମା ଅମୃତ ସିଞ୍ଚି ବଞ୍ଚାଇ ଦେଇଛନ୍ତି ।

ଲୋକବିଶ୍ୱାସରେ ବଳରାମ ଦାସଙ୍କ ରାମାୟଣ ଯେଉଁଭଳି ସମୃଦ୍ଧ ହୋଇଛି, ଲୋକମନକୁ ମଧ୍ୟ ତାହା ସେହିଭଳି ସମୃଦ୍ଧ କରିଛି । ଯେଉଁ

---

(୧) ଶୁଆଶାରୀ ଉପାଖ୍ୟାନ, ଅଯୋଧ୍ୟା କାଣ୍ଡ, ପୃ: ୬୧ ।
(୨) ହନୁ ଓ ଶ୍ରୀରାମଙ୍କ ବିଚାର, ସୁନ୍ଦରା, ପୃ: ୮୨ ।
(୩) ବିଭୀଷଣର ଭାତୃଶୋକ, ଲଙ୍କା, ପୃ: ୨୧୨ ।

ବିଶ୍ୱାସ ଓ ଧର୍ମଧାରା ଲୋକଜୀବନରେ ପ୍ରତିଷ୍ଠିତ ହୋଇ ଅସଂଖ୍ୟ ସାଧାରଣ ମଣିଷଙ୍କୁ ସେମାନଙ୍କ ଦୈନନ୍ଦିନ ଜୀବନରେ ବଳ ଦେଉଅଛି, ସେମାନଙ୍କ ବିବେକକୁ ଶକ୍ତିଶାଳୀ କରି ସତ୍ୟ ଓ ନ୍ୟାୟ ମାର୍ଗରେ ଗତିକରିବାକୁ ଶିଖାଉଅଛି, ମନେ ହୁଏ ତାହା ଯେପରି ବଳରାମ ଦାସଙ୍କ ଅମର କୃତିର ଦାନ । ଭକ୍ତକବିଙ୍କ ରାମାୟଣଭଳି ଶୁଦ୍ଧ ସରଳ ଲୋକଭାଷାରେ ରଚିତ ପୌରାଣିକ ଗ୍ରନ୍ଥମାନ ଲୋକ ବିଶ୍ୱାସ ଓ ଲୋକଜୀବନର ଧର୍ମଧାରାକୁ ଯେପରି ଭାବରେ ରୂପ ଦେଇଛି, ତା ବର୍ଣ୍ଣନା କରି ଅଧ୍ୟାପକ ଡା: କୁଞ୍ଜବିହାରୀ ଦାଶ ଯଥାର୍ଥ କହିଛନ୍ତି--"ଏହା ଲୋକ ସାଧାରଣଙ୍କ ଲାଗି ଧର୍ମପଥର ତୋରଣ ଖୋଲି ଦେଇଥିଲା । ମନୁଷ୍ୟ ଓ ଭଗବାନଙ୍କ ମଧ୍ୟରେ ପୌରୋହିତ୍ୟର ବ୍ୟବଧାନକୁ ଅସ୍ୱୀକାର କରିଥିଲା । ସମସ୍ତଙ୍କୁ ଗୋଟିଏ ଆଦର୍ଶରେ ସଂହ-ଗୁଳିତ କରିଥିଲା । ଉଚ୍ଚ ନୀଚ ଜାତିଧର୍ମ ନିର୍ବିଶେଷରେ ସତ୍ୟର ଅବବୋଧ ପାଇଁ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା । ଜନସାଧାରଣଙ୍କୁ ଏହା ଭାବିବାକୁ, ଅନୁଭବ କରିବାକୁ ଓ ତଦନୁଯାୟୀ କାମ କରିବାକୁ ଶିଖାଇଥିଲା । ଏହା ସାଧାରଣଙ୍କ ମଧ୍ୟରେ ନୂତନ ଭାବଧାରା ଓ ଅଭିନବ ମୂଲ୍ୟବୋଧ ଜଗାଇ ପାରିଥିଲା" (୧) ।

ସମନ୍ୱୟ—

ସମନ୍ୱୟହିଁ ଭାରତୀୟ ଲୋକଧର୍ମର ମୂଳତତ୍ତ୍ୱ । ଜାତି ଜାତି, ଗୋଷ୍ଠୀ ଗୋଷ୍ଠୀ ଓ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ବିଶ୍ୱାସ, ଆଚାର ଅନୁଷ୍ଠାନ, ନାନା ଦେବ ଦେବୀର ରୂପ କଳ୍ପନା ଆଦିରେ ଆଦାନ ପ୍ରଦାନର ଧାରା ଅତି ପ୍ରାଚୀନ କାଳରୁ ଏ ଦେଶରେ ଅଖଣ୍ଡ ଭାବରେ ଚାଲି ଆସୁଅଛି । ଏଭଳି କି ଆମ ଦେଶର ପ୍ରଥମ ଅଧିବାସୀ, ବର୍ତ୍ତମାନର ଆଦିବାସୀଙ୍କ ସଂସ୍କୃତି ଓ ଧର୍ମର ମଧ୍ୟ ଏଦିଗରେ ଦାନ କମ ନୁହେଁ । "ଆର୍ଯ୍ୟ, ବ୍ରାହ୍ମଣ୍ୟ, ଜୈନ ଆଦି ସଂପ୍ରଦାୟର ଧର୍ମ କର୍ମ, ଶ୍ରାଦ୍ଧ, ବିବାହ, ଜନ୍ମମୃତ୍ୟୁ ପ୍ରଭୃତି ବିଶ୍ୱାସ, ସଂସ୍କାର ଓ ଆଚାର ଅନୁଷ୍ଠାନ, ନାନା ଦେବଦେବୀଙ୍କର ରୂପ କଳ୍ପନା, ଆହାର ବିହାର, ଛୁଆଁ ଛୁଇଁ ଆଦି ଆମେ ଏ ଦେଶର ଆଦିବାସୀଙ୍କଠାରୁ ଆତ୍ମସାତ୍ କରିଅଛୁଁ ବୋଲି ଆଜିକାଲି ପଣ୍ଡିତମାନେ ଦୃଢ଼ମତ ପୋଷଣ କରିଥାଆନ୍ତି" (୨) । ଏଠାରେ ସ୍ମରଣ ରଖିବା ଉଚିତ, ପ୍ରତ୍ୟେକ ସଂସ୍କୃତିର ଏକ ଜୀବାଧର୍ମ ଅଛି । ଜୀବାଧର୍ମର ମୂଳତତ୍ତ୍ୱ ହେଉଛି—

(୧) A Study of Orissan Folklore, page—116.
(୨) ବାଙ୍ଗାଲୀର ଇତିହାସ, (ଆଦିପର୍ବ) ଡା: ନୀହାରରଞ୍ଜନ ରାୟ, ପୃ: ୫୭୨ ।

ପରମ୍ପରାର ଧାରାକୁ ବିଶୁଦ୍ଧ ରଖିବାର ଅପ୍ରାଣ ପ୍ରୟାସ । କିନ୍ତୁ ସମସ୍ତ ଚରଣ ଏଇ ବିଶୁଦ୍ଧତା ରକ୍ଷା କରିବାକୁ ଚାହାନ୍ତି ନାହିଁ । ତାର ଅନ୍ତର୍ନିହିତ ପ୍ରବାହ ଶକ୍ତି ବିଭିନ୍ନ ସଂସ୍କୃତିର ଧାରାକୁ ଗଙ୍ଗା ଯମୁନା ଜଳ ମିଳନମୁଖୀ କରାଏ । ଏ ମିଳନର ଗତି ଅତି ମନ୍ଥର । ତେଣୁ ସବୁବେଳେ ସହଜରେ ଏହା ଆମ ଆଖିରେ ପଡ଼େ ନାହିଁ । ତେବେ ଗମ୍ଭୀର ଭାବରେ ନିରୀକ୍ଷଣ କଲେ, ଏହା ସ୍ପଷ୍ଟ ହୁଏ । ଏ ପ୍ରସଙ୍ଗରେ ସମଗ୍ର ଭାରତବର୍ଷ କଥା ଏଠାରେ କହି ଲାଭ ନାହିଁ । ଓଡ଼ିଶାର ପୁରପଲ୍ଲୀକୁ, ପାର୍ବତ୍ୟ ଅଞ୍ଚଳକୁ ଲକ୍ଷ୍ୟ କଲେ ଜଣାପଡ଼ିବ, ସେଠାରେ ଏଇ ସମନ୍ୱୟର ସାଧନା ନିରବଚ୍ଛିନ୍ନ ଗତିରେ ଚାଲିଅଛି । ଅରଣ୍ୟ ପର୍ବତର କେତେ "ଅପାଣିଆ" ଦେବତା ପ୍ରତିଦିନ ସୃଷ୍ଟି ହେଉଛନ୍ତି । ନୂତନ ବିଧି ବିଧାନରେ କେତେ ଦେବ ଦେବୀଙ୍କର ପୂଜା ପାର୍ବଣ ନୂଆ ହୋଇ ଆରମ୍ଭ ହେଉଅଛି । କେଉଁଠି ଉଇ ହୁଙ୍କା ତଳେ ବା ବାଟଗଛ ମୂଳରେ ପ୍ରତ୍ୟକ୍ଷ ମହିମାବନ୍ତ ଦେବତାଙ୍କର ଆବିର୍ଭାବ ହେଉଅଛି । ଲୋକ ସମାଜରେ ଏମାନଙ୍କୁ ପ୍ରତିଷ୍ଠା ଆଣିଦେବା ଲାଗି ମନରୁ କେତେ ପୌରାଣିକ କାହାଣୀମାନ ଯାଉ ଗାଆଁ ଗହଳର ପୁରାଣ କବିମାନେ ପ୍ରଚୁର କରିବାରେ ଲାଗିଛନ୍ତି । ଏଇ କ୍ରମବର୍ଦ୍ଧମାନ ଲୋକବିଶ୍ୱାସ ଓ ଲୌକିକ ଦେବ ଦେବୀଙ୍କୁ ସଂପୂର୍ଣ୍ଣରୂପେ ଉପେକ୍ଷା କରିବା ସମ୍ଭବ ହୋଇ ନ ଥିଲେହେଁ, ଶାସ୍ତ୍ରୀୟ ଧର୍ମ କ୍ଷେତ୍ରର ପଣ୍ଡାମାନେ ମୁକ୍ତ ଅନ୍ତରରେ ଏ ସବୁକୁ ସମର୍ଥନ କରି ପାରୁନାହାନ୍ତି । କିନ୍ତୁ ବଳରାମ ଦାସଙ୍କ ଭଳି ଭକ୍ତ କବିଙ୍କର ଲୋକଜୀବନ ସହିତ ସଂପର୍କ ଥିଲା ଅତି ନିବିଡ଼ । ତେଣୁ ଲୋକଧର୍ମ ଓ ଲୋକ ବିଶ୍ୱାସର ଅଭିବ୍ୟକ୍ତି, ଲୋକପୂଜିତ ଅସଂଖ୍ୟ ଦେବ ଦେବୀଙ୍କ ପ୍ରତିଷ୍ଠା ପାଇଁ ଏଠାରେ ବିଶେଷ ଉଦ୍ୟମ ହୋଇଥିବା ସ୍ୱାଭାବିକ । ରାମଚନ୍ଦ୍ର ବହୁ ଗ୍ରାମ ଦେବ ଦେବୀମାନଙ୍କୁ ପୂଜା ଓ ପ୍ରତିଷ୍ଠା କରିଥିବାର କବି ବର୍ଣ୍ଣନା କରିଅଛନ୍ତି । ଗୟା, ବାରାଣସୀ ଆଦି ପ୍ରତିଷ୍ଠିତ ତୀର୍ଥମାନଙ୍କରେ ବ୍ରାହ୍ମଣଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ରାମଚନ୍ଦ୍ର ଉତ୍କଳର ଭାସ୍କର ତୀର୍ଥ ଚନ୍ଦ୍ରଭାଗାକୁ ଆସିଛନ୍ତି (୧) । ଚନ୍ଦ୍ରଭାଗାରେ ସ୍ନାନ ଶେଷକରି ରୁଦ୍ରାକ୍ଷବୃକ୍ଷ, କୁଲାଇଚଣ୍ଡୀ, ରାମଚଣ୍ଡୀ, ପାଷାଣଚଣ୍ଡୀ, ବାଲୁକେଶ୍ୱର ଆଦି ବହୁ ଦେବ ଦେବୀଙ୍କର ପ୍ରତିଷ୍ଠା ଓ ପୂଜା କରିବା କଥା ବଳରାମ ଦାସ ବର୍ଣ୍ଣନା କରିଅଛନ୍ତି । ତା'ପରେ ଓଡ଼ିଶୀ ଧର୍ମ ସାଧନାରେ ବିରାଟ

(୧) ଆରଣ୍ୟକ କାଣ୍ଡ, ପୃ: ୧୨ ।

ସମନ୍ୱୟର ଜୀବନ୍ତ ପ୍ରତୀକ ଜଗନ୍ନାଥ ତ୍ରିମୂର୍ତ୍ତିଙ୍କୁ ପୂଜା କରିଛନ୍ତି । ଏଠାରେ କବି ସୀତା, ଲକ୍ଷ୍ମଣ ଓ ରାମଚନ୍ଦ୍ରଙ୍କୁ ଯଥାକ୍ରମେ ସୁଭଦ୍ରା, ବଳରାମ, ଓ ଜଗନ୍ନାଥଙ୍କ ସହିତ ସମାନ ବୋଲି କଳ୍ପନା କରିଅଛନ୍ତି । ଲୋକମାନଙ୍କ ଭିତରେ ଲୌକିକ ଦେବତାଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା ନାନା ଆଖ୍ୟାନ ବଳରାମ ଦାସ ପରିବେଷଣ କରିଅଛନ୍ତି । ଦୃଷ୍ଟାନ୍ତରେ ଏଠାରେ ତ୍ରିମ୍ବେଶ୍ୱର ମହାଦେବଙ୍କ ପ୍ରତିଷ୍ଠା ପ୍ରସଙ୍ଗ ଉଲ୍ଲେଖ କରାଯାଇପାରେ । ଥରେ ରାମଚନ୍ଦ୍ର ଋଷିକୁଲ୍ୟା ନଦୀରେ ସ୍ନାନ ସାରି ସ୍ନାନାନ୍ତ ପୂଜା ପାଇଁ ଲକ୍ଷ୍ମଣଙ୍କୁ ରୁଦ୍ର ଦେବତାଟିଏ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ । ଆଉ କିଛି ନ ପାଇ ରାମଚନ୍ଦ୍ରଙ୍କ ଆଦେଶ ଅନୁସାରେ ଲକ୍ଷ୍ମଣ ଲାଉତୁମ୍ବାଟିଏ ଶିବଲିଙ୍ଗରୂପେ ସ୍ଥାପନା କଲେ । ସେଥିରେ ମହାଦେବ ବିଜେ ହେଲେ । ରାମଚନ୍ଦ୍ର ତାଙ୍କୁ ପୂଜିଲେ । ସେହିଦିନଠୁ ତ୍ରିମ୍ବେଶ୍ୱର ମହାଦେବଙ୍କର ପ୍ରତିଷ୍ଠା ।

ସ୍ଥାନେ ସ୍ଥାନେ ଲିଙ୍ଗପୂଜା ଓ ଦେବୀ ପୂଜାର ବିଶଦ ବର୍ଣ୍ଣନା ଦେଖି କେହି କେହି ଦାଣ୍ଡି ରାମାୟଣରେ ଶାକ୍ତ, ଶୈବ ଆଦି ସଂପ୍ରଦାୟର ପ୍ରଭାବ ଲକ୍ଷ୍ୟକରି ପାରନ୍ତି । ଅଗ୍ନି, ଶିବ, ଗଣପତି ପ୍ରଭୃତି ପଞ୍ଚଦେବତାଙ୍କର ବନ୍ଦନାମାନ ଦେଖି ସ୍ମାର୍ତ୍ତ, ଗାଣପତ୍ୟ ପ୍ରଭୃତି ଧର୍ମ ସଂପ୍ରଦାୟର ପରମ୍ପରା ଖୋଜି ପାରନ୍ତି । କିନ୍ତୁ ଏଠାରେ ଶେଷଥର ଲାଗି କହି ରଖିବା ଅସମୀଚୀନ ହେବନାହିଁ ଯେ, କବି ବଳରାମ ଦାସ କୌଣସି ସଂପ୍ରଦାୟ ବିଶେଷର ମତବାଦକୁ ପ୍ରତିଷ୍ଠା ଦେବାଲାଗି ଗ୍ରନ୍ଥ ରଚନା କରି ନାହାନ୍ତି । ଉତ୍କଳୀୟ ଧର୍ମ ଧାରାରେ ଓ ଲୋକମନରେ ଯେଉଁ ଦେବ ଦେବୀ ଯେପରି ଭାବରେ ପ୍ରତିଷ୍ଠା ଲାଭ କରିଥିଲେ, ତାହାର ପ୍ରାଞ୍ଜଳ ପ୍ରକାଶ ଏଥିରେ ଘଟିଅଛି । ସର୍ବୋପରି ଓଡ଼ିଶାର ଧର୍ମ ଜଗତରେ ପ୍ରତିଷ୍ଠିତ ହୋଇଛନ୍ତି ଜଗନ୍ନାଥ । ଜଗନ୍ନାଥ ଧର୍ମହିଁ ଓଡ଼ିଶାର ଧର୍ମ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିଲେ—"ସେ ଏକା ଆମର ମୂର୍ତ୍ତିମନ୍ତ ସଭ୍ୟତା ଓ ସାହିତ୍ୟ" (୧) । ସେଥିଲାଗି ଦାଣ୍ଡି ରାମାୟଣରେ ପ୍ରତିଚ୍ଛନ୍ଦରେ ତାଙ୍କର ସ୍ତୁତି ସବୁଠାରୁ ବେଶୀ ପ୍ରତିଷ୍ଠା । ତାଙ୍କରି ନାମରେ ଦାଣ୍ଡି ରାମାୟଣର ଅନ୍ୟ ନାମ କବି ରଖିଛନ୍ତି—"ଜଗମୋହନ ରାମାୟଣ" ।

---

(୧) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ-୧ମ ଭାଗ, ପୃ: ୬୩୦ ।

## ଭକ୍ତକବିଙ୍କ ପ୍ରତିଷ୍ଠା—

ଭାରତବର୍ଷକୁ ରବୀନ୍ଦ୍ର ନାଥ "ମହାମାନବର ସାଗର ତୀର" ବୋଲି ଉଦ୍‌ବୋଧନ କରିଅଛନ୍ତି । ଏହାକୁ ଏହିଭଳି "ମହାଭାବର ମହାସାଗର" ବୋଲି କୁହା ଯାଇପାରେ । ଅସଂଖ୍ୟ ଧର୍ମର ମତବାଦ ଏଥିରେ ତରଙ୍ଗ ତୋଳନ୍ତି । ଅସଂଖ୍ୟ ଜାତିର ସଂସ୍କୃତି-ଦୀପ ବାଡ଼ବାଗ୍ନି ଭଳି ପ୍ରଜ୍ୱଳିତ ହୋଇ ଏହାର ଗର୍ଭକୁ ଅଲୋକିତ କରନ୍ତି । ପୃଥିବୀର ବହୁଦେଶ ସହିତ ଭାବର ଆଦାନ ପ୍ରଦାନର ଅସଂଖ୍ୟ ସ୍ରୋତ ଏହାର ତରଙ୍ଗ ସ୍ରୋତକୁ ଚିର-ଗତିଶୀଳ କରିଅଛି । ତେବେ ଏସବୁ ଏହାର ବାହାରର କଥା । ଏହାର ଅନ୍ତର ପ୍ରଦେଶରେ ପ୍ରଶାନ୍ତ ସାଗରର ସ୍ତବ୍ଧତା ଚିର ପ୍ରତିଷ୍ଠିତ । ଭାରତର ଅଗଣିତ ଜନ ସମୁଦାୟ ଭିତରେ ଜୈନ, ବୌଦ୍ଧ, ଶାକ୍ତ, ତାନ୍ତ୍ରିକ ଓ ବୈଷ୍ଣବ ଆଦି ବହୁଧର୍ମର ମତବାଦ ପ୍ରଚଳିତ ହୋଇଛି । କିନ୍ତୁ କୌଣସି ସମୟରେ ଭାରତୀୟ ଜନତା କୌଣସି ଗୋଟିଏ ଧର୍ମରେ ସଂପୂର୍ଣ୍ଣଭାବେ ଦୀକ୍ଷିତ ହୋଇ ନାହିଁ ବା ପୂର୍ଣ୍ଣ ଆସ୍ଥା ସ୍ଥାପନ କରି ନାହିଁ । କୌଣସି ଅଂଶରେ ନୁହେଁ, ପୂର୍ଣ୍ଣରେହିଁ ତାର ଆସ୍ଥା । ପରିପୂର୍ଣ୍ଣ ଧର୍ମ ଦୃଷ୍ଟିରେ ସେ ଉଦ୍‌ବୁଦ୍ଧ । ତାର ଏକ ବିଶିଷ୍ଟ ଧର୍ମ ସେ ପାଳନ କରେ । ପରିବାରର କଲ୍ୟାଣ ଓ ସମାଜର ସଂହତିହିଁ ତାର ଆଦର୍ଶ । ଦେବ ଦ୍ୱିଜ ଅର୍ଚ୍ଚନା, କର୍ମଫଳ ଓ ଭାଗ୍ୟବାଦରେ ତାର ଆସ୍ଥା ! ଧର୍ମପାଳନ ତାର ଲକ୍ଷ୍ୟ । ଏ ଧର୍ମ ତାର ଗୃହଧର୍ମ । ଅସଂଖ୍ୟ ଦେବ ଦ୍ୱିଜଙ୍କୁ ଶ୍ରଦ୍ଧା, ପର୍ବପର୍ବାଣି ଓ କୌଳିକ ଅନୁଷ୍ଠାନ ପାଳନ ମଧ୍ୟଦେଇ ତାର ଗାର୍ହସ୍ଥ୍ୟ ଧର୍ମର ଆଦର୍ଶ ଓ ସାମାଜିକତା ରକ୍ଷାକରେ । ଅସଂଖ୍ୟ ସାନବଡ଼ ତୀର୍ଥଯାତ୍ରା, ମେଳା ମହୋତ୍ସବ ଭିତର ଦେଇ ଦେଶର ପ୍ରକୃତି, ପରିବେଷ୍ଟନୀ ଓ ମାନବଗୋଷ୍ଠୀ ସହିତ ପରିଚିତ ହୁଏ । ଏଭଳି ଏକ ମହାନ୍ ଜନଗୋଷ୍ଠୀ ମଧ୍ୟରେ ଯେଉଁ ମହାତ୍ମାଙ୍କର ପ୍ରତିଷ୍ଠା, ସର୍ବତୋମୁଖୀ ସମନ୍ୱୟହିଁ ତାଙ୍କର ଏକମାତ୍ର ଧର୍ମ ହେବା ସ୍ୱାଭାବିକ । ଏଥିଲାଗି ବଳରାମ ଦାସଙ୍କ ଧର୍ମ ଦୃଷ୍ଟିରେ ଆମେ ଦେଖୁ ଭକ୍ତି ଓ ଜ୍ଞାନର ସମନ୍ୱୟ, ହୃଦୟ ଓ ମେଧାର ସମନ୍ୱୟ, ଯୋଗ ଓ କର୍ମର ସମନ୍ୱୟ । ପୁଣି ତାଙ୍କ ଭାବଧାରା ଭିତରେ ଦେଖୁ ଶାସ୍ତ୍ରୀୟ ଆଦର୍ଶବାଦ ଓ ଗ୍ରାମ୍ୟ ବା ଲୌକିକ ବ୍ୟାବହାରିକ ବିଧିର ମଧୁର ସଂମିଶ୍ରଣ, ସନ୍ନ୍ୟାସୀର ତ୍ୟାଗଭାବନା ଓ ଗୃହୀର ଭୋଗାକାଂକ୍ଷାର ଏକତ୍ର ସମାବେଶ । ଗୋଟିଏ କଥାରେ କହିଲେ, ଭାରତବର୍ଷର ସବୁ ପ୍ରକାର

ମତବାଦ, ସବୁ ପ୍ରକାର ଧର୍ମ-ଧାରା ଓ ସବୁ ପ୍ରକାର ଭାବାଦର୍ଶ ଭିତରେ ଯାହା କିଛି ଗ୍ରହଣୀୟ, ପୁଷ୍ଟିକର ଓ ସ୍ୱାଦ୍ୟ ଉପାଦାନ ଥିଲା, ସବୁକୁ ଏକତ୍ର କରି ରାମାୟଣ ମହାଗ୍ରନ୍ଥର କନକ-ପାତ୍ରରେ ଅଗଣିତ ଜନ ସମୁଦାୟଙ୍କ ସ୍ୱାସ୍ଥ୍ୟ, ସଂହତି ଓ ସମୃଦ୍ଧି ପାଇଁ ଏକ ଅପୂର୍ବ ରସାୟନ ପରିବେଷଣ କରିଛନ୍ତି ସାଧକ ଭକ୍ତ ବଳରାମ ଦାସ । ଏହାହିଁ ତାଙ୍କର ଧର୍ମସାଧନା । ଏଥିଲାଗି ଭାରତବର୍ଷର ସାର୍ବଜନୀନ ଧର୍ମାଧିନାୟକମାନଙ୍କ ମଧ୍ୟରେ ବଳରାମ ଦାସ ଜଣେ ହୋଇ ରହିବେ ।

---

# ଦାଣ୍ଡିରାମାୟଣର ଅନୁଶୀଳନ

୨

—ସାହିତ୍ୟ—

"ପ୍ରକୃତରେ କବିଙ୍କ ଲକ୍ଷ୍ୟ କଅଣ ଥିଲା, ତାଙ୍କ ଆଖି ଆଗରେ କିପରି ସୃଷ୍ଟିର ପରିକଳ୍ପନା ଥିଲା, ତାହା ଯେନି କେତେ ପରିମାଣରେ ସେ ସଫଳତା ଲାଭ କରିଥିଲେ—ଏହା ଭଲ ଭାବରେ ନିଜେ ବୁଝିବା ସମାଲୋଚକର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।"

ଗେଟେ (Goethe)

ଭାରତୀୟ ସାହିତ୍ୟର ଦିଗ୍‌ବଳୟରେ ବ୍ୟାସ ଓ ବାଲ୍ମୀକି ଦୁଇ ଦୀପସ୍ତମ୍ଭ ରୂପେ ବିଦ୍ୟମାନ । ଓଡ଼ିଆ ସାହିତ୍ୟରେ ସାରଳା ଓ ବଳରାମଙ୍କ ସ୍ଥାନ ଅନୁରୂପ । ବସ୍ତୁତଃ ଭକ୍ତକବି ବଳରାମ ଉତ୍କଳର ବାଲ୍ମୀକି । ରାମଚରିତ ଯେନି ଏକ ବିରାଟ ସାହିତ୍ୟ ଓଡ଼ିଆଭାଷାରେ ସେ ପ୍ରଥମେ ଗଢ଼ିଛନ୍ତି । ଆଦିକବି ବାଲ୍ମୀକିଙ୍କ ରାମାୟଣ ସଂସ୍କୃତ ସାହିତ୍ୟରେ ଏକ ରତ୍ନ । ପୂର୍ବେ ଦେଖିଥାଇଁ, ଭକ୍ତକବିଙ୍କ ରଚନା ସଂସ୍କୃତର ଅନୁକୃତି ତ ନୁହେଁ, ସଂପୂର୍ଣ୍ଣ ଅନୁସରଣ ବି ନୁହେଁ । ତାହା ଓଡ଼ିଆ ସମାଜ ଓ ସଂସ୍କୃତିର ପ୍ରତୀକ—ଏକ ସ୍ୱତନ୍ତ୍ର "ଜ୍ଞାନକୋଷ" । ବାଲ୍ମୀକିଙ୍କ ରାମାୟଣର ଆଲୋଚନା କରିବାକୁ ଯାଇ ଜର୍ମାନ ପଣ୍ଡିତ ଉଇଣ୍ଟାର ନିସ୍ (M, Winternitz) କହୁଛନ୍ତି—"ଏହା ଏକାଧାରରେ ଲୋକପ୍ରିୟ ମହାକାବ୍ୟ ଓ ଅଳଙ୍କାରିକ କାବ୍ୟ" (୧) । ଏହାର ତାତ୍ପର୍ଯ୍ୟ ଦେଉଛି ଏଇ ମହାକାବ୍ୟ ଲୋକରେ ଯେପରି ପ୍ରିୟ, ତାର ସାହିତ୍ୟିକ ମୂଲ୍ୟ ଲାଗି ଶିକ୍ଷିତ ସମାଜରେ ସେଇପରି ପୂଜିତ । ଓଡ଼ିଆ ସାହିତ୍ୟର ଦୃଷ୍ଟାନ୍ତରେ ରାମଚରିତ ଅବଲମ୍ବନରେ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ "ବୈଦେହୀଶ ବିଳାସ"କୁ ଦେଖିଲେ, ଏହା ସ୍ପଷ୍ଟହେବ । ଏହା ଗୋଟିଏ ଅଳଙ୍କାରିକ

---

(୧) "The Ramayan appears to as a work that is popular Epic and ornate poetry at the same time".
A History of Indian literature. Vol. I. p. 476.

କାବ୍ୟ । ସୁଧୀ ରସିକଙ୍କ ପୂଜା ମନ୍ଦିରର ଧୂପ ଆରତିରେ ଏହାର ଆବାହନ । ଅନ୍ୟ ପକ୍ଷରେ ବଳରାମ ଦାସଙ୍କ ରାମାୟଣ ଗୋଟିଏ ଲୋକପ୍ରିୟ ମହାକାବ୍ୟ । ପଲ୍ଲୀର ଘରେ ଘରେ ତାର ଆଦର । ଶିକ୍ଷିତ ମୂର୍ଖ, ଧନୀ ନିର୍ଦ୍ଧନ ପ୍ରତି ଓଡ଼ିଆର ହୃଦୟସିଂହାସନରେ ତାର ଆସନ । କିନ୍ତୁ କେବଳ ଲୋକରେ ନୁହେଁ, ଶିଷ୍ଟରେ ବି ପୂଜା ପାଇବା ଲାଗି ଯଦି ଏଥିରେ ଉପାଦାନ ଥାଏ—ତେବେ ଏହା ବାଲ୍ମୀକିଙ୍କ କୃତି ଭଳି, ଏକ ପରିପୂର୍ଣ୍ଣ ସାହିତ୍ୟ ହୋଇପାରିବ । ତାହା ହିଁ ଏଠି ବିଚାର୍ଯ୍ୟ ।

ଦାଣ୍ଡି ରାମାୟଣର ବିଶିଷ୍ଟ ପ୍ରକୃତି—

ମୂଳରୁ ଦାଣ୍ଡି ରାମାୟଣର ବିଶିଷ୍ଟ ପ୍ରକୃତି ବିଷୟରେ ଟିକିଏ ଅବହିତ ହେବା ଆବଶ୍ୟକ । ବଳରାମ ଦାସଙ୍କୁ କାବ୍ୟର କବି ନ କହି, 'ଓଡ଼ିଆ ସାହିତ୍ୟର ଇତିହାସରେ ସାରଳାଦାସଙ୍କ ପରେ ଦ୍ୱିତୀୟ ପୁରାଣ ଲେଖକ' ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଯଥାର୍ଥ କହିଛନ୍ତି (୧) । ଦାଣ୍ଡି ରାମାୟଣ କାବ୍ୟ ନୁହେଁ, ପୁରାଣ ଭାବରେ ଲୋକରେ ପରିଚିତ । ଅବଶ୍ୟ ଲୋକ ମନରେ ଆନନ୍ଦ ଦେବାଭଳି ଉପାଦାନର ଏଥିରେ ଅଭାବ ନାହିଁ । ତଥାପି, କେବଳ ବିଶୁଦ୍ଧ ଆନନ୍ଦ ଦେବା ଏହାର ଲକ୍ଷ୍ୟ ନୁହେଁ । ଜନସାଧାରଣଙ୍କ ଧାର୍ମିକ ଓ ନୈତିକ ଜୀବନକୁ ବଳ ଦେବା ପାଇଁ ଭକ୍ତକବି ଏଇ ଗ୍ରନ୍ଥର ପରିକଳ୍ପନା କରିଛନ୍ତି । ସାଧକ ଭକ୍ତଙ୍କ ପାଇଁ ସେ ଗ୍ରନ୍ଥ ରଚନା କରିଥିବାର ଇଙ୍ଗିତ ବହୁ ସ୍ଥାନରେ ଦେଇଛନ୍ତି । ସୁନ୍ଦରାକାଣ୍ଡରେ କହିଛନ୍ତି—"ଯେଉଁମାନେ ଏ ଜଗମୋହନ ରାମାୟଣକୁ ତଥ୍ୟ କରି ଭଜିବେ ସେମାନେ ବୈକୁଣ୍ଠ ଲଭିବେ" (୨) । ଏହା କବିର ଉକ୍ତି ନୁହେଁ, ଧର୍ମ-ସାଧକର ଉକ୍ତି । ଏଇ ଭାବରେ ଦାଣ୍ଡି ରାମାୟଣର ପୁରାଣ ଭଳି ଧର୍ମ ଗ୍ରନ୍ଥ-ଗୁଡ଼ିକ ସହିତ ସାମ୍ୟ ରହିଛି । ସେଇ ପୁରାଣରେ ପୁରାଣର ପଞ୍ଚଲକ୍ଷଣ—ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର, ବଂଶାନୁଚରିତ ଆଦି କଥା କୁହା ଯାଇଅଛି (୩) । କିନ୍ତୁ ସମାଲୋଚନା ଦୃଷ୍ଟିରେ ଦେଖିଲେ ପୁରାଣଗୁଡ଼ିକରେ ମୁଖ୍ୟତଃ ତିନୋଟି ବିଶିଷ୍ଟ ଲକ୍ଷଣ ଦେଖିବାକୁ ମିଳେ । ପ୍ରଥମରେ

(୧) ଓଡ଼ିଆ ସାହିତ୍ୟର ପରିଚୟ, ପ୍ରଥମ ଭାଗ (୨ୟ ସଂସ୍କରଣ), ପୃ: ୨୮୭ ।
(୨) ଜଗମୋହନ ବୋଲି ଏ ରାମାୟଣ ନାମ ।
ତଥ୍ୟ କରି ଶୁଣିଲେ ବସଇ ବିଷ୍ଣୁ ସ୍ଥାନ । ସୁନ୍ଦରକାଣ୍ଡ, ପୃ: ୨ ।
(୩) ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣଂ । ବାୟୁ ପୁରାଣ (IV-10)

ସାଂପ୍ରଦାୟିକ ମତବାଦର ପ୍ରାଧାନ୍ୟ,ଦ୍ୱିତୀୟରେ ଜାତି ଆଶ୍ରମ ଆଦି ବ୍ରାହ୍ମଣ୍ୟ-ଧର୍ମର ଅଗ୍ନିର ପଦ୍ଧତିର ବର୍ଣ୍ଣନା ଓ ତୃତୀୟରେ ସ୍ଥାନେ ସ୍ଥାନେ ସାଂଖ୍ୟ ଓ ଯୋଗଦର୍ଶନର ପ୍ରକାଶ (୧) । ଏଇ ଦୃଷ୍ଟିରେ ଦାଣ୍ଡିରାମାୟଣକୁ ପୁରାଣ ରୂପେ ଗ୍ରହଣ କରିବାକୁ ଉପାଦାନର ଅଭାବ ହେବ ନାହିଁ । ଜଗନ୍ନାଥ ଧର୍ମପ୍ରତି ଏହାର ଆକର୍ଷଣ ଅଧିକ । ବ୍ରାହ୍ମଣ୍ୟ ଧର୍ମ, ସାଂଖ୍ୟ ଓ ଯୋଗଦର୍ଶନର ପ୍ରଭାବ ଏହା ଉପରେ ସୁସ୍ପଷ୍ଟ । ଏହାର କଥାଭାଗ ଉପରେ ପୁରାଣଗ୍ରନ୍ଥଙ୍କର ପ୍ରଭାବ ବିଷୟ ପୂର୍ବେ କୁହାଯାଇଅଛି । ପୁଣି ସଭ୍ୟତାର ଆଦିକାଳର ଯେଉଁ ପରମ୍ପରାମାନ ରୂପ କଳ୍ପନାରେ ଅତିଶୟୋକ୍ତି ରୂପେ ପୁରାଣ ସାହିତ୍ୟରେ ଦେଖାଯାଏ, ସେ ସବୁ ଏହାର ପ୍ରତିଚ୍ଛନ୍ଦରେ ଜଡ଼ିତ । ଇତିହାସ ଓ ପୁରାଣର ଉପାଦାନରେ ଯେପରି ଆଦିକବି ବାଲ୍ମୀକିଙ୍କ ଗ୍ରନ୍ଥ ଗଠିତ (୨); ଦାଣ୍ଡିରାମାୟଣ ସେଇ ଭାବରେ ରଚିତ । ଏକାଧାରରେ ପୁରାଣ ଓ କାବ୍ୟ-ରୂପେ ରାମାୟଣକୁ ରୂପ ଦେବାରେ ବାଲ୍ମୀକି ହିଁ ବଳରାମ ଦାସଙ୍କର ପଥସ୍ରଷ୍ଟା ! ସେଥିଲାଗି ଜୀବନୀ ପ୍ରସଙ୍ଗରେ ବାଲ୍ମୀକିଙ୍କୁ କବି ଗଭୀର ଶ୍ରଦ୍ଧାଞ୍ଜଳି ଦେଇଥିବାର ଦେଖିଥାଉଁ । ବଳରାମ ଦାସ ଦାଣ୍ଡିରାମାୟଣକୁ ପୁରାଣ ଭାବରେ ଲେଖିଥିଲେହେଁ—ସେଥିରେ ମୌଳିକ ମହାକାବ୍ୟର ସମସ୍ତ ପ୍ରକୃତି ଅଲକ୍ଷ୍ୟରେ ଫୁଟିଉଠିଛି । ସମୁଦାୟ ଗ୍ରନ୍ଥରେ ମହାକାବ୍ୟର ମହତ ଓ ଆଦର୍ଶବୋଧ, ଅନ୍ତଃପ୍ରକୃତି ଓ ବହିଃପ୍ରକୃତି ଚିତ୍ରଣ, ରୂପସୃଷ୍ଟିରେ କାବ୍ୟଧର୍ମ—ମହାକାବ୍ୟର କବିରୂପେ ବଳରାମ ଦାସଙ୍କ ଆସନ ଦୃଢ଼ କରିଛି । ଏହି ଅମରକୃତିର ସାହିତ୍ୟିକ ମୂଲ୍ୟ ନିରୂପଣରେ ଏହା ହିଁ ସ୍ପଷ୍ଟ ହୋଇଉଠେ ।

**ମହାକାବ୍ୟ—**

ଦାଣ୍ଡିରାମାୟଣ ଗୋଟିଏ ସଙ୍କଳନ କଳ୍ପିତ ମହାକାବ୍ୟ ନୁହେ । ଏହା ଏକ ସ୍ୱତଃସ୍ଫୂର୍ତ୍ତି ମହାକାବ୍ୟ । ସମାଜଜୀବନର ଗୋଟିଏ ବିଶେଷ ଅବସ୍ଥାରେ ଏଇ ଧରଣର ମହାକାବ୍ୟର ଆବଶ୍ୟକତା ଦେଖା ଦେଇଥାଏ । ଯେତେବେଳେ ଜାତୀୟ ଜୀବନରେ କୌଣସି ନୂତନ ସଂସ୍କୃତି ଓ

---

(୧) Indian Literature—Winternitz Vol. I,page. 522-523.

(୨) "Epic literature in India consists of Itihas and purans". History of Clasical Sk. literature—M. Krishnamachariar, page. 8

ସଭ୍ୟତାର ଉତ୍ଥାନ ଘଟେ, ନୂତନ ଭାବରେ ସାହିତ୍ୟ ଓ ଭାଷା ଗଢ଼ି ଉଠେ, ସେତେବେଳେ ଏହି କର୍ମଚଞ୍ଚଳ ଯୁଗର ଜୀବନ୍ତ ଆତ୍ମା କୌଣସି କ୍ଷଣଜନ୍ମା ପୁରୁଷଙ୍କ ଭିତର ଦେଇ ମହାକାବ୍ୟ ରୂପେ ଆତ୍ମପ୍ରକାଶ କରେ । ଏହି ଦୃଷ୍ଟିରେ ଦେଖିଲେ ବିଶ୍ୱସାହିତ୍ୟର ସମସ୍ତ ମୌଳିକ ମହାକାବ୍ୟରେ ଅନ୍ତର୍ନିହିତ ସାମ୍ୟ ଦେଖିବାକୁ ମିଳେ । ଏହାର କାରଣ ହେଉଛି —"ମହାକାବ୍ୟର ଉଦ୍ଭାବନ ଗୋଟିଏ ନିର୍ଦ୍ଦିଷ୍ଟ ସାମାଜିକ ଅବସ୍ଥାରେ ଘଟେ । ପୃଥିବୀ ଇତିହାସରେ ଅନୁରୂପ ଅବସ୍ଥାର ବାରମ୍ବାର ପୁନରାବର୍ତ୍ତନ ହୋଇଥାଏ । ବହୁସ୍ଥଳରେ ବହୁବାର ସ୍ୱତନ୍ତ୍ର ଭାବରେ ମହାକାବ୍ୟର ସୃଷ୍ଟି ହୋଇଥିଲେହେଁ ଏହା ପଛରେ ଏକାରକମ ଆବଶ୍ୟକତା ଥିବାରୁ, ସବୁ ମହାକାବ୍ୟର ପ୍ରକୃତି ଏକାଭଳି ହୋଇଥାଏ (୧)" ।

## ମୌଳିକ ଓ ସାହିତ୍ୟିକ ମହାକାବ୍ୟ—

ସାମାଜିକ ଜୀବନର ଧାରା ଧରି ବାଲ୍ମିକି ରାମାୟଣ ଭଳି ମହାକାବ୍ୟର ବିକାଶକ୍ରମ ବିଶ୍ଳେଷଣ କରିବା ଏଠାରେ ସମ୍ଭବ ନୁହେଁ । ତେବେ ଏଠି ଏତିକି ସୂଚନା ଦେବା ସମ୍ଭବ, ବିଶେଷ ସାମାଜିକ ସ୍ଥିତି ଯେଉଁ ମୌଳିକ ମହାକାବ୍ୟ (authentic epic) ଗୁଡ଼ିକୁ ଜନ୍ମଦେଉଛି, ବାଲ୍ମିକି ରାମାୟଣ ସେଥିମଧ୍ୟରୁ ଅନ୍ୟତମ । ମୌଳିକ ଓ ସାହିତ୍ୟିକ ମହାକାବ୍ୟ ମଧ୍ୟରେ ଉଭୟ ରୂପଗତ ଓ ଆଦର୍ଶଗତ ପାର୍ଥକ୍ୟ ଲକ୍ଷିତ ହୁଏ । ସମାଜ ଓ ସାହିତ୍ୟରେ ଏକ ସ୍ୱତଃସ୍ଫୂର୍ତ୍ତି ସାହିତ୍ୟକଳାରୂପେ ମହାକାବ୍ୟର ମୂଲ୍ୟ ପ୍ରତିଷ୍ଠିତ ହୋଇ ସାରିବା ପରେ, କବି ବିଶେଷଙ୍କ ଉଦ୍ୟମରେ ଯେଉଁ ମହାକାବ୍ୟ ରଚିତ ହୁଏ ତାହା ସାହିତ୍ୟିକ ମହାକାବ୍ୟ । ତୁଳନାରେ ଦେଖିଲେ ସାହିତ୍ୟିକ ମହାକାବ୍ୟଠାରୁ ମୌଳିକ ମହାକାବ୍ୟର ବିଷୟବସ୍ତୁ ଅଧିକ ସରଳ ଓ ପ୍ରାକୃତିକ । ମୌଳିକ କାବ୍ୟର ମହାକବିଙ୍କୁ ଆପଣା ଯୁଗମନର ଅଭିବ୍ୟକ୍ତି ଦେବାକୁ ହେଉଥିବାରୁ କୌଣସି ପ୍ରକାର କୃତ୍ରିମତା ଅବଲମ୍ବନ ବା ଅରୂପ ଆଦର୍ଶର ଅନୁସରଣ କରିବାକୁ ପଡ଼େନାହିଁ । ଏ ଦିଗରେ କିନ୍ତୁ ସାହିତ୍ୟିକ ମହାକାବ୍ୟର କବିଙ୍କ ସରଣୀ କଠିନ । ଆପଣାଯୁଗର ଶୈଥିଲ୍ୟ ଓ ଅଧଃପତନରେ ବିଚଳିତ ହୋଇ ଅତୀତର କୌଣସି ମହମମୟ ଯୁଗର ଆଦର୍ଶକୁ ନିଜ ଯୁଗମନରେ ପ୍ରତିଷ୍ଠିତ କରିବାକୁ ସେ ଉଦ୍ୟମ କରନ୍ତି ।

(୧) Epic: an essay—Lascelles Abercrombie : page-7.

ମାନବର ଐଶ୍ୱର୍ଯ୍ୟ ଓ ମହତ୍ତ୍ୱକୁ ମହାକାବ୍ୟରେ ପ୍ରତିଷ୍ଠା ଦେବାଲାଗି ଅନେକ ସମୟରେ ସେମାନଙ୍କୁ ବହୁ ଅରୂପ ଆଦର୍ଶ (abstract idea)ର ଅନୁସରଣ କରିବାକୁ ପଡ଼େ । "ଏଇ ଉଭୟଶ୍ରେଣୀର ମହାକବିଙ୍କ ଭିତରେ ଅବଶ୍ୟ ଦୃଷ୍ଟିକୋଣର ପାର୍ଥକ୍ୟ ଅଛି । ଏମାନଙ୍କର ସମସ୍ୟା ଭିନ୍ନ, ସମାଧାନର ବି ପନ୍ଥା ଭିନ୍ନ । ଉଭୟଙ୍କର ସଂସ୍କୃତି ଓ ବିଶ୍ୱାସ ଏକା ନୁହେଁ । ତଥାପି ଉଭୟଙ୍କର ଉଦ୍ଦେଶ୍ୟ—ମାନବାତ୍ମାର ଐଶ୍ୱର୍ଯ୍ୟ ସନ୍ଧାନ । ଏକ-ଧରଣର କାବ୍ୟ ଶିଳ୍ପ ହିଁ ସେମାନଙ୍କର ସାଧନ । ତେଣୁ ସେମାନଙ୍କର ଶ୍ରମ ମାନବାତ୍ମାର ଇତିହାସରେ ଗୋଟିଏ ଅଧ୍ୟାୟର ଅନ୍ତର୍ଗତ" (୧) । ଏକ ସ୍ୱତନ୍ତ୍ର ସାହିତ୍ୟ ଶିଳ୍ପରୂପେ, ମହାକାବ୍ୟର ଯେଉଁ ପ୍ରକୃତି ନିର୍ଦ୍ଧାରିତ ହୋଇଅଛି, ତାହା ଏଠାରେ ସଂକ୍ଷେପରେ ଆଲୋଚନା କଲେ, ମହାକାବ୍ୟ ରୂପେ ଦାଣ୍ଡି ରାମାୟଣର ସାର୍ଥକତା ବୁଝିବା ସହଜ ହେବ ।

**ମହାକାବ୍ୟର ଲକ୍ଷଣ—**

ସାହିତ୍ୟିକ କଳା ବିଶେଷ ରୂପେ ମହାକାବ୍ୟକୁ ଗ୍ରୀକ୍ ମନୀଷୀ ଆରିଷ୍ଟୋଟଲ୍ ନାଟକ ସହିତ ତୁଳନା କରି ଦେଖିଅଛନ୍ତି । ତାଙ୍କ ମତରେ ନାଟକର ଘଟଣା ବିନ୍ୟାସ, ସଂହତି ଓ ବିକାଶକ୍ରମ ମହାକାବ୍ୟରେ ଦେଖିବାକୁ ମିଳୁଥିଲେ ହେଁ—ମହାକାବ୍ୟର କବି ଏସବୁ ଦିଗରେ ନାଟ୍ୟକାର ଭଳି ବିଶେଷ ସତର୍କତା ଅବଲମ୍ବନ କରନ୍ତି ନାହିଁ । ଏହି ସବୁ ସ୍ଥଳରେ ସେ କେତେକ ପରିମାଣରେ ସ୍ୱାଧୀନତା ଅବଲମ୍ବନ କରନ୍ତି । ଏଇ ସ୍ୱାଚ୍ଛନ୍ଦ୍ୟକୁ ସେ ମହାକାବ୍ୟର କବିଙ୍କଠାରେ ଏକ ଅକ୍ଷମତା ବୋଲି ମନେ କରି, ନାଟକକୁ ଶୀର୍ଷସ୍ଥାନ ଦେଇଅଛନ୍ତି । ତେବେ ମହାକାବ୍ୟର ସ୍ୱତନ୍ତ୍ର ଶିଳ୍ପ ସ୍ୱରୂପକୁ ସେ ସ୍ୱୀକାର କରିଅଛନ୍ତି । ସେ ଏଇ ସିଦ୍ଧାନ୍ତରେ ପହଞ୍ଚି-ଛନ୍ତି ଯେ, "ମହାକାବ୍ୟ ଇତିହାସ ନୁହେଁ । ଅଦି ଅନ୍ତ ହୀନ, ସ୍ଥାନ କାଳ ବ୍ୟତୀତ ଅନ୍ୟ ଭାବରେ ସମ୍ପର୍କ ହୀନ ଘଟଣାବଳୀର ଅନିର୍ଦ୍ଦିଷ୍ଟ ସମାବେଶ ନୁହେଁ । ଏହା ଗୋଟିଏ ଜୀବନ ଚରିତ ବି ନୁହେଁ । ଏଥିରେ ବହୁ ଘଟଣାବଳୀ ପୂର୍ଣ୍ଣ ଗୋଟିଏ ଘଟଣାର ସମାବେଶ ଭିତରେ ଏକ ସୁସଂବଦ୍ଧ ସଂହତି ରକ୍ଷିତ ହୋଇଥିବା ଆବଶ୍ୟକ । ନିର୍ଦ୍ଦିଷ୍ଟ କ୍ରମରେ ଏହାର ଆରମ୍ଭ, ବିକାଶ ଓ ପରିଣତି ଘଟିଥିବା ଉଚିତ" (୨) ।

(୧) From Virgil to Milton—C. M. Bowra (Lond-1945), page-32.

(୨) A Syllabus of poetics—Henry Stephen . page-156.

ସଂସ୍କୃତ ସାହିତ୍ୟରେ ଭାରତୀୟ ଆଳଙ୍କାରିକମାନେ ମଧ୍ୟ ମହାକାବ୍ୟର ଲକ୍ଷଣ ନିର୍ଣ୍ଣୟ କରିବାକୁ ପ୍ରୟାସ କରିଅଛନ୍ତି । ଏମାନଙ୍କ ମଧ୍ୟରେ ଭାମହ, ଦଣ୍ଡୀ, ରୁଦ୍ରଟ ଓ ଅପେକ୍ଷାକୃତ ଅର୍ବାଚୀନ ବିଶ୍ୱନାଥ ଆଦି ପ୍ରଧାନ । ପରସ୍ପର ବିଚାରରେ ଏମାନଙ୍କ ମତମାନ ପୁଷ୍ଟ ହେଲେ ହେଁ, ଏମାନଙ୍କ ମଧ୍ୟରେ ମତାନୈକ୍ୟ ଦେଖାଯାଏ । ଦୃଷ୍ଟାନ୍ତ ସ୍ୱରୂପ ଭାମହ ଓ ଦଣ୍ଡୀ ପୁରାଣ, ଇତିହାସ ଆଦି କଥାର ଅନୁସରଣରେ ମହାକାବ୍ୟ ରଚନାର ପକ୍ଷପାତୀ । କିନ୍ତୁ "କାବ୍ୟଶରୀର" ବା କାବ୍ୟର କଥାଭାଗ "ଉତ୍ପାଦ୍ୟ" ବା ସ୍ୱାଧୀନ ଉଦ୍ଭାବନ ହେବା ଉଚିତ ବୋଲି ରୁଦ୍ରଟଙ୍କ ମତ । ଭାମହ ଓ ଦଣ୍ଡୀ ପୁରାଣ ଓ ଇତିହାସ କଥାର କବିତ୍ୱମୟ ଅଭିବ୍ୟକ୍ତିକୁ ମହାକାବ୍ୟରେ ପ୍ରାଧାନ୍ୟ ଦେଉଥିବା ବେଳେ, ରୁଦ୍ରଟ ଗଳ୍ପର ବିକାଶକୁ ଓ କାବ୍ୟାଳଙ୍କାରକୁ ପ୍ରାଧାନ୍ୟ ଦେଇଅଛନ୍ତି । ରୁଦ୍ରଟଙ୍କର ପ୍ରାୟ ପାଞ୍ଚଶହ ବର୍ଷପରେ ପ୍ରଧାନତଃ ପୂର୍ବସୂରୀ ଦଣ୍ଡୀଙ୍କ ଅନୁସରଣରେ ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ମହାକାବ୍ୟର ଯେଉଁ ଲକ୍ଷଣ ନିର୍ଣ୍ଣୟ କରିଅଛନ୍ତି—ତାର ସାରମର୍ମ ଏଠାରେ ଉଲ୍ଲେଖ ଯୋଗ୍ୟ । ତାଙ୍କ ମତରେ ମହାକାବ୍ୟ ହେଉଛି ନିର୍ଦ୍ଦିଷ୍ଟ ସଂଖ୍ୟକ ସର୍ଗବିଶିଷ୍ଟ (ଆଠରୁ ଊର୍ଦ୍ଧ୍ୱ) ରଚନା । ଶୃଙ୍ଗାର, ବୀର ଓ ଶାନ୍ତ ଏଇ ତିନି ରସରୁ ଗୋଟିଏ ତାହାର ଅଙ୍ଗୀରସ ହୋଇଥାଏ । ମହାକାବ୍ୟର କାହାଣୀ ଇତିହାସ ପୁରାଣାଦି ଅବଲମ୍ବନରେ ରଚିତ ହୋଇଥିଲେ ବି ଏହା କୌଣସି ଆଦର୍ଶ ଚରିତ୍ର ସହିତ ସଂଶ୍ଳିଷ୍ଟ ଥାଏ । ଏହାର ନାୟକ ଉଚ୍ଚକୁଳ ଜାତ ଓ ସଦ୍‌ଗୁଣବନ୍ତ ହୋଇଥାଆନ୍ତି । ପ୍ରତିନାୟକ ବି ତଦନୁରୂପ ହୋଇଥାନ୍ତି । ଏହାର ଉଦ୍ଦେଶ୍ୟ ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁର୍ବର୍ଗ ଫଳପ୍ରଦାନ । ଆରମ୍ଭରେ ଖଳନିନ୍ଦା ଓ ସାଧୁସ୍ତୁତି ଥାଏ । ଉଷା, ପ୍ରଦୋଷ, ସୂର୍ଯ୍ୟ, ଚନ୍ଦ୍ର, ଋତୁଚକ୍ର, ଅରଣ୍ୟ, ପର୍ବତ ଆଦି ପ୍ରାକୃତିକ ଦୃଶ୍ୟ; ଯୁଦ୍ଧ, ଶିକାର, ବିବାହ, ଜନ୍ମ, ମୃତ୍ୟୁ ଆଦି ସାମାଜିକ କ୍ରିୟା; ପ୍ରେମୋଲ୍ଲାସ ବିରହଦଶା ଆଦି ମାନବିକ ସୁଖ ଦୁଃଖର ବର୍ଣ୍ଣନା ମୁଖ୍ୟତଃ ଏଥିରେ ସ୍ଥାନ ପାଇଥାଏ (୧) ।

---

(୧) The Foundations of Indian poetry—J. Nobel (Cal-1925) p. 151—ଅବଲମ୍ବନରେ ।

## ଦାଣ୍ଡି ରାମାୟଣରେ ମହାକାବ୍ୟର ଲକ୍ଷଣ—

ଅଳଙ୍କାରିକମାନେ ମହାକାବ୍ୟର ଯେଉଁ ଲକ୍ଷଣ ନିର୍ଣ୍ଣୟ କରି-ଅଛନ୍ତି, ତାହା ସହିତ ମୌଳିକ ଭାବରେ ଦାଣ୍ଡି ରାମାୟଣର କୌଣସି ପାର୍ଥକ୍ୟ ନାହିଁ । ତଥାପି ଏଥିରେ କେତେକ ଉଲ୍ଲେଖଯୋଗ୍ୟ ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳେ । ଆରିଷ୍ଟୋଟଲ ଯେଉଁ ନାଟକୀୟ ସଂହତି ଉପରେ ଜୋର ଦେଇଛନ୍ତି, ତାହା ଦାଣ୍ଡି ରାମାୟଣରୁ ମିଳେ ନାହିଁ । ଅବଶ୍ୟ ମହାକାବ୍ୟର କବିମାନେ ଏ ବିଷୟରେ କେତେକ ପରିମାଣରେ ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରିଅଛନ୍ତି । କିନ୍ତୁ ଦାଣ୍ଡି ରାମାୟଣର କବି, ଏ ବିଷୟରେ ଏତେ ଅଧିକ ସ୍ୱାଧୀନ ଯେ, ତାଙ୍କୁ ଆରିଷ୍ଟୋଟଲଙ୍କ ଦୃଷ୍ଟିରୁ ମହାକବି କହି ହେବ ନାହିଁ । ଏହା ବ୍ୟତୀତ ଏଥିରେ ବହୁ ଉପଘଟଣାବଳୀପୂର୍ଣ୍ଣ ଗୋଟିଏ ଘଟଣା ନୁହେଁ, ବହୁ ସମାନ୍ତରାଳ ଘଟଣାର ସମାବେଶ ହୋଇଅଛି । ପ୍ରାଚୀନ ଭାରତୀୟ କଥାସାହିତ୍ୟ, ପୁରାଣ ଓ ଲୋକ କଥାରେ ଯେଉଁ କଥକତାର ଭଙ୍ଗୀ ଦେଖାଯାଏ, ଦାଣ୍ଡି ରାମାୟଣରେ ତାହାର ଅଭିବ୍ୟକ୍ତି ଦେଖିବାକୁ ମିଳେ । ସଂସ୍କୃତ ଅଳଙ୍କାରିକମାନଙ୍କ ଦୃଷ୍ଟିରୁ ଦେଖିଲେ ଦାଣ୍ଡି ରାମାୟଣ ସର୍ଗବଦ୍ଧ ରଚନା ନୁହେଁ । ରୁଦ୍ରଟ କାବ୍ୟଶାସ୍ତ୍ରର ଯେଉଁ ଭଳି ଭାବରେ "ଉତ୍ପାଦ୍ୟ" ବା କବିର ସ୍ୱତନ୍ତ୍ର ଉଦ୍ଭାବନ ହେବା କଥା କହିଛନ୍ତି, ଦାଣ୍ଡି ରାମାୟଣରେ ତାହା ଦେଖିବାକୁ ମିଳେ ନାହିଁ । ତେବେ ଏସବୁ ମହାକାବ୍ୟର ବହିରଙ୍ଗର କଥା । କିନ୍ତୁ ମହା-କାବ୍ୟର ପ୍ରକୃତ ମୂଲ୍ୟ, ତାର ଭାବବସ୍ତୁ ଓ ବର୍ଣ୍ଣନାର ପ୍ରାଣପ୍ରାଚୁର୍ଯ୍ୟ, ଆଦର୍ଶବୋଧର ବଳିଷ୍ଠତା ଉପରେ ନିର୍ଭର କରେ । ଏହି ଦୃଷ୍ଟିରେ ଦେଖିଲେ ଦାଣ୍ଡି ରାମାୟଣ ଏକ ସାର୍ଥକ ମହାକାବ୍ୟ । ତାର ସ୍ରଷ୍ଟା ମହାକବି ବଳରାମ ଦାସ ସେଥିରେ କୌଣସି ଅପସର୍ଜ୍ଜନାର ଚିହ୍ନ ରଖିଯାଇ ନାହାନ୍ତି । ଚରିତ୍ର ନିର୍ମାଣ, ରୂପସୃଷ୍ଟି, ପ୍ରକୃତି ବର୍ଣ୍ଣନା ସବୁ ଦୃଷ୍ଟିରୁ ଏହା ମହନୀୟ । ବୀର, ଶୃଙ୍ଗାର ଓ ଶାନ୍ତରସ ମଧ୍ୟରୁ ଏଥିରେ କବି ଶାନ୍ତରସକୁ ପ୍ରାଧାନ୍ୟ ଦେଇଛନ୍ତି । ସମଗ୍ର ମହାକାବ୍ୟରେ ସର୍ବପୂର୍ଣ୍ଣ ନାୟକର ଚରିତ୍ର ଚିତ୍ରିତ । ପୁଣି ନାୟକ ଭଳି, ପ୍ରତିନାୟକ ମଧ୍ୟ ବୀରତ୍ୱ ଓ ଶୌର୍ଯ୍ୟରେ ସମାନ ମହିମାନ୍ୱିତ । ଅସଂଖ୍ୟ ନଦନଦୀ, ନଗର ତୀର୍ଥ, ଅରଣ୍ୟ କାନ୍ତାର ବର୍ଣ୍ଣନାର ଅଭାବ ନାହିଁ । ଏଥିରେ ଗ୍ରୀଷ୍ମ ବର୍ଷା, ଶରତ ବସନ୍ତ ଆଦି ଋତୁଗୁଡ଼ିକର ବର୍ଣ୍ଣନା ଅନବଦ୍ୟ । ଶିକାର, ଯୁଦ୍ଧ, ବିବାହ,

ଜନ୍ମ ଓ ମୃତ୍ୟୁ ଭଳି ସାମାଜିକ ଘଟଣାଗୁଡ଼ିକର ବର୍ଣ୍ଣନା ଜୀବନ୍ତ । ପ୍ରେମ ଦ୍ୱେଷ, ମିଳନ ବିଚ୍ଛେଦ, ସୁଖ ଦୁଃଖ ଆଦିରେ ମାନବ ଜୀବନର ପ୍ରକାଶ ଏଥିରେ ଅତୁଳନୀୟ । ପୁଣି, ମହାକାବ୍ୟର ମୌଳିକ ଉଦ୍ଦେଶ୍ୟ—ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁର୍ବର୍ଗ ଫଳ ପ୍ରାପ୍ତିର ପ୍ରେରଣା, ଏହାର ପ୍ରତିଛତ୍ରରେ ପୂରି ରହିଛି । ଦାଣ୍ଡି ରାମାୟଣରେ ଯେଉଁ ଚରମ ଆଦର୍ଶ ପ୍ରତି ଇଙ୍ଗିତ ଦିଆଯାଇଅଛି—ତାହା ଦେଶ କାଳ ପାତ୍ର ନିର୍ବିଶେଷରେ ସମଗ୍ର ମାନବ ଜାତି ପ୍ରତି ଅଭିପ୍ରେତ । ସମସ୍ତ ପ୍ରକାର କୁପ୍ରବୃତ୍ତି ଓ ନୀଚତାରୁ ମାନବାତ୍ମାକୁ ମୁକ୍ତ କରି, ତାକୁ ଦେବତ୍ୱବାପନ୍ନ କରିବା ଏହାର ଲକ୍ଷ୍ୟ । ଏହି ଦୃଷ୍ଟିରେ ଦାଣ୍ଡି ରାମାୟଣ ଗୋଟିଏ ସମ୍ପୂର୍ଣ୍ଣ ମହାକାବ୍ୟ ।

## ଚରିତ୍ର ଚିତ୍ରଣ—

ମହନୀୟ ଚରିତ୍ର ନିର୍ମାଣ ମହାକାବ୍ୟର ଏକ ଶ୍ରେଷ୍ଠକଳା । ଦାଣ୍ଡି-ରାମାୟଣର ଚରିତ୍ର ଚିତ୍ରଣ ପ୍ରସଙ୍ଗରେ ପ୍ରଥମେ ମନେ ରଖିବାକୁ ହେବ—ଏହାର ଚରିତ୍ରଗୁଡ଼ିକ ସଂପୂର୍ଣ୍ଣ ରୂପେ ବଳରାମ ଦାସଙ୍କର ସୃଷ୍ଟି ନୁହନ୍ତି । ଲୋକ ପରମ୍ପରାରେ ତଥା ଭାରତୀୟ କାବ୍ୟଧାରାରେ ବହୁ ଶତ ବର୍ଷ ଧରି ଏଗୁଡ଼ିକ ସମୃଦ୍ଧ । ପୌରାଣିକ ଧର୍ମ ପରମ୍ପରା କ୍ରମେ ପ୍ରତ୍ୟେକ ଚରିତ୍ରରେ କୌଣସି ନା କୌଣସି ସ୍ତରରେ ଦେବତ୍ୱ ଆରୋପିତ । ଏଥିର ମୁଖ୍ୟ ଚରିତ୍ର ସ୍ୱୟଂ ରାମଚନ୍ଦ୍ର ସପ୍ତମ ଅବତାର ରୂପେ ଗୃହୀତ । ଋଷି ଅନୁଜ୍ଞାରେ ବାଲ୍ମୀକି କଥିତ ରାମ ଅବତାରର ଲୀଳା ଶ୍ରଦ୍ଧାରେ ବର୍ଣ୍ଣନା କରିଥିବା କଥା କବି ସୂଚନା ଦେଇଅଛନ୍ତି (୧) । ଏଥିରୁ ଅନୁମିତ ହେବା ସ୍ୱାଭାବିକ, ଦାଣ୍ଡି ରାମାୟଣର ନାୟକ ଚରିତ୍ରରେ ଅନ୍ତତଃ କୌଣସି ବାସ୍ତବତା ନ ଥିବ । ତାହା ଆଦର୍ଶଗ୍ରସ୍ତ ହୋଇଥିବ । କିନ୍ତୁ ପ୍ରକୃତରେ ଏହା ସତ ନୁହେ । ବଳରାମ ଦାସଙ୍କ ଧର୍ମ ସାଧନା ଓ ସମାଜ ସାଧନା ଆଦିରେ ଯେପରି ଶାସ୍ତ୍ର ଓ ଲୋକର ସମନ୍ୱୟ ବିଦ୍ୟମାନ ଚରିତ୍ର ଚିତ୍ରଣରେ ବି ସେହିପରି ଆଦର୍ଶ ଓ ବାସ୍ତବ

---

(୧) ଶ୍ରୀରାମ ଅବତାରେ ଯିସ ଯିସ କ୍ରୀଡ଼ା କଲେ ।
ତାହା ବାଲମୀକ ମୁନି ମୁଖେ କୁହାଇଲେ ।
ମୁହିଁ ତାହା ଯଛାରଇ ଶରଧା ନମନ୍ତେ ।
ତୁମ୍ଭେ ଆଜ୍ଞା ଦେଇ ଅଛ ଅନୁଗ୍ରହ ଚିତ୍ତେ । ଉତ୍ତର—ପୃ:୧୧୬

ଜ୍ଞାନ ଓ ଅନୁଭୂତି ସମଭାବରେ ସମାବିଷ୍ଟ । ଏଥିରେ ଧାର୍ମିକ ଦୃଷ୍ଟି ଉପରେ କାବ୍ୟିକ ଦୃଷ୍ଟି ପ୍ରତିଷ୍ଠିତ ହୋଇଅଛି । ଭକ୍ତ ଭାବରେ ହୁଏତ କବି ପ୍ରତ୍ୟେକ ଚରିତ୍ରକୁ ମାନବିକ ଦୋଷ ଦୁର୍ବଳତାରୁ ମୁକ୍ତ କରି ପାରିଥାନ୍ତେ । କିନ୍ତୁ ମାନବ ଜୀବନରୁ ଦୁର୍ବଳତାର ଦିଗଗୁଡ଼ିକୁ ସମ୍ପୂର୍ଣ୍ଣଭାବେ ଏଡ଼ି ଦେବା ବଳରାମ ଦାସଙ୍କର କବି ଦୃଷ୍ଟିରେ ସମ୍ଭବ ହୋଇନାହିଁ । ଦୁଃଖ, ଶୋକ, କ୍ରୋଧ,ମୋହ ଆଦି ମାନବ ଜୀବନର ସ୍ୱାଭାବିକ ଦୁର୍ବଳତା । ଏହାର ଭିତର ଦେଇ କବି ଚରିତ୍ରଗୁଡ଼ିକୁ ଜୀବନ୍ତ କରିଛନ୍ତି । ଏଥିଲାଗି ଚରିତ୍ରର ଆଦର୍ଶ ଦିଗକୁ ମଧ୍ୟ ବାଦ୍ ଦେଇ ନାହାନ୍ତି । ଆଦର୍ଶ ଓ ବାସ୍ତବର ମଧୁର ସମନ୍ୱୟରେ ତାଙ୍କର ନାୟକ ଚରିତ୍ର ସୃଷ୍ଟି । ମନେ ହୁଏ—ସେ ଯେପରି ଆମରି ଭିତରେ ଜଣେ । ଆମର ସୁଖ ଦୁଃଖରେ ଅଂଶ ନେବାଲାଗି, ଅପଥରେ ପଥ ଦେଖାଇବା ଲାଗି, ଅନ୍ଧକାରରେ ଦୀପ ଦେଖାଇବା ଲାଗି ସ୍ୱର୍ଗର ଆଶୀର୍ବାଦ ଯେପରି ଅବତରଣ କରିଅଛନ୍ତି ।

ଆଜି ମନସ୍ତାତ୍ତ୍ୱିକଗଣ ସ୍ଥିର କରିଛନ୍ତି, ମଣିଷ ମନର ଗତି ଖରସ୍ରୋତା ସ୍ରୋତସ୍ୱିନୀ ଭଳି ସବୁବେଳେ ବିଚିତ୍ର ଓ ବିଭିନ୍ନ । ଗୋଟିଏ ମୁହୂର୍ତ୍ତରେ ଅସୀମ ଧୀରତ୍ୱର ଉଦ୍ଦାହରେ ଯେ ଉତ୍ଫୁଲ୍ଲ ହୋଇ ଉଠେ, ପୁଣି ଆଉ ଏକ ମୁହୂର୍ତ୍ତରେ ଘୃଣ୍ୟ ଚିନ୍ତାରେ ସେ ମଳିନ ହୋଇ ପଡ଼େ (୧) । ଏହା ହିଁ ମନର ସ୍ୱଭାବ ଗତି । ଏକଥା ସତ, କବି ଦାଣ୍ଡି ରାମାୟଣର ନାୟକ ରାମଚନ୍ଦ୍ରଙ୍କୁ ଏକ ଆଦର୍ଶ ଚରିତ୍ର ରୂପେ ରୂପ ଦେବାକୁ ପ୍ରୟାସ କରି ଅଛନ୍ତି । ତଥାପି ତାଙ୍କ ମନରେ ବି ମାନବମନର ଏଇ ସ୍ୱଭାବ କ୍ରିୟା ପ୍ରତିଫଳିତ । ବୃଦ୍ଧ ପିତାଙ୍କ ଅନୁରୋଧ, ସ୍ନେହମୟୀ ଜନନୀ ପ୍ରାଣର ଆକୁଳ ଆକୂତି ଏଡ଼ାଇ ପିତୃସତ୍ୟ ପାଳନ ଲାଗି ରାମଚନ୍ଦ୍ର ଯେତେବେଳେ ବନବାସୀ ହୋଇଛନ୍ତି—ସେତେବେଳେ କବି ତାଙ୍କୁ ହିମାଳୟ ଭଳି ତୁଙ୍ଗ ଆଦର୍ଶର ପ୍ରତିମୂର୍ତ୍ତି ରୂପେ ଚିତ୍ର କରିଅଛନ୍ତି । କିନ୍ତୁ ଅଯୋଧ୍ୟାର ରାଜଭୋଗ ଛାଡ଼ି, ଅରଣ୍ୟରେ ପ୍ରବେଶ କରିବା ପରେ ତାଙ୍କର ମାନସିକ ସ୍ଥିତି ଏକା-ବେଳେକେ ବଦଳି ଯାଇଛି । ପ୍ରାଣସମା ପତ୍ନୀ ଓ ଭାଇର ଦୁଃଖରେ ସେ ବିଚଳିତ ହୋଇ ଆପଣା ପୌରୁଷକୁ ଧିକ୍କାର କରିଛନ୍ତି । କୁଟୁମ୍ବର ଭାର ଯେ ବୋହି ନ ପାରେ, ତାର ସଂସାରରେ ପ୍ରୟୋଜନ କଣ, ଏ ପ୍ରଶ୍ନ

(୧) Guide to modern thought—C. E. M. Joad.
Chap. IX. P. 223.

ରାମଙ୍କ ମନରେ ଉଠିଛି । ସେ ଭାବିଛନ୍ତି, ତାଙ୍କୁ ଏପରି ଜଣେ ଅମନୁଷ୍ୟ କରି ଜନ୍ମ ଦେବା ଅପେକ୍ଷା, ବିଧାତା ବୃକ୍ଷଟିଏ କରି ଜନ୍ମ ଦେଇଥିଲେ, ଭଲ ହୋଇଥାଆନ୍ତା । ଲୋକେ ତାର ଫଳ ଖାଇ ସନ୍ତୁଷ୍ଟ ହୋଇଥାନ୍ତେ (୧) ।

ମଣିଷ ଜୀବନ ଭଲ ମନ୍ଦ ଦୋଷ ଗୁଣ ଉଭୟ ସୂତ୍ରରେ ବନ୍ଧା । ଉତ୍ତରାକାଣ୍ଡରେ ଉଦ୍‌ଗ୍ରୀବ ପ୍ରତି ରାମଚନ୍ଦ୍ରଙ୍କ ଉକ୍ତିରେ କବି ଏହା ପ୍ରକାଶ କରିଛନ୍ତି (୨) । ଏଇ ବାସ୍ତବ ଦୃଷ୍ଟି ଲକ୍ଷ୍ମଣ ଭଳି ମହନୀୟ ଚରିତ୍ରରେ ବି ପ୍ରତିଫଳିତ । ଲକ୍ଷ୍ମଣ ଭ୍ରାତୃଭକ୍ତ, ଆଦର୍ଶ ବୀର, ସଂଯମୀ ଓ ଯୋଗୀ ହୋଇ ବି କ୍ରୋଧାନ୍ଧ । ରାମଚନ୍ଦ୍ରଙ୍କ ବନବାସ ଲାଗି ଦଶରଥ ସତ୍ୟ କରିଥିବା କଥା, ଯେତେବେଳେ ସେ ପ୍ରଥମେ ଶୁଣିଛନ୍ତି—ସେତେବେଳେ କ୍ରୋଧରେ ଅସ୍ଥିର ହୋଇ ପଡ଼ିଛନ୍ତି । ବୃଦ୍ଧ ରାଜା ଦଶରଥଙ୍କୁ, କୈକେୟୀ ବଶ କରିଛନ୍ତି ବୋଲି ଭର୍ତ୍ସନା କରି, ତାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହୋଇଛନ୍ତି । ଆଦିକବି ବାଲ୍ମୀକିଙ୍କ ଲକ୍ଷ୍ମଣର ଚିତ୍ର ମଧ୍ୟ ଏଠାରେ ଏଇଭଳି । ସେ କ୍ରୋଧରେ ବିଚଳିତ ହୋଇ କହୁଥିଲେ—"ହନିଷ୍ୟେ ପିତରଂ ବୃଦ୍ଧଂ କୈକେୟ୍ୟାସକ୍ତ ମାନସଂ" । ପୁଣି ବନରେ ପହଞ୍ଚି ରାମଚନ୍ଦ୍ର ଯେତେବେଳେ ଅଯୋଧ୍ୟାର ସୁଖ ଦୁଃଖ କଥା ଚିନ୍ତା କରିଛନ୍ତି, ସେତେବେଳେ ଲକ୍ଷ୍ମଣ କ୍ରୋଧରେ ଦ୍ୱିଗୁଣିତ ହୋଇ କହିଛନ୍ତି—"ଅଯୋଧ୍ୟାପୁର ନିଆଁରେ ପୋଡ଼ି ଯାଉ, ଦଶରଥ ଅପମୃତ୍ୟୁ ପାଆନ୍ତୁ, ଭରତ ଶତ୍ରୁଘ୍ନ ଧ୍ୱଂସ ହୁଅନ୍ତୁ, ସେଥିଲାଗି ଆମର ଭାବନା କାହିଁକି ?" (୩)

ସୀତାଙ୍କ ଚରିତ୍ରରେ ବି ଆଦର୍ଶ ଓ ବାସ୍ତବର ଅପୂର୍ବ ସମନ୍ୱୟ ଘଟିଛି । ଏକ ପକ୍ଷରେ ସେ ଯେପରି ପରମପୂଜ୍ୟା ଜଗତବନ୍ଦ୍ୟା ଲକ୍ଷ୍ମୀ, ଅନ୍ୟ ପକ୍ଷରେ ସେଇପରି ସାଧାରଣ ଗୃହବଧୂ । ଉତ୍ତରାକାଣ୍ଡରେ, ସୀତା ଗଙ୍ଗାକୂଳକୁ ଯାଇ ଋଷିମାନଙ୍କୁ ଫଳମୂଳ ଦାନ କରି ଆସିବାକୁ ଇଚ୍ଛା ପ୍ରକାଶ କରିବା ବେଳେ ତାଙ୍କୁ ସାତଶହ ସଗୃହ ଶାଶୁ ଭର୍ତ୍ସନା କରିଅଛନ୍ତି—ସୀତା ଅଲାଜୁକୀ,

---

(୧) ଅମନୁଷ୍ୟ କରି ମୋତେ ଧାତା ଜାତ କଲା ।
ମୋହର ପାଲଟେ କମା ବୃକ୍ଷେକ ନ କଲା । ଅଯୋଧ୍ୟା, ପୃ: ୫୨ ।

(୨) ଅବଶ୍ୟ ଦୋଷ କିଛି ଥାଇ ଗୁଣ ଥିଲେ ।
ମନ୍ଦ ନ ମଣଇ ମୁହିଁ ସ୍ୱରୂପ କହିଲେ । ଉତ୍ତରା, ପୃ: ୧୦୧ ।

(୩) ଅଯୋଧ୍ୟା, ପୃ. ୫୪ ।

ଗୁରୁଜନମାନଙ୍କର ଅବାଧ୍ୟା, ଅସ୍ମଗର୍ବଣୀ ଇତ୍ୟାଦି । ସବୁକଥା ସୀତା ନୀରବରେ ଶୁଣିଛନ୍ତି । ସହନଶୀଳା ଲଜ୍ଜାବତୀ ବଧୂଟି ଭଳି ପ୍ରତ୍ୟେ ପ୍ରତିବାଦମୂଳକ କଥା ଉଚ୍ଚାରଣ କରି ନାହାନ୍ତି । ସୀତାଙ୍କର ଏଭଳି ଚିତ୍ର ଦେବାକୁ ଯିବାବେଳେ କବିଙ୍କ ମନରେ ନିଶ୍ଚୟ "ଦେବୀ ଜାନକୀ" ନାହାନ୍ତି । ଏ ଚିତ୍ର କୌଣସି କବି-ମାନସୀ କୁଳବଧୂର । ଆଜି ବି ଓଡ଼ିଆ ଘରେ ସେ ଜୀବନ୍ତ ।

ତେତିଶକୋଟି ଦେବତାଙ୍କର ଶକ୍ତି ଯେଣୁ ଅମିତ ବିକ୍ରମ ହନୁମାନ ଜନ୍ମ ହୋଇଥିବାର କବି ବର୍ଣ୍ଣନା କରିଛନ୍ତି । ହନୁମାନର ଶୌର୍ଯ୍ୟ, ବିକ୍ରମ ଓ ଅପୌରୁଷେୟତା ବର୍ଣ୍ଣନାରେ ବଳରାମ ଦାସଙ୍କ ଲେଖନୀ ମୁଖର । ଅଥଚ ହନୁମାନକୁ ଗୋଟିଏ ସାଧାରଣ ମାଙ୍କଡ଼ ରୂପେ ଚିତ୍ରିବାରେ ସେ ତ୍ରୁଟି କରି ନାହାନ୍ତି । ଅଶୋକ ବନରେ ଇନ୍ଦ୍ରଜିତ ଯେଉଁ ଅବସ୍ଥାରେ ହନୁକୁ ଦେଖିଲେ—ସେଥିରେ ଏ ଚିତ୍ର ସ୍ପଷ୍ଟ ।

"ଦୁଇ ହାତକୁ ଲମ୍ବାଇ ଦେଇ ଗୋଡ଼ ଦୁଇ
ଜାଇଫଳ କଷିଲୁ ସେ ଗୋଟିଏ ଭକ୍ଷଇ
ଗଛର ବକଳମାନ ନଖେ ଉକୁଟାଇ ।
ଝଂକ ଝିକ କରି ତାକୁ ଦାନ୍ତରେ କୁଟାଇ
ମୁକୁ ଅଇଁଷିଣ ଯେ କାଢଇ ପୁଣି ପୁଣି
ହୁଁ ହୁଁ ଗରଜଇ ମୁଣ୍ଡଗୋଟି ଟେକୁଣି ।

ସୁନ୍ଦର, ପୃ ୪୧-୪୨ ।

ଓଡ଼ିଶାର ଗାଁ ଗହଳ ଓ ତାର ଲୋକଜୀବନ ସହିତ କବିଙ୍କର ସମ୍ପର୍କ କେତେ ନିବିଡ଼ ଥିଲା, ତାର ପରିଚୟ ମନ୍ଥରା, ଚରିତ୍ର ପ୍ରତି ଲକ୍ଷ୍ୟ କଲେ ଜଣାଯାଏ । ବଳରାମ ଦାସଙ୍କ ମନ୍ଥରା ଫକୀରମୋହନଙ୍କ ଚମ୍ପାରୁ ସ୍ମରଣ କରାଇ ଦିଏ । ମନ୍ଥରୀର ବର୍ଣ୍ଣନା ମନୋରମ ବ୍ୟଙ୍ଗ ରସରେ ରସାଣିତ । ମନ୍ଥରୀର ପାଟିରେ ପାନଖିଲ, ତାଲରେ ଚୂନ ହଳଦି ଓ ଆଖିରେ କଳା । ଏଇ ବେଶରେ ସେ ନଗ୍ର ବୁଲିବାକୁ ଯାଏ । ଗୁଲ୍‌ଗଲି ଲୋକଙ୍କୁ ଗାଳି ଦେଇ ଡାକେ । ଖେଳାଳି ପୁଅକୁ ଖୁସିରେ ମାରେ । ସବୁ ଅଡ଼େ ବିନା କାରଣରେ କଳି ଲଗାଇ ବସେ ।

କୌଣସି ଚରିତ୍ର ପ୍ରତି କବିଙ୍କର ସହାନୁଭୂତିର ଅଭାବ ନାହିଁ । ଏହା ତାଙ୍କ ଚରିତ୍ରଚିତ୍ରଣର ଆଉ ଗୋଟିଏ ଦିଗ । ପ୍ରତ୍ୟେକ ଚରିତ୍ରକୁ କବି କୌଣସି ନା କୌଣସି ପ୍ରକାରେ ମର୍ଯ୍ୟାଦା ଦେଇଅଛନ୍ତି । ଦୃଷ୍ଟାନ୍ତରେ ମନ୍ଥରୀ ଚରିତ୍ରକୁ ଦେଖିଲେ ଜଣା ପଡ଼େ, ବାଲ୍ମୀକି ତାକୁ "ସା ଦହ୍ୟମାନା କୋପେନ ମନ୍ଥରା ପାପ ଦର୍ଶିନୀ" ବୋଲି ବର୍ଣ୍ଣନା କରିଅଛନ୍ତି । କିନ୍ତୁ ବଳରାମ ଦାସ କୌଣସିଠାରେ ମନ୍ଥରା, କୈକେୟୀ ବା ଅନ୍ୟ କୌଣସି ଚରିତ୍ରକୁ ପାପାଚାର ଦୋଷରେ ଦୁଷ୍ଟ କରି ଅମର୍ଯ୍ୟାଦା ଦେଇ ନାହାନ୍ତି । ଦେବ କାର୍ଯ୍ୟ ପାଇଁ ମନ୍ଥରା କପଟ ଆଚରଣ କରିଛି । ଏଥିଲାଗି ତାକୁ ବ୍ରହ୍ମାଙ୍କ ମୁଖରେ ପୁଣ୍ୟବନ୍ତୀ ନାରୀ ବୋଲି କୁହାଇ ଅଛନ୍ତି ।

ଚରିତ୍ରଚିତ୍ରଣରେ ପ୍ରତ୍ୟକ୍ଷ ବା ବର୍ଣ୍ଣନାତ୍ମକ ଓ ଅପ୍ରତ୍ୟକ୍ଷ ବା ନାଟକୀୟ ଉଭୟ ଶୈଳୀ କବି ଗ୍ରହଣ କରିଅଛନ୍ତି । ତାହା ଛଡ଼ା, ଗୋଟିଏ ଗୋଟିଏ ଚରିତ୍ରର ଯାହା ମୁଖ୍ୟ ଗୁଣ, ତାହା ଗୋଟିଏ ଗୋଟିଏ ସ୍ଥଳରେ ନାଟକୀୟ ପରିବେଶ ଭିତରେ ଅଭିବ୍ୟକ୍ତ କରି, ଚରିତ୍ରଗୁଡ଼ିକର ଚରମରୂପ ( climax ) ସୁନ୍ଦର ଭାବରେ ଫୁଟାଇ ପାରିଛନ୍ତି । ଏହାର ଗୋଟିଏ ଦୃଷ୍ଟାନ୍ତ ଲକ୍ଷ୍ମଣ ଚରିତ୍ର ଚିତ୍ରରୁ ମିଳିବ । ଭ୍ରାତୃଭକ୍ତି ହିଁ ଲକ୍ଷ୍ମଣର ଶ୍ରେଷ୍ଠ ଗୁଣ । ଶକ୍ତିଭେଦ ପରେ ଲକ୍ଷ୍ମଣ ଅଚେତ ହୋଇ ପଡ଼ିଥିବା ବେଳେ, ରାମଚନ୍ଦ୍ର ଶୋକ ପ୍ରକାଶ କରି କହୁଛନ୍ତି—"ଭାଇମାନେ ଅର୍ଥ ଭାଗ ନିଅନ୍ତି । କିନ୍ତୁ ଭାଇ ଲକ୍ଷ୍ମଣ କଷ୍ଟ ଭାଗ ନେବ ବୋଲି ବଣକୁ ଆଇଲା" । କହିବା ବାହୁଲ୍ୟ, ଏହି ପଂକ୍ତିଟି ଭିତରେ ଭ୍ରାତୃଭକ୍ତ ଲକ୍ଷ୍ମଣର ସମୁଦାୟ ଚିତ୍ର, ଯେପରି ଫୁଟି ଉଠିଛି, ତାହା ଅନବଦ୍ୟ । ରାମଚନ୍ଦ୍ରଙ୍କ ଚରିତ୍ରର ଚରମରୂପ କବି ଏହିଭଳି ଗୋଟିଏ ସ୍ଥଳରେ ଫୁଟାଇ ଅଛନ୍ତି । ତାହା ଅତ୍ୟନ୍ତ ନାଟକୀୟ । ଲଙ୍କା ଯୁଦ୍ଧ ଶେଷରେ ସୀତାଙ୍କୁ ହାଦୋଳାରେ ବସାଇ ପହୁଆର କରି ରାମଚନ୍ଦ୍ରଙ୍କ ଠାକୁ ଘେନି ଆସୁଥିବା ବେଳେ, ରାମଚନ୍ଦ୍ର ତାହା ଜାଣି ପାରି, ସୁଗ୍ରୀବଙ୍କୁ ତତ୍‌କ୍ଷଣାତ୍ କହୁଛନ୍ତି—"ସୀତା କାହାକୁ ଲଜ୍ଜି ହାଦୋଳାରେ ଆସୁଛନ୍ତି ? ଋକ୍ଷ କପିଙ୍କୁ ମୋର ଭିତର ବାହାର ନାହିଁ । ସମସ୍ତଙ୍କ ଆଗରେ ସେ ଚାଲିଆସନ୍ତୁ" ଏହି ଗୋଟିଏ ପଂକ୍ତିରେ କବି ପ୍ରଭୁ ଭାବରେ ରାମଚନ୍ଦ୍ରଙ୍କ ମହତ୍ତ୍ୱ ଓ ସେବକ ଭାବରେ ଋକ୍ଷ କପିଙ୍କର ମର୍ଯ୍ୟାଦା ଯେପରି ଫୁଟାଇ ପାରିଛନ୍ତି—ତାହା ଅନବଦ୍ୟ ।

ଦାଣ୍ଡି ରାମାୟଣର ଚରିତ୍ର ସବୁର ବିଶେଷ ଆଲୋଚନା ଏଠାରେ ଉଦ୍ଦେଶ୍ୟ ନୁହେ । ତେବେ ବଳରାମ ଦାସଙ୍କର ଚରିତ୍ର ସୃଷ୍ଟି ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ—ଚରିତ୍ର ଚିତ୍ରଣରେ ଯେଉଁ ନାଟକୀୟତା, ମାନବ ପ୍ରକୃତିର ଅଧ୍ୟୟନ ଓ ଆଦର୍ଶର ପୁଷ୍ଟି, କବିଙ୍କୁ ମହାକବି ଆସନ ଦିଏ ଦାଣ୍ଡି ରାମାୟଣର କବି ସେ ସମସ୍ତର ଅଧିକାରୀ ।

**ଶୋକରସ—**

ଭାରତୀୟ ସୌନ୍ଦର୍ଯ୍ୟ ଶାସ୍ତ୍ରର କ୍ରମବିକାଶ ଆଲୋଚନା କଲାବେଳେ ଡା: ହରଦ୍ୱାରୀଲାଲ ଶର୍ମା ଯଥାର୍ଥ କହିଛନ୍ତି—"ସୌନ୍ଦର୍ଯ୍ୟରେ କରୁଣାକୁ ଉଚିତ ସ୍ଥାନ ଦେବା ସମୁଦାୟ ରାମାୟଣର ମହତ୍ତ୍ୱ" (୧) । ପୁଣି କୁହାଯାଇଛି, କ୍ରୌଞ୍ଚ ଦମ୍ପତିର ଭୋଗ ଭାଗ୍ୟ ସହି ନ ଥିଲା । ତମସାକୁ ସ୍ନାନ ଲାଗି ଯିବା ପଥରେ ବ୍ୟାଧ ଶରବିଦ୍ଧ କ୍ରୌଞ୍ଚ ଓ ସଦ୍ୟ ବିରହିଣୀ କ୍ରୌଞ୍ଚୀକୁ ଦେଖି ଆଦି କବିଙ୍କ ମନରେ ପ୍ରଥମେ ଶୋକ, ଶ୍ଳୋକରେ ରୂପାୟିତ ହୋଇଥିଲା । ଏହାର ଭିତରେ ସମୁଦାୟ ମାନବ ଜୀବନର ରହସ୍ୟ, ସେ ଉଦ୍‌ଘାଟନ କରିବାକୁ ପ୍ରେରଣା ପାଇଥିଲେ । ସମୁଦାୟ ରାମାୟଣକୁ ସେଥିଲାଗି ସେ କରୁଣାର ମହାକାବ୍ୟ ରୂପେ ରଚନା କରିଥିଲେ । ବାଲ୍ମୀକିଙ୍କର ଏହି ମହାକାବ୍ୟର 'ଶୋକ' ଭିତରେ କ୍ରନ୍ଦନର ସ୍ୱର ନାହିଁ । ରାମାୟଣର ପ୍ରତ୍ୟେକ ଆଦର୍ଶ ଚରିତ୍ର ସଂପୂର୍ଣ୍ଣ ଧୈର୍ଯ୍ୟର ସହିତ ନୈତିକ ଓ ଆଧ୍ୟାତ୍ମିକ ମାର୍ଗରେ ଅଟଳ ରହି, ନିୟତିର ସମ୍ମୁଖୀନ ହୋଇଛନ୍ତି । ସ୍ୱୟଂ ରାମଚନ୍ଦ୍ର ଏହାର ଶ୍ରେଷ୍ଠ ନିଦର୍ଶନ । ସୌନ୍ଦର୍ଯ୍ୟାନୁଭୂତିରେ କରୁଣା ବା ଶୋକର ସ୍ଥାନ କାଳେ କାଳେ ପ୍ରତିଷ୍ଠିତ । ଶୋକ ଆନନ୍ଦକୁ ଉଦାତ୍ତ କରେ । ଏ ଭଳି ଶୋକ ଚିତ୍ରଣରେ ଦାଣ୍ଡି ରାମାୟଣ ସମୃଦ୍ଧ । ତାର ପ୍ରତିଛନ୍ଦରେ ଶୋକର ସରଳ ସାବଲୀଳ ଓ ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ଘଟିଛି । କିନ୍ତୁ ଶୋକକୁ ବାଲ୍ମୀକି ଯେଉଁ ଧୈର୍ଯ୍ୟ, ଆଦର୍ଶ ଓ ପୌରୁଷ ଉପରେ ପ୍ରତିଷ୍ଠିତ କରିଅଛନ୍ତି, ତାହା ରକ୍ଷା କରିବା ବଳରାମ ଦାସଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ଗୋଟିଏ କଥାରେ କହିଲେ, ଭକ୍ତକବିଙ୍କ ଲୋକମୁଖୀନତାହିଁ ଏହାର ଏକମାତ୍ର କାରଣ । ବଳରାମ ଦାସଙ୍କ କୌଶଲ୍ୟା ଆଦର୍ଶ ରାଣୀ ନ ହୋଇ ପ୍ରଥମେ ସେ ସନ୍ତାନ ବତ୍ସଳା ଜନନୀ ।

(୧) ଭାରତୀୟ ସୌନ୍ଦର୍ଯ୍ୟ ଶାସ୍ତ୍ରର କ୍ରମବିକାଶ (ହିନ୍ଦୀ ପ୍ରବନ୍ଧ)—ଡା: ହରଦ୍ୱାରୀଲାଲ, ଅବେକ୍ଷେନୋ, ରାଜକମଳ ପ୍ରକାଶନ, ଦିଲ୍ଲୀ । ୬ଷ୍ଠ ଅଙ୍କ, ଏପ୍ରେଲ ୧୯୫୦

ଦଶରଥ ସତ୍ୟସନ୍ଧ, ଅଟଳ ପୌରୁଷଯୁକ୍ତ ରାଜା ନ ହୋଇ ପ୍ରଥମେ ସେ ପୁତ୍ରସ୍ନେହୀ ପିତା; ସୀତା ଲୋକବରେଣ୍ୟା ସ୍ୱାଧ୍ୱୀ ନ ହୋଇ, ପ୍ରଥମେ ସ୍ୱାମୀ ସୋହାଗିନୀ ନାରୀ, କୋମଳ ହୃଦୟା ଜନନୀ । ଏହାଦ୍ୱାରା କବି, ଏଇ ଚରିତ୍ରଗୁଡ଼ିକର ଆଦର୍ଶ ଦିଗକୁ କ୍ଷୁଣ୍ଣ କରି ନାହାନ୍ତି । ବରଂ ଆଦର୍ଶ ଓ ବାସ୍ତବ ଭିତରେ ସୀମାର ସନ୍ଧାନ ଦେଇଛନ୍ତି । ଆଦର୍ଶର ଉତ୍ତୁଙ୍ଗ ହିମାଳୟ ଉପରେ ଅବସ୍ଥାପିତ ଏଇ ଚରିତ୍ରଗୁଡ଼ିକୁ ସମଭୂମିକୁ ଆଣି ପାରିଛନ୍ତି । ସମାନ୍ତରାଳ ଦୃଷ୍ଟିରେ ସେମାନଙ୍କୁ ଦେଖିବାକୁ ଆମକୁ ସୁଯୋଗ ଦେଇଛନ୍ତି; ଆମର ନିକଟବର୍ତ୍ତୀ କରି ପାରିଛନ୍ତି । ଏ କଥା ବାଲ୍ମୀକି ଓ ବଳରାମ ଦାସଙ୍କର କୌଶଲ୍ୟାଙ୍କୁ ତୁଳନା କଲେ ସହଜରେ ବୁଝିହୁଏ । ବାଲ୍ମୀକିଙ୍କ ବର୍ଣ୍ଣନା ଅନୁସାରେ, କୌଶଲ୍ୟା ରାମଚନ୍ଦ୍ରଙ୍କ ଯୌବରାଜ୍ୟ ଲାଗି ମଙ୍ଗଳକାମନାରେ ଯାଗକୁଣ୍ଡରେ ଘୃତ ଦାନ କରୁଥିବାବେଳେ ରାମଚନ୍ଦ୍ରଙ୍କଠାରୁ ବନବାସ ସମ୍ବାଦ ଶୁଣିଛନ୍ତି । ତା'ପରେ ସେ ମୁହୂର୍ତ୍ତିକ ଲାଗି ବିଚଳିତ ହୋଇ ଉଠି ନାହାନ୍ତି । ଅଧୀରତାରେ ଭୂଲୁଣ୍ଠିତା ହୋଇ ନାହାନ୍ତି । କୁଣ୍ଡର ଅଗ୍ନି ଲିଭି ନାହିଁ । ପ୍ରାର୍ଥନାର ଉଦାତ୍ତ ସ୍ୱର କ୍ଷଣକ ଲାଗି କ୍ଷୀଣ ହୋଇ ଆସି ନାହିଁ । ପୁତ୍ରର ଯୌବରାଜ୍ୟ ଲାଗି ପ୍ରାର୍ଥନା, ବନବାସରୁ ଅକ୍ଷତ ଭାବରେ ଫେରି ଆସିବାର କାମନାରେ ପରିଣତ ହୋଇଅଛି । ସେ ପୁଣି ପ୍ରାର୍ଥନା କରିଛନ୍ତି—"ହେ ପୁତ୍ର ବଳିକୁ ପାତାଳ ଗୃପିବାରେ ବାମନ, ବୃତ୍ର ଯୁଦ୍ଧରେ ଇନ୍ଦ୍ର, ସ୍ୱର୍ଗର ଅମୃତ ଲାଭରେ ଗରୁଡ଼, ଯେଉଁଭଳି ସାଫଲ୍ୟ ଲାଭ କରିଛନ୍ତି, ତାହା ତୋର ଲାଭ ହେଉ । ପିତା ମାତାଙ୍କ ପ୍ରତି କର୍ତ୍ତବ୍ୟ ପାଳନ କରି ତୁ ଯେଉଁ ପୁଣ୍ୟ ଅର୍ଜିଛୁ, ତାହା ତୋତେ ସବୁ ପ୍ରକାର ବିପଦରୁ ରକ୍ଷା କରୁ । ଚଉଦ ବର୍ଷ ପରେ ପିତୃସତ୍ୟ ପାଳନ କରି, ସବୁ ପ୍ରକାର ଦୁଃଖ ଅତିକ୍ରମ କରି, ବିଜୟ ଦର୍ପରେ ପୁଣି ଅଯୋଧ୍ୟାର ରାଜଦାଣ୍ଡରେ ତୋତେ ଚାଲିବାର ଦେଖିବାକୁ ମୋର ଆୟୁଷ ହେଉ (୧) । ଏଠାରେ ନିଷ୍ଠାଯୁକ୍ତ ସତ୍ୟ ଓ ଆଦର୍ଶ ପ୍ରତି ଅବିଚଳିତ ରହି, କୌଶଲ୍ୟା ସନ୍ତାନବତ୍ସଳା ଜନନୀର ଦୁର୍ବଳତାର ବହୁ ଊର୍ଦ୍ଧ୍ୱକୁ ଉଠି ପାରିଅଛନ୍ତି । କିନ୍ତୁ ବଳରାମ ଦାସଙ୍କ କୌଶଲ୍ୟା ଜନନୀର ଦୁର୍ବଳତାରେ ଜୀବନ୍ତ । ସେ ରାମଚନ୍ଦ୍ରଙ୍କ ବନବାସ କଥା ଶୁଣି ଅଧୀର ଓ ବିଚଳିତା ହୋଇ ପଡ଼ିଛନ୍ତି । ପିତୃସତ୍ୟ ପାଳନ ଲାଗି, ରାମ-

(୧) Bengali Ramayan—D, C, Sen. p. 78 ଅବଲମ୍ବନରେ ।

ଚନ୍ଦ୍ରଙ୍କ ବନବାସକୁ ସେ କୌଣସି ପ୍ରକାରେ ସମର୍ଥନ କରିପାରିନାହାନ୍ତି । ଦଶରଥ ଦେବୀଙ୍କ ସନ୍ତାନ-ବାତ୍ସଲ୍ୟର ଦୃଷ୍ଟାନ୍ତ ଦେଇ କହୁଛନ୍ତି—ଯାହାର ପୁତ୍ର ତାକୁ କେବଳ ବ୍ୟଥା ଲାଗେ । ରାଜାର ଡୋଳେ ଛାଡ଼ ଅଛନ୍ତି ତନ ପୁଅ । ତୁ ମୋର ଏକା ପୁଅ, ଅନ୍ଧର ଲଉଡ଼ି । ତୁ ବଣକୁ ଯାଅ ନାହିଁ । ଏ ରାଜ୍ୟରେ ମୋର ପ୍ରୟୋଜନ ନାହିଁ । ମୁଁ ଅନ୍ୟ ରାଜ୍ୟକୁ ଯାଇ ପଛେ ଭିଖ ମାଗିବି – ତୁ ମୋ ବୋଲରେ ଅରଣ୍ୟକୁ ଯାଅ ନାହିଁ (୧) । ପୁଣି ପିତାଙ୍କଠାରୁ ରାମଚନ୍ଦ୍ର ଯେତେବେଳେ ବିଦାୟ ନେବାକୁ ଯାଉଛନ୍ତି, ସେତେବେଳେ ପୁତ୍ରସ୍ନେହ ହିଁ ସମଗ୍ର ଭାବରେ ଦଶରଥଙ୍କ ହୃଦୟକୁ ଅଧିକାର କରିଅଛି । ସେ ରାମଚନ୍ଦ୍ରଙ୍କୁ ବନକୁ ନ ଯିବାଲାଗି ଅନୁରୋଧ କରି କହୁଛନ୍ତି—"ସାବତ ଜନନୀ ବଇରୀ ସମାନ । ମୁଁ ସତ୍ୟ କଲେ ତୋର ସେଥିରେ କିଛି ଯାଏ ଆସେ ନାହିଁ । ଯାହାର ପାପପୁଣ୍ୟ ତାକୁ ଲାଗେ । ତୁ ବନକୁ ଯାଅ ନାହିଁ" । ଏଭଳି ସ୍ଥଳରେ ରାମଚନ୍ଦ୍ର ନିଜର ଚରିତ୍ରରେ ଯେ କେବଳ ଭାରସାମ୍ୟ ରକ୍ଷାକରି ପାରିଛନ୍ତି, ତାହା ନୁହେଁ, ସତ୍ୟପ୍ରତି ଅବିଚଳ ନିଷ୍ଠା ଦେଖାଇ ଆଦର୍ଶର ଉଚ୍ଚ ସୋପାନକୁ ଉଠିପାରି ଅଛନ୍ତି ।

କ୍ରୌଞ୍ଚ ଦମ୍ପତି ପ୍ରତି କରୁଣା-ବିଗଳିତ ନୟନରେ ବାଲ୍ମୀକି ଯେପରି ସମୁଦାୟ ମାନବ ଜୀବନର ରହସ୍ୟ ଉଦ୍‌ଘାଟନ କରିଥିଲେ, ଗୋଟିଏ ଗୋଟିଏ ମୃତ୍ୟୁଜନିତ ଶୋକରେ ବର୍ଣ୍ଣନାରେ କବି ବଳରାମ ଦାସ ସେଇପରି ସମୁଦାୟ ମାନବ ଜୀବନର ଗମ୍ଭୀର ସତ୍ୟପ୍ରତି ଇଙ୍ଗିତ କରିଅଛନ୍ତି । ପିତୃବିୟୋଗରେ ରାମଚନ୍ଦ୍ରଙ୍କ ଶୋକରେ ବଶିଷ୍ଠଙ୍କ ପ୍ରବୋଧ ବାକ୍ୟ ଓ ସୁଗ୍ରୀବଠାରୁ ସୀତାଙ୍କ ଅଳଙ୍କାର ପାଇ ରାମଚନ୍ଦ୍ରଙ୍କ ବିରହ ଶୋକରେ ସୁଗ୍ରୀବଙ୍କ ପ୍ରବୋଧ ବାକ୍ୟକୁ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଦିଆଯାଇପାରେ (୨) । ବଶିଷ୍ଠଙ୍କ ପ୍ରବୋଧ ବାକ୍ୟରେ ସଂସାର ଭିତରେ ସମୁଦାୟ ଜୀବନର ଗତି କିପରି ହେଉଅଛି, ଅନିତ୍ୟ ସଂସାର ଭିତରେ ମଣିଷ ସବୁବେଳେ ପୁରାତନକୁ ଛାଡ଼ି ନୂତନ ଆବରଣ ଆଶାରେ କିପରି ଧାବମାନ, ତାହା ଅଭିବ୍ୟକ୍ତ ହୋଇଛି । ସୀତାଙ୍କ ବିରହରେ ଶୋକାକୁଳିତ

(୧) ଅଯୋଧ୍ୟା, ପୃ: ୩୮ ।

(୨) ବଶିଷ୍ଠଙ୍କ ପ୍ରବୋଧ ବାକ୍ୟ—ଅଯୋଧ୍ୟା, ପୃ: ୮୬ ।

ସୁଗ୍ରୀବଙ୍କ ପ୍ରବୋଧବାକ୍ୟ କିଷ୍କିନ୍ଧ୍ୟା, ପୃ: ୧୪ ।

ରାମଚନ୍ଦ୍ରଙ୍କୁ ସୁଗ୍ରୀବଙ୍କ ପ୍ରବୋଧ ବାକ୍ୟ ପ୍ରସଙ୍ଗରେ ସଂସାରରେ ଆତ୍ମପ୍ରତିଷ୍ଠା ଲାଗି ପୁରୁଷ ପକ୍ଷରେ ଅସ୍ତ୍ରଶକ୍ତି, ଶରୀର ସାମର୍ଥ୍ୟ ଓ ଅର୍ଥଶକ୍ତି କେବଳ ପ୍ରୟୋଜନ, ତାହା ନିର୍ଦ୍ଦେଶିତ କରିଅଛନ୍ତି ।

ପୁତ୍ର ଅଭାବରେ ଜନନୀର ବେଦନା, ଭାଇର ଅଭାବରେ ଭାଇର ଦୁଃଖ, ପ୍ରିୟଜନର ଅଭାବରେ ପ୍ରିୟଜନର ହୃଦୟପୀଡ଼ା ଭଳି, ଜୀବନର ବିଭିନ୍ନ କ୍ଷେତ୍ରରେ ମଣିଷ ମନର କରୁଣ ଅବସ୍ଥା, ସଙ୍ଗତ ପରିବେଶ ଭିତରେ ବଳରାମ ଦାସ ବହୁ ସ୍ଥଳରେ ବର୍ଣ୍ଣନା କରିଅଛନ୍ତି । ଏ ସବୁ ବର୍ଣ୍ଣନାରେ କବିଙ୍କର ମହତ୍ତ୍ୱ ଏଠାରେ ଦୃଷ୍ଟାନ୍ତ ସହ ନେଇ କହିବା ସମ୍ଭବ ନୁହେଁ । ଏଠାରେ କେବଳ ବନବାସିନୀ ସୀତାଙ୍କର ଶୋକ ପ୍ରସଙ୍ଗ ଉଲ୍ଲେଖ କଲେ ଯଥେଷ୍ଟ ହେବ । ପ୍ରାଚୀନ ଓ ଅଧୁନିକ ଓଡ଼ିଆ ସାହିତ୍ୟରେ ସୀତା ବନବାସ ଗୋଟିଏ ବଡ଼ ସ୍ଥାନ ଅଧିକାର କରି ଆସିଅଛି । ଏ ମହତ୍ତ୍ୱର ମୂଳ ଉତ୍ସ ଭକ୍ତକବି ବଳରାମ ଦାସଙ୍କର ଅବଦାନ ବୋଲି ମନେ ହୁଏ । ସୀତା ପୁଣ୍ୟ ଅର୍ଜନ ପାଇଁ ଫଳମୂଳ ଦାନ କରିବା ଲାଗି ଋଷିଆଶ୍ରମକୁ ଆସିବା କଥା ଜାଣିଥିଲେ । ବାଲ୍ମୀକି ଆଶ୍ରମର ଅଦୂରବର୍ତ୍ତୀ ଅରଣ୍ୟରେ, ଲୋକ ଅପବାଦ ହେତୁ ତାଙ୍କୁ ରାମଚନ୍ଦ୍ର ନିର୍ବାସନ ଦଣ୍ଡ ଦେଇଥିବା କଥା ଲକ୍ଷ୍ମଣ ପ୍ରକାଶ କରିଛନ୍ତି । ଏଇ ସମୟରେ ଲକ୍ଷ୍ମଣ ଓ ସୀତାଙ୍କର ମାନସିକ ଅବସ୍ଥା ଅତ୍ୟନ୍ତ ନାଟକୀୟ ଭାବରେ କବି ବର୍ଣ୍ଣନା କରିଛନ୍ତି । ସୀତାଙ୍କୁ ଏଇ ଦାରୁଣ ସମ୍ବାଦ ଦେବାକୁ ଯିବା ବେଳେ, ଯୁଗପତ୍ ଶୋକ ଓ ଭୟରେ ଲକ୍ଷ୍ମଣଙ୍କ ଶରୀର ପ୍ରକମ୍ପିତ ହୋଇଛି (୧) । ଏ ଦାରୁଣ ସମ୍ବାଦ ଦେଇ ସାରି, ସୀତାଙ୍କୁ ପ୍ରବୋଧ ଦେଇ ଲକ୍ଷ୍ମଣ କହିଛନ୍ତି—ମହତ ଜନଙ୍କ ଲାଗି ବିଧାତା ସୁଖ ଓ ଦୁଃଖ ଉଭୟ ଭିତରୁ ଦୁଃଖ ହିଁ ଅଧିକ ଦେଇଥାଆନ୍ତି । ଯେଉଁମାନେ ଧର୍ମରେ ଥାଆନ୍ତି ସେମାନଙ୍କୁ ବରଂ ବିଧାତା ଅଧିକ କଷ୍ଟ

(୧) ଜ୍ୱର ନାହିଁ ଦେହ ଥରଥର କମ୍ପି,
ଲୋଚନ ଜଳ ପିଞ୍ଛିବା ନ ଥାଙ୍କି ।
ଭୟଭାବ ଶୋକ ବୋଲଇ ଗୋ ମାଏ
ଶୁଣ ଏକ ମନେ କହଇ କଥାଏ ।

ଉତ୍ତର କାଣ୍ଡ

ଦେଇଥାଆନ୍ତି (୧)। ଏ ସମ୍ବାଦ ଶୁଣି ସାରିବା ପରେ ସୀତାଙ୍କ ଅବସ୍ଥାର ଯେଉଁ ବର୍ଣ୍ଣନା କବି ଦେଇଛନ୍ତି, ତାହା ପାଠମାନେ ପାଠକର ହୃଦୟ କରୁଣରସରେ ଅପ୍ଳୁତ ହୁଏ।

ଶୁଣିଣ ଜାନକୀର ଯେ ଶରୀର ଚମକିଲା
ହସ୍ତରେ କଙ୍କଣ ମୁଦ୍ରିକାମାନ ଯେତେକ ଥିଲା।
ଅକାରଣେ ଶରୀରୁ ଝୁଣ୍ଟୁଳି ପଡ଼ିଲେ
ଦେଖି ଲକ୍ଷ୍ମଣ ଆଶ୍ଚର୍ଯ୍ୟ ହୋଇଲେ।
ଶୁଦ୍ଧ ସୁବର୍ଣ୍ଣର ଦେହ ହୋଇଲାକ କଳା
ଅସ୍ଥିର ହୋଇଣ ଯେ ଚମକିଲ ଅବଳା।
ଯମର ଘରକୁ କି ଗଲା ତାହାଙ୍କର ପ୍ରାଣ
ଚେତ ପୁଣି ଉଠି ବସାଇଲେ ଲକ୍ଷ୍ମଣ।
କ୍ଷିତିରେ କର ଦେଇ ଅସଂଖ୍ୟ ଶୋକ କଲେ
ହେ ଶ୍ରୀରାମ ମୋତେ ଛାଡ଼ିଲ ହୋଇଲେ।

ଏହି ଶୋକ ମୁହୂର୍ତ୍ତରେ ସୀତା ତାଙ୍କର 'କର୍ତ୍ତବ୍ୟ ଜ୍ଞାନରୁ ଆଦୌ ବିଚଳିତ ହୋଇ ନାହାନ୍ତି। ବରଂ ଏହି ମର୍ମବିଦାରକ କ୍ରନ୍ଦନ ଭିତରେ ତାଙ୍କ ଅନ୍ତରର ସମୁଦାୟ ମହତ୍ତ୍ୱ ଫୁଟି ଉଠିଅଛି। ଏକାଧାରରେ ରାଜରାଣୀ, ଗୃହିଣୀ, ଜନନୀ ଓ ମହୀୟସୀ ନାରୀ ରୂପେ ସୀତାଙ୍କ ପରିଚୟ, ସବୁ ଦେଶ ସବୁ କାଳରେ ନାରୀତ୍ୱର ଶ୍ରେଷ୍ଠ ପରିଚୟ ରୂପେ ଅଭିବ୍ୟକ୍ତ ହୋଇଛି। ପ୍ରଥମେ ଗୁରୁଜନ ଶାଶୁମାନଙ୍କଠାରୁ ଆଶୀର୍ବାଦ ପାଇଁ ଅଭିଳାଷ ପ୍ରକାଶ କରି, ତାଙ୍କ ଦୋଷମାନ କ୍ଷମା ମାଗିବାକୁ ଲକ୍ଷ୍ମଣଙ୍କୁ ଅନୁରୋଧ କରିଛନ୍ତି। ତାହା ପରେ ରାଣୀ ରୂପେ ନିଜର କର୍ତ୍ତବ୍ୟ ସ୍ମରଣ କରି, ସୁଖରେ ରାଜ୍ୟ ପାଳିବାକୁ ରାମଚନ୍ଦ୍ରଙ୍କୁ ପରାମର୍ଶ ଦେଇଛନ୍ତି। ଆଦର୍ଶ ପତ୍ନୀରୂପେ ନିଜ ବନବାସ ପାଇଁ ସ୍ୱାମୀଙ୍କ ଉପରେ କୌଣସି ଅଭିଯୋଗ ପୋଷଣ କରି ନାହାନ୍ତି। ଅଧିକନ୍ତୁ ତାଙ୍କ ଲାଗି କୌଣସି ପ୍ରକାରେ ଚିନ୍ତିତ ନ ହୋଇ, ଲକ୍ଷ୍ମଣ ଭଲ ଭାଇ-

(୧) ମହତ ଜନଙ୍କୁ ଦୁଃଖ ସୁଖ ଥାଇ
ମହତଙ୍କ କର୍ମ ଗୋ କହଣା ନଯାଇ।
ଧର୍ମେଣ କପଣ କରଇ ବିଧାତା
ଧର୍ମେ ଆଶ୍ରେ କର ରହୁଥାଅ ସୀତା।

ଉତ୍ତର କାଣ୍ଡ।

ମାନଙ୍କର ସେବା ଗ୍ରହଣ କରି ସୁସ୍ଥ ଶରୀରରେ ରାମଚନ୍ଦ୍ର କିପରି କାଳାତିପାତ କରିବେ, ସେଥିଲାଗି ଉଦ୍‌ବେଗ ପ୍ରକାଶ କରୁଛନ୍ତି । ଶୀଘ୍ର ଯାଇ ରାମଚନ୍ଦ୍ରଙ୍କୁ ସାନ୍ତ୍ୱନା ଦେବା ଲାଗି ଲକ୍ଷ୍ମଣଙ୍କୁ ଅନୁରୋଧ କରୁଛନ୍ତି । ସ୍ୱସତ୍ତ୍ୱା ସୀତା ଜନନୀ ରୂପେ ନିଜର ଭାବୀ ସନ୍ତାନମାନଙ୍କର ମଙ୍ଗଳ କାମନା କରିବାକୁ ମଧ୍ୟ ଭୁଲି ନାହାନ୍ତି । ସେମାନଙ୍କ ଭବିଷ୍ୟତ ଯେପରି କଣ୍ଟକିତ ନ ହୁଏ, ସେ କଥା ବାଲ୍ମୀକିଙ୍କୁ ପରାମର୍ଶ କରିବାକୁ ଲକ୍ଷ୍ମଣଙ୍କୁ ଅନୁରୋଧ କରୁଛନ୍ତି । ଏହାପରେ ଗୃହିଣୀ ଭାବରେ କର୍ତ୍ତବ୍ୟ ମନେ ପଡ଼ୁଛି । ସୀତାଙ୍କର ସବୁଠାରୁ ପ୍ରିୟଜନ ହୋଇଛନ୍ତି ନିଜର ତିନି ଭଉଣୀ ଓ ପ୍ରାସାଦର ଦାସୀମାନେ । ବିଶେଷତଃ ଦାସୀମାନଙ୍କୁ ସେ ପର ବୋଲି ନ ଭାବି, ଆପଣାର କରି ଦେଇ ଥାଆନ୍ତି । ସେମାନଙ୍କର ଯେପରି କୌଣସି ଦୁଃଖ ନ ହୁଏ, ଅଭାବ ନ ଘଟେ, ସୀତାଙ୍କ ବିଚ୍ଛେଦକୁ ପାଶୋରି ସୁଖରେ ରହନ୍ତି, ତାହାର ବ୍ୟବସ୍ଥା କରିବାକୁ ଲକ୍ଷ୍ମଣଙ୍କୁ କହୁଛନ୍ତି । ଗୋଟିଏ କଥାରେ କହିଲେ, ଅରଣ୍ୟ ଭିତରେ ଏକାକିନୀ ପରିତ୍ୟକ୍ତା ବନବାସିନୀ ସୀତାଙ୍କର ଶୋକାଗ୍ନି ଭିତରେ ନାରୀତ୍ୱର ଶୁଦ୍ଧ ସୁବର୍ଣ୍ଣ ରୂପ ଝଟକି ଉଠିଛି । ଏ ଦୀପ୍ତି କେବେ ମଳିନ ହେବାର ନୁହେ ।

ଏଇଭଳି ଭାବରେ ଦେଖିଲେ, ଶୋକଚିତ୍ର ଅଙ୍କିବାରେ ବଳରାମ ଦାସ କିପରି ନିପୁଣ ଥିଲେ, ତାହା ବେଶ ହୃଦୟଙ୍ଗମ କରି ହୁଏ । ଶିଳାର ଘର୍ଷଣରେ ଚନ୍ଦନ ଭଳି, ତାଙ୍କ ଚରିତ୍ରଗୁଡ଼ିକର ସମସ୍ତ ମହତ୍ତ୍ୱ ଓ ସୌରଭ ଶୋକସଂଘାତରେ ଫୁଟି ଉଠିଛି ।

ପ୍ରକୃତି —

ମାନବ ଜୀବନ ଭଳି ପ୍ରକୃତି ମଧ୍ୟ କାବ୍ୟର ଏକ ବିଶେଷ ଅଙ୍ଗ । ନାନା ଭାବରେ ଏହା କବି ଚିତ୍ତକୁ ଉଦ୍‌ବୁଦ୍ଧ କରେ । ପ୍ରକୃତିର ଅପରୂପ ଶୋଭା ଦେଖି କବି କେତେବେଳେ ସହଜ ଓ ସ୍ୱତଃସ୍ଫୂର୍ତ୍ତି ଆନନ୍ଦ ଉପଭୋଗ କରେ । ପୁଣି କେତେବେଳେ ପ୍ରକୃତିର ସ୍ୱଭାବସୁନ୍ଦର କ୍ରିୟା ଭିତରେ କବି ବିଶିଷ୍ଟ ଦର୍ଶନର ଉତ୍ସ ଖୋଜି ପାଏ । ଅନ୍ୟ କଥାରେ କହିଲେ, ଜଡ଼ ପ୍ରକୃତି ସମୟରେ ଆପଣା ମୋହନ ମୂର୍ତ୍ତିରେ ପ୍ରତିଭାତ ହୁଏ, କେତେବେଳେ ସେ ମାନବାୟିତ ହୋଇ ଉଠେ, ପୁଣି କେତେବେଳେ ବିଶିଷ୍ଟ ଦର୍ଶନର ପରିବାହକ ରୂପେ ଆଦର୍ଶ ଗ୍ରସ୍ତ ହୋଇପଡ଼େ । ପ୍ରାଚୀନ ସଂସ୍କୃତ ସାହିତ୍ୟରେ

ପ୍ରକୃତିଚିତ୍ରଣର ଏଇ ବିଶିଷ୍ଟ ଦୃଷ୍ଟିକୋଣମାନ ଫୁଟିଥିବାର ଦେଖାଯାଏ (୧)। କାଳିଦାସଙ୍କ ବର୍ଣ୍ଣନାରେ ପ୍ରକୃତି-ଜଗତ ମାନବିକ-ଜଗତର ଅନୁରୂପ। ତାଙ୍କର ଋତୁ-ଚିତ୍ର ଜୀବନ୍ତ। ମଣିଷ ମନର ଆଶା ଆକାଂକ୍ଷା, ବେଦନା ଦରଦ, ସୁଖ ପ୍ରୀତିର ଜୀବନ୍ତ ପ୍ରକାଶରେ ତାଙ୍କ ପ୍ରକୃତି ପ୍ରାଣୋଜ୍ଜ୍ୱଳ। କିନ୍ତୁ ବାଲ୍ମୀକି ପ୍ରକୃତିର ବାସ୍ତବ ଦିଗକୁ ବେଶୀ ଦୃଷ୍ଟି ଦେଇଛନ୍ତି। ପ୍ରକୃତିର ଦୃଶ୍ୟ ସହିତ, ମଣିଷ ମନର ସ୍ମୃତିମାନ ବର୍ଣ୍ଣନା କରିବାରେ ସେ ନିପୁଣ। ବାଲ୍ମୀକିଙ୍କ ବର୍ଷାଧାରି ଲଙ୍କାପୁରରେ ବିରହିଣୀ ସୀତାଙ୍କ ଶୋକାଶ୍ରୁ ମୁଞ୍ଜନର ଚିତ୍ର ରାମଚନ୍ଦ୍ରଙ୍କ ଆଖି ଆଗକୁ ଉଠାଇ ଆଣେ। କୃଷ୍ଣମେଘ ଦେହରେ ବିଜୁଳି ଦେଖି ରାବଣ କୋଡ଼ରେ ଶଯ୍ୟାନା ସୀତାଙ୍କର ଚିତ୍ର ରାମଚନ୍ଦ୍ରଙ୍କ ଆଖିରେ ଫୁଟି ଉଠିଛି। ପ୍ରକୃତି ଚିତ୍ରଣର ଏହି ସମସ୍ତ ପରମ୍ପରାର ବଳରାମ ଦାସ ଉପଯୁକ୍ତ ଅଧିକାରୀ। ନଦ ନଦୀ, ଅରଣ୍ୟ କାନ୍ତାର, ବିଭିନ୍ନ ଋତୁ, ନଗର, ଉପବନ ଆଦି ବର୍ଣ୍ଣନା କରିବାରେ ତାଙ୍କର ଲେଖନୀ ସର୍ବଦା ନିପୁଣ।

ଦାଣ୍ଡି ରାମାୟଣରେ ପ୍ରକୃତି ବର୍ଣ୍ଣନା ଏକାନ୍ତ ଚିତ୍ରଧର୍ମୀ, ପ୍ରାଞ୍ଜଳ ଓ ବାସ୍ତବ। କାମମୋହିନୀ ଆଦି ବେଶ୍ୟାମାନଙ୍କର ନଦୀପଥରେ ଅରଣ୍ୟ-କାନ୍ତାର ମଧ୍ୟ ଦେଇ ଋଷ୍ୟଶୃଙ୍ଗଙ୍କ ଆଶ୍ରମକୁ ଯିବାର ବର୍ଣ୍ଣନା ଏହିଭଳି ବହୁ ଦୃଷ୍ଟାନ୍ତ ମଧ୍ୟରୁ ଗୋଟିଏ। ମୂଳ ବାଲ୍ମୀକି ରାମାୟଣରେ ଏଭଳି ଯିବାର କୌଣସି ବର୍ଣ୍ଣନା ନାହିଁ। ପୁଣି ନଦୀପଥରେ ନୌକାରେ ବେଶ୍ୟାମାନେ ଯାତ୍ରା କରିଥିବା କଥା ବଳରାମ ଦାସଙ୍କର ନିଜସ୍ୱ କଳ୍ପନା। ଏହି ନୌକା-ଟିକୁ ଗୋଟିଏ ଉପବନ ରୂପେ ସେ ବର୍ଣ୍ଣନା କରିଛନ୍ତି। ଏହା ଭିତରେ ଫୁଲଫଳର ସମସ୍ତ ବୃକ୍ଷ ରୋପିତ ହୋଇଛି। ନାବ ଭିତରେ ମଧ୍ୟ ସୁନ୍ଦର ପୁର ସବୁ ରଚନା କରାହୋଇଛି। ପାଞ୍ଚଗୋଟି ନାବର ମେଳା ଏକତ୍ର ଯାତ୍ରା ଆରମ୍ଭ କରିଛି। ଦୁଇକୂଳର ନିବିଡ଼ ଅରଣ୍ୟ ଭୂମି ଭିତରେ ଜଙ୍ଗାଳି ଦାଗରେ କୈବର୍ତ୍ତମାନେ ଧୀରେ ଧୀରେ ନାବ ବାହି ନେଇଛନ୍ତି। ଅରଣ୍ୟ ଭିତରେ ନାବ ବାହି ଗଲାବେଳେ ସେମାନେ ଦେଖିଥିବା ବନ୍ୟ ଜନ୍ତୁମାନ-ଙ୍କର ବଳରାମ ଦାସ ବିଶଦ ବର୍ଣ୍ଣନା କରିଅଛନ୍ତି। ମଦମତ୍ତ ହାତୀ, ବାଘ,

(୧) History of Sanskrit literature (Classical period) Introduction—S.N. Dasgupta-p. CXXVI.ର Nature in Sanskrit poetry ଶୀର୍ଷକ ଆଲୋଚନା ଦ୍ରଷ୍ଟବ୍ୟ )

ମୃଗ, ଗୟଳ ଆଦିଙ୍କ ବିହାର ଓ କ୍ରୀଡ଼ାର ବର୍ଣ୍ଣନା ମନୋରମ। ନୌକା ଦେଖିବାରେ, ଏଇ ବନ୍ୟଜନ୍ତୁମାନଙ୍କର ପ୍ରତିକ୍ରିୟା କବିଙ୍କ ଲେଖନୀରେ ଜୀବନ୍ତ ଅଭିବ୍ୟକ୍ତ ଲଭିଛି ।

କେତୁଣ ଜୀବମାନେ ନଦୀକୂଳେ ଥାନ୍ତି
ନାବ ଚଳିଯିବାର ସେ ଗୃହାନ୍ତି ପଳା ଯାନ୍ତି ।
ପ୍ରାକର୍ମ କରଣ ସେ ହୁଅନ୍ତି ଅଗୁସାର
କେହୁ ଭୟ କରଣ ସେ ପଶନ୍ତି ଲତାର ।
ଟେକ ପଛକୁ ଗୃହିଁ ଅଡ଼ ହୋଇ ଯାନ୍ତି
ଥୋକାଏ ଦୂରେ ଥାଇ ଲେଉଟି ଗୃହାନ୍ତି ।

( ଅଯୋଧ୍ୟାକାଣ୍ଡ, ପୃ: ୧୯ )

ବଳରାମ ଦାସ ଭିନ୍ନ ଭିନ୍ନ ସ୍ଥାନରେ, ଭିନ୍ନ ଭିନ୍ନ ଋତୁମାନଙ୍କର ବର୍ଣ୍ଣନା ଦେଇଛନ୍ତି। ଏଥିମଧ୍ୟରୁ ପମ୍ପା ସରୋବରରେ ବସନ୍ତ ବର୍ଣ୍ଣନା (ଅରଣ୍ୟକ କାଣ୍ଡ, ପୃ: ୫୩ ), ମାଲ୍ୟବନ୍ତରେ ବର୍ଷା (କିଷ୍କିନ୍ଧ୍ୟା, ପୃ: ୪୩ ) ଓ ଶରତ ବର୍ଣ୍ଣନା (କିଷ୍କିନ୍ଧ୍ୟା, ପୃ: ୫୨) ଉଲ୍ଲେଖଯୋଗ୍ୟ। ଏହି ବର୍ଣ୍ଣନା ନିରାଡ଼ମ୍ବର, ସରଳ ଓ ବାସ୍ତବ। ଏଥିମଧ୍ୟରେ ବର୍ଷାଋତୁ ବର୍ଣ୍ଣନା ଅଧିକ ରସଦ।

ଗ୍ରୀଷମ ଋତୁ ଶେଷ ହୋଇଲାକ ଯହୁଁ
ଆକାଶେ ମେଘମାଳ ପ୍ରକାଶିଲେ ତହୁଁ ।
ଘଡ଼ ଘଡ଼ କରଣ ସେ ବିଜୁଳି ମାରନ୍ତି
ଭୟଙ୍କର ହୋଇଣ ସେ ଗର୍ଜନ କରନ୍ତି ।
ପୂର୍ବ ଦିଗ ମେଘ ସେ ପଶ୍ଚିମ ଦିଗେ ଯାଇ
ମନ୍ଦ ମନ୍ଦ ହୋଇଣ ସେ ପବନ ବହଇ ।
ଇନ୍ଦ୍ରଧନୁ ଉଦୟ ସେ ହୁଅଇ ଗଗନ
ଅସ୍ତକାଳେ ଆଦିତ୍ୟ ଦିଶଇ ରଙ୍ଗବର୍ଣ୍ଣ ।
କ୍ଷଣକେ ଗ୍ରୀଷମ ଶେଷ କ୍ଷଣକେ କରେ ଶୀତ
କେତେବେଳେ ମେଘରେ ସେ ନ ଦିଶେ ଆଦିତ୍ୟ
ସମୁଦ୍ର ଗର୍ଜ୍ଜନ କରଇ ଭୟଙ୍କର
ତାରାଗଣ ଅଳପ ହୋଇ ଦିଶନ୍ତି ଆକାଶର ।

ଚନ୍ଦ୍ରମଣ୍ଡଳ ଦୂର ହୋଇ ଦଶେ
ବାହାର ଭିତର ସେ ଦୂର ହୋଇ ମିଶେ ।
ନିର୍ମଳ ଗଗନରେ କ୍ଷଣକେ ମେଘ ନେଇ
କ୍ଷଣକରେ ବରଷା ସେ କ୍ଷଣକେ ଖରା ହୋଇ ।
ଅଷାଢ଼ ପ୍ରବେଶ ଯେ ହୋଇଲାକ ଯହୁଁ
ଝିମି ଝିମି କରଣ ସେ ବରଷିଲ ତହୁଁ ।
ବିଜୁଳୀ ଦେଖାଇଣ ମାରଇ ଘଡ଼ଘଡ଼
କଦାଣି ପର୍ବତରୁ ପାଷାଣ ପଡ଼େ ଝଡ଼ ।
ନାନା ପକ୍ଷୀମାନେ ସେ ଯେ ଭିଆଇଲେ ବସା
ଯହୁଁ ପ୍ରବେଶ ହୋଇଲା ଦୁର୍ଗମ ବରଷା ।
ବୃକ୍ଷେ ପଲ୍ଲବନ୍ତ ଯେ ଲତାହୁଁ ପଲ୍ଲବଲେ
ମୟୂରମାନେ ଦେଖି ଉନ୍ମତ୍ତ ହେଲେ ।
ଭୟ ଛାଡ଼ି ମୃଗମାନେ ବୁଲନ୍ତି ଏଣେ ତେଣେ
ମଉନ ହୋଇଲେ ଯେ କୋକିଳ ପକ୍ଷିଗଣେ ।
କଦମ୍ବ ବୃକ୍ଷମାନେ ପୁଷ୍ପବନ୍ତ ହେଲେ
ଜମ୍ବୁଫଳ ପାଚିଣ ସେ ଭୂମିରେ ପଡ଼ିଲେ ।

× × × ×

ଏଥୁଅନ୍ତେ ହୋଇଲା ଯେ ଶ୍ରାବଣ ପରବେଶ
ଘୋର ବୃଷ୍ଟି କରି ମେଘେ ଅନ୍ଧାର କଲେ ଦଶ ।
ଯହୁଁ ମେଘେ ଅଖଣ୍ଡିତ ଧାରା ବରଷିଲେ
ନଦୀମାନେ ବଢ଼ାଇଣ କୂଳ ବୁଡ଼ାଇଲେ ।
ଆଦିତ୍ୟ ତେଜ ନ ଦିଶଇ ଗଗନେ
ବୃକ୍ଷମାନେ କମ୍ପିଲେ ପ୍ରଚଣ୍ଡ ପବନେ ।
ମାଲ୍ୟବନ୍ତ ପର୍ବତରେ ରହିଲେ ବେନି ଭାଇ
ବରଷା ବଞ୍ଚିଲେ ଦେ ଅନେକ କଷ୍ଟ ସହି ।

ବର୍ଷା ବସନ୍ତ ଆଦି ମଣିଷ ମନରେ କାମଭାବନା ତୀବ୍ର କରେ ବୋଲି ପ୍ରାଚୀନ ସାହିତ୍ୟରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ । ବସନ୍ତ ଋତୁରେ ଓ ବର୍ଷା ଋତୁରେ ରାମଚନ୍ଦ୍ରଙ୍କ ବିରହଦଶା ବଳରାମ ଦାସ ମଧ୍ୟ ବର୍ଣ୍ଣନା କରିଅଛନ୍ତି ।

ପ୍ରକୃତିକୁ ପୁରୁଷାୟିତ କରି ବଳରାମ ଦାସ ମଧ୍ୟ ସ୍ଥାନେ ସ୍ଥାନେ ବର୍ଣ୍ଣନା କରିଛନ୍ତି । କାଳିଦାସଙ୍କର ବିରହୀ ଯକ୍ଷ ମେଘକୁ ଦୂତ କରି ଅପଣା ର ପ୍ରିୟାଠାକୁ ପଠାଇଲା ଭଳି, ବଳରାମ ଦାସଙ୍କର ବିରହୀ ରାମଚନ୍ଦ୍ର ମେଘମାଳକୁ ସୀତାଙ୍କ ସନ୍ଦେଶ ଆଣି ଦେବାକୁ ଦାୟିତ୍ୱ ଦେଇ ଅଛନ୍ତି (୧) । କିରେଖ, ଦେଶାନ୍ତରୀ ଅରଣ୍ୟବାସୀ ରାମଚନ୍ଦ୍ର ମେଘମାଳକୁ ନିଜର ଦୁଃଖ ଜଣାଇଛନ୍ତି ; ମେଘମାନେ ସ୍ୱର୍ଗ ମର୍ତ୍ତ୍ୟ ସବୁ ଜଗ ବୁଲୁଥିବାରୁ ସୀତାଙ୍କ ରୂପ ଗୁଣ ସେମାନଙ୍କଠାରେ ବର୍ଣ୍ଣନା କରି, ତାଙ୍କୁ ଠାବ କରିବାକୁ ଓ ଲେଉଟାଣି ବାର୍ତ୍ତା ଆଣି ଦେବାକୁ ଅନୁରୋଧ କରିଅଛନ୍ତି ।

ପ୍ରକୃତିକୁ କବି ଉପମା ଓ ରୂପକର ଏକ ଗ୍ରନ୍ଥ ରୂପେ ବ୍ୟବହାର କରିଅଛନ୍ତି । ପ୍ରାକୃତିକ କ୍ରିୟାର ତୁଳନା ଦେଇ ଅନେକ ସ୍ଥଳରେ ମାନବିକ କ୍ରିୟାର ବର୍ଣ୍ଣନା କରିଅଛନ୍ତି । ପ୍ରକୃତିର ଗୋଟିଏ ନିୟମ ହେଉଛି— ସୂର୍ଯ୍ୟ ପୂର୍ବରେ ଉଇଁ ପଶ୍ଚିମରେ ବୁଡ଼ନ୍ତି । ଏ ନିୟମ ଅପରିବର୍ତ୍ତନୀୟ । କଥାର ଦୃଢ଼ତା ପ୍ରତିପାଦନ ପାଇଁ ଅନେକ ସମୟରେ ଏହାର ତୁଳନା ଦିଆ ହୋଇଥାଏ । ପ୍ରକୃତିର ନିୟମ ଭଳି ସୀତାଙ୍କର ରାମଙ୍କ ପ୍ରତି ନିଷ୍ଠା ସୁଦୃଢ଼ । ରାବଣର ପ୍ରଲୋଭନ ପ୍ରତି ତାଙ୍କର ମମତାଶୂନ୍ୟତା ଓ ରାମଙ୍କ ପ୍ରତି ନିଷ୍ଠା ପ୍ରକାଶ କରିବାକୁ ବଳରାମ ଦାସଙ୍କ ସୀତା କହୁଛନ୍ତି—"ବସୁମତୀ ଯଦି ରସାତଳରେ ପଡ଼ିଯିବ, ସିନ୍ଧୁ ଜଳ ଯଦି ମଧୁର ହୋଇ ଯିବ, ସୂର୍ଯ୍ୟ ଦେବତା ଯଦି ପଶ୍ଚିମରେ ଉଇଁବେ, ପର୍ବତ ଶିଖରେ ଯଦି ପଦ୍ମ ଫୁଟିବ, ନଦୀ ଯଦି ସର୍ବଦା ସମତୁଲ ରହିବ, ମେରୁ ପର୍ବତ ଯଦି ଟଳି ପଡ଼ିବ, ପାଣିରେ ପଙ୍କ ଓ ଚନ୍ଦ୍ରମାରେ କଳଙ୍କ ଯଦି ନ ରହିବ, ଜନ୍ତୁମାନେ ଯଦି ମରିବାକୁ ନିଃଶଙ୍କ ହେବେ, ତେବେ ମୋର ମନ ଟଳିବ ନାହିଁ" (୨) । ଏଭଳି ଆଉ ଗୋଟିଏ ଦୃଷ୍ଟାନ୍ତ ରାବଣର ରମ୍ଭାହରଣ ପ୍ରସଙ୍ଗ ବର୍ଣ୍ଣନାରୁ ମିଳେ । ସ୍ୱର୍ଗର ଅପ୍ସରା ରମ୍ଭାକୁ ପାପାଚାରୀ ରାବଣର ବଳାତ୍କାରରେ ହରଣ ଗୋଟିଏ କୁତ୍ସିତ ଦୃଶ୍ୟ । ଏହି ଦୃଶ୍ୟକୁ ପାଠକ ମନରେ ସୁସ୍ପଷ୍ଟ କରିବା ଲାଗି କବି ଲବଣୀକୁ ମର୍ଜାରୀ (ମାର୍ଜାରୀ) ଆହାର କରିବା, ମଧୁଫେଣାକୁ ଭାଲୁ ନାରଖାର କରିବା, ନିରୁତା ଦୁଧ ବେଙ୍ଗ ପିଇବା, ପାଚିଲା ଅମ୍ବ କାକ ଥଣ୍ଟରେ ଯିବା, ପୂର୍ଣ୍ଣିମା ଚନ୍ଦ୍ରକୁ କଳାମେଘ ଘୋଟିବା, ଫୁଟିଲା ପଦ୍ମକୁ ଚଲ

(୧) ସୁନ୍ଦରକାଣ୍ଡ, ପୃ: ୧୬ । (୨) ଉତ୍ତରା କାଣ୍ଡ, ପୃ: ୨୪ ।

ମାଛ ବସିବା କୃଷ୍ଣ'ର ଉପମା ଦେଇଅଛନ୍ତି (୧) । ଏହିଭଳି ରାମ ସୀତାଙ୍କର ପ୍ରଥମ ଦର୍ଶନରେ ପାରସ୍ପରିକ ଆକର୍ଷଣକୁ ପ୍ରାକୃତିକ ବସ୍ତୁର ତୁଳନା ଦେଇ ଦେଖାଇ ଅଛନ୍ତି । କବି ତୁଳନାରେ କହୁଛନ୍ତି—ଚନ୍ଦ୍ରକୁ ଦେଖି ଯେପରି କୁମୁଦ ଫୁଟେ, ଚୁମ୍ବକ ଯେପରି ଲୁହାକୁ ଟାଣେ, ପର୍ବତକୁ ଯେପରି ମେଘମାଳା ବେଢ଼ନ୍ତି, ହେମ ଓ ପାରା ଯେପରି ମିଶି ଯାଆନ୍ତି, ରାମ ସୀତା ସେହିଭଳି ଆକୃଷ୍ଟ ହୋଇଥିଲେ ।

ବଳରାମ ଦାସଙ୍କ ପ୍ରକୃତି ସ୍ଥାନେ ସ୍ଥାନେ ଏକାନ୍ତ ଚିତ୍ରଧର୍ମୀ । ଦାଣ୍ଡି ରାମାୟଣରେ ଗଙ୍ଗାର ବର୍ଣ୍ଣନା ଏହାର ଏକ ଦୃଷ୍ଟାନ୍ତ । ପୃଥିବୀ ମାତାର ଶାଢ଼ୀ ରୂପେ ଗଙ୍ଗାକୁ କବି ବର୍ଣ୍ଣନା କରି ଅଛନ୍ତି ।

ଧନ୍ୟ ସେ ଗଙ୍ଗାଦେବୀ ଧନ୍ୟ ରୂପ ତାର
ପୃଥ୍ୱୀ ଦେବୀ ପିନ୍ଧନ୍ତି କି ଶୁକ୍ଳବସ୍ତ୍ର ସାର ।
ସ୍ୱଭାବେ ଶୁକ୍ଳବର୍ଣ୍ଣ ଦିଶଇ ସୁରେଶ୍ୱରୀ
ତାଳମ୍ବା ଶାଢ଼ୀ ପ୍ରାୟେକ ତାହାର ଲହରି ।
ଦୁଇତଟ ବାଲି ସୁବର୍ଣ୍ଣ ରଙ୍ଗ ପ୍ରାଏ
ଶାଢ଼ୀ ଦୁଇ ପାଖେ ଓଅଁର ପ୍ରାୟ ଶୋହେ ।
ଧୀର ଧୀର ହୋଇଣ ଉଠଇ ଲହରି
ପାଟଶାଢ଼ୀ ପ୍ରାୟେଣ ତାହାକୁ ପଟାନ୍ତରି ।
ନାନାଦି ପକ୍ଷିଗଣ କ୍ରୀଡ଼ନ୍ତି ଜଳେ
ଫୁଲ ପଡ଼ ଅଛନ୍ତି କି ସେ ଶାଢ଼ୀର ଅଞ୍ଚଳେ ।
ଗମନ ଘାତେ ଲହରି ଉଠଇ ଖରତର
ଶାଢ଼ୀର ପଣନ୍ତ କି ଉଡ଼ଇ ଫରହର ।

ଆଦିକାଣ୍ଡ, ପୃ: ୧୧୩

ସ୍ଥୂଳତଃ ଦେଖିଲେ ଭକ୍ତକବିଙ୍କର ପ୍ରକୃତି ଚିତ୍ରଣରେ ନୈପୁଣ୍ୟ ହେଉଛି ସରଳତା ଓ ବାସ୍ତବ ବର୍ଣ୍ଣନା ଭଙ୍ଗୀ । ଏଥିରେ ଭାଷା ଓ ଭାବରେ କେଉଁଠାରେ କୃତ୍ରିମତା ପରିଦୃଷ୍ଟ ହୁଏ ନାହିଁ । ଅଧିକନ୍ତୁ ଜୀବନ୍ତ ଚିତ୍ର-କଳ୍ପଗୁଡ଼ିକ ବର୍ଣ୍ଣନାକୁ ହୃଦୟଗ୍ରାହୀ ଓ ମନୋରମ କରିଥାଏ । ଦାଣ୍ଡି-ରାମାୟଣର ପ୍ରକୃତି ଚିତ୍ର ଭିତରେ ଉତ୍କଳୀୟ ପ୍ରକୃତିର ବାସ୍ତବ ରୂପ

(୧) ଆଦିକାଣ୍ଡ, ପୃ: ୧୭୬ ।

ଅଭିବ୍ୟକ୍ତ ହୋଇଅଛି । କାମମୋହିନୀ ଆଦି ବେଶ୍ୟାମାନଙ୍କର ଅରଣ୍ୟ ଭାନ୍ତାର ମଧ୍ୟସ୍ଥ ନଦୀତଟରେ ଯାତ୍ରା, ବଣଭୋଜି ଲତା ଓ ଶବକୁଟ ଆଦିର ବର୍ଣ୍ଣନାରେ ଉତ୍କଳୀକୃତା ସ୍ପଷ୍ଟ । ଶବକୁଟରେ ବାଉଁଶ ବଣ ଭିତରେ ମଶା ଭଣ ଭଣ ହେଉଥିବାର ଦୃଶ୍ୟ ଅବିକଳ ଗୋଟିଏ ଓଡ଼ିଆ ଜନପଦର ଶବ ଦେଇଥାଏ । -

କବି ପ୍ରସିଦ୍ଧି—

କବିମାନଙ୍କ ରଚନାରେ ଦେଶ, କାଳ, ନ୍ୟାୟ ଓ ଆଗମ ବିରୋଧୀ ହେତୁ ଓ ଦୃଷ୍ଟାନ୍ତ ହୀନ କେତେକ ବସ୍ତୁର ବର୍ଣ୍ଣନା ଦେଖାଯାଇ ଥାଏ । ପ୍ରାଚୀନ ଅଳଙ୍କାରିକମାନେ ଏ ସବୁକୁ ଦୋଷ ବୋଲି ଗଣୁଥିଲେ । ମାତ୍ର ରାଜଶେଖର କାବ୍ୟମୀମାଂସାରେ ଅଲୌକିକ ଓ ଅଶାସ୍ତ୍ରୀୟ ବର୍ଣ୍ଣନାକୁ ଦୋଷ ବୋଲି ଗ୍ରହଣ କରିଥିଲେ ବି, କାବ୍ୟରେ ଏଭଳି ବର୍ଣ୍ଣନାକୁ ଏକ ବିଶେଷ ତ୍ରୁଟି ବୋଲି ମନେ କରି ନାହାନ୍ତି । ତାଙ୍କ ମତରେ ପ୍ରାଚୀନ କାଳରୁ କବିମାନେ ପରମ୍ପରା କ୍ରମେ ଯେଉଁ ବିଷୟମାନ ବର୍ଣ୍ଣନା କରି ଆସୁଛନ୍ତି, ବର୍ତ୍ତମାନ ଗୋଟିଏ ନିର୍ଦ୍ଦିଷ୍ଟ ଦେଶକାଳ ମଧ୍ୟରେ ତାହା ଦେଖି-ବାକୁ ମିଳୁନାହିଁ ବୋଲି ତାକୁ ଦୋଷ ବୋଲି ବାଦ୍ ଦେବା ଉଚିତ ନୁହେ । କାରଣ ଶାସ୍ତ୍ର ଅସୀମ । ଦେଶକାଳ ଅନନ୍ତ । ତେଣୁ କବି ପ୍ରସିଦ୍ଧି ସଂପୂର୍ଣ୍ଣ ମିଥ୍ୟା ହୋଇ ନପାରେ । ପ୍ରାଚୀନ କାଳରେ କବିମାନେ ବେଦଜ୍ଞାନ ଓ ଦେଶାଟନ ଆଦିର ଅନୁଭୂତି ବଳରେ ଏହା ସ୍ଥିର କରିଥିବା ସମ୍ଭବ ।

ପରମ୍ପରା କ୍ରମେ ସ୍ୱତଃସିଦ୍ଧ ରୂପେ କବିମାନଙ୍କ ଦ୍ୱାରା ବର୍ଣ୍ଣିତ ହେଉଥିବା ବହୁ ବିଷୟ ବଳରାମ ଦାସ ଦାଣ୍ଡି ରାମାୟଣରେ ବର୍ଣ୍ଣନା କରିଅଛନ୍ତି । ସବୁ ସମୟରେ ଜଳରେ କମଳ ଓ ହଂସର ବର୍ଣ୍ଣନା, ରଥାଙ୍ଗ ମିଥୁନର ଦିନରେ ମିଳନ ଓ ରାତ୍ରରେ ବିଚ୍ଛେଦ ହେବା, ଆକାଶରେ ଚନ୍ଦ୍ରୋଦୟରେ କୁମୁଦ ଓ ସୂର୍ଯ୍ୟୋଦୟରେ କମଳ ଫୁଟିବା ଭଳି କେତେକ ବିଷୟର ବର୍ଣ୍ଣନା କବିମାନେ ସାଧାରଣତଃ ପାରମ୍ପରିକ ଭାବେ କରିଥାଆନ୍ତି । ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଏଗୁଡ଼ିକ "କବି ପ୍ରସିଦ୍ଧି" ବୋଲି ସ୍ୱୀକୃତ ହୋଇଛି ।

ପୌରାଣିକ ବ୍ୟାଖ୍ୟା—

ଏଭଳି ସ୍ୱତଃସିଦ୍ଧ ରୂପେ କବିମାନେ ବର୍ଣ୍ଣନା କରୁଥିବା କେତେକ ବିଷୟର ଉତ୍ପତ୍ତି ସମ୍ବନ୍ଧରେ ପୌରାଣିକ ବ୍ୟାଖ୍ୟା ପୁରାଣମାନଙ୍କରେ

ମିଳେ । ଦୃଷ୍ଟାନ୍ତ ସ୍ୱରୂପ ରଥାଙ୍ଗ ମିଥୁନର ରାତ୍ରି-ବିଚ୍ଛେଦ ସମ୍ବନ୍ଧରେ ଅଗ୍ନିବେଶ ରାମାୟଣରେ କୁହାଯାଇଅଛି, ପତ୍ନୀ ବିୟୋଗକାତର ରାମଚନ୍ଦ୍ରଙ୍କୁ ପରିହାସ କରିଥିବାରୁ ରାମଚନ୍ଦ୍ର ରଥାଙ୍ଗ ମିଥୁନକୁ ଏଭଳି ଅଭିଶାପ ଦେଇଥିଲେ । ଦାଣ୍ଡି ରାମାୟଣରେ ଏହି ବିଷୟଟି ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି ( ଅରଣ୍ୟକ କାଣ୍ଡ, ପୃ: ୫୬ ) ।

ବଳରାମ ଦାସଙ୍କ ରାମାୟଣରେ ବହୁ ସାଧାରଣ କଥାର ପୌରାଣିକ ବ୍ୟାଖ୍ୟା ଦିଆଯାଇଅଛି । ବକପକ୍ଷୀର ପର ଧଳା ହେବା, ଲୋକରେ ବକ-ପକ୍ଷୀଙ୍କ ପାଳିତ ହେବାର କାରଣ ( କିଷ୍କିନ୍ଧ୍ୟା, ପୃ: ୫୦ ), କୁକ୍କୁଟ ମଥାରେ ସପ୍ତଶାଖା ମୁକୁଟ ହେବାର କାରଣ ( କିଷ୍କିନ୍ଧ୍ୟା ପୃ: ୬୭ ), ପର୍ବତମାନେ ବୃକ୍ଷହୀନ ହେବାର କାରଣମାନ କବି ପୌରାଣିକ ଭାବରେ ବ୍ୟାଖ୍ୟା କରିଅଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ ସୀତାଙ୍କ ଲୋତକ ପଡ଼ିବାରୁ ବକପକ୍ଷୀର ପର ଧଳା ହେଲା । ରାମଚନ୍ଦ୍ରଙ୍କ ଦୁଃଖରେ ସମ-ବେଦନା ଜଣାଇବାରେ ତାଙ୍କଠାରୁ ବର ଲଭି କରି କୁକ୍କୁଟ ସପ୍ତଶାଖା ମୁକୁଟ ଧାରଣ କଲା । ରାମଚନ୍ଦ୍ରଙ୍କୁ କୌଣସି ଉତ୍ତର ନ ଦେବାରୁ ପର୍ବତମାନେ ତାଙ୍କର ଅଭିଶାପରେ ବୃକ୍ଷହୀନ ହେଲେ । ରାବଣେଶ୍ୱରର ଛତାଗୁଡ଼ିକ ସଜ ଛତ୍ରୁ ସୃଷ୍ଟି ହେବା ଓ ରାମଙ୍କ ସୈନ୍ୟମାନଙ୍କ ଲାଗି ରାମତାଳ (ବାଦ୍ୟ ବିଶେଷ) ସୃଷ୍ଟି ହୋଇଥିବା କଥା ବର୍ଣ୍ଣିତ ହୋଇଛି ।

ଓଡ଼ିଶାର ଅନେକ ସ୍ଥାନ ନାମକରଣର ଏହିଭଳି ପୌରାଣିକ ବ୍ୟାଖ୍ୟାମାନ ଦାଣ୍ଡି ରାମାୟଣରେ ଦିଆଯାଇଛି । ଏଥିରେ ବଳରାମ ଦାସ ଯଥେଷ୍ଟ ସ୍ୱକୀୟତା ଦେଖାଇ ଅଛନ୍ତି । ବଣାଇ, ରଣାଇ ଓ ବାମଣ୍ଡା ଆଦି ସ୍ଥାନମାନଙ୍କ ନାମକରଣର କାରଣମାନ ଦେଇଅଛନ୍ତି । ରାମଚନ୍ଦ୍ରଙ୍କ ସୈନ୍ୟମାନେ ଯେଉଁଠି ପଥବଣା ହୋଇଯାଇଥିଲେ, ତାହା ବଣାଇ; ରଣ କରିବାକୁ ଯେଉଁଠି ବିଗ୍ରହ କରିଥିଲେ, ତାହା ରଣାଇ; ବାମ ଅଣ୍ଡକୁ ମାଡ଼ିଯାଇ ଯେଉଁଠି ପହଞ୍ଚିଥିଲେ, ତାହା ବାମଣ୍ଡା ନାମରେ ପରିଚିତ ହୋଇଥିଲା ବୋଲି କବି ନିର୍ଦ୍ଦେଶ କରିଅଛନ୍ତି (କିଷ୍କିନ୍ଧ୍ୟା-ପୃ: ୭୬) ।

**ନାରୀରୂପ ବର୍ଣ୍ଣନା—**

ସମୁଦାୟ ପ୍ରାଚୀନ ସାହିତ୍ୟରେ ନାରୀରୂପ ବର୍ଣ୍ଣନାରେ ଗୋଟିଏ ପ୍ରକାର ପାରମ୍ପରିକ ଶୈଳୀ ଦେଖାଯାଏ । ସାମୁଦ୍ରିକ ଲକ୍ଷଣ, କାମ ଶାସ୍ତ୍ରରେ

ନାରୀରୂପ ବର୍ଣ୍ଣନା ଓ ଦେବୀମାନଙ୍କର ରୂପ-କଳ୍ପନା ଦ୍ୱାରା ଏହା ପ୍ରଭାବିତ ହୋଇଥିବ ବୋଲି ମନେ ହୁଏ । ଅଳଙ୍କାରିକ ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ନିର୍ଦ୍ଧାରଣ ଅନୁସାରେ ନାରୀ ଶରୀରରେ ସୌନ୍ଦର୍ଯ୍ୟ, ମୃଦୁତା, କୃଶତା, କୋମଳତା, କାନ୍ତି, ଉଜ୍ଜ୍ୱଳତା, ଅବଲ୍ୟ ଓ ସୌକୁମାର୍ଯ୍ୟ ଆଦି ଗୁଣ ଥିବା ବିଧେୟ । ଏହି ଗୁଣଗୁଡ଼ିକର ତୁଲ୍ୟବସ୍ତୁମାନ ନାରୀ ଶରୀରର ଉପମାନ ରୂପେ, କବିମାନେ ପ୍ରୟୋଗ କରିଥିବା ସ୍ୱାଭାବିକ । ଲକ୍ଷ୍ମୀ, ଗୌରୀ, ସରସ୍ୱତୀ, ସାବିତ୍ରୀ, ରାଧିକା ଆଦି ଦେବୀମାନଙ୍କ ଧ୍ୟାନରେ ଦିଆ ଯାଇଥିବା, ସେମାନଙ୍କ ରୂପ ବର୍ଣ୍ଣନାରେ ଏଇସବୁ ଗୁଣର ଉଲ୍ଲେଖ ଦେଖାଯାଏ । ପୁଣି ଏଇ ଦେବୀ-ମାନେ ଦିବ୍ୟ ଅଳଙ୍କାର ଭୂଷିତା ହୋଇଥିବାର ବର୍ଣ୍ଣିତ । ଏଥିଲାଗି ନାରୀ-ମାନଙ୍କୁ ସର୍ବଦା ନାନା ପ୍ରକାର ଅଳଙ୍କାର-ମଣ୍ଡିତା ରୂପେ ବର୍ଣ୍ଣନା କରିବା ପ୍ରାଚୀନ ସାହିତ୍ୟରେ ଏକ ପରମ୍ପରା ରୂପେ ଗୃହୀତ ହୋଇ ଆସିଅଛି । କାମ-ଶାସ୍ତ୍ରରେ ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ଓ ହସ୍ତିନୀ ଆଦି ଚାରି ଜାତୀୟ ନାରୀ-ମାନଙ୍କର ଉଲ୍ଲେଖ ଦେଖାଯାଏ । ଏଥିମଧ୍ୟରୁ ପଦ୍ମିନୀ ଓ ଚିତ୍ରିଣୀ ଜାତୀୟା ନାରୀମାନଙ୍କୁ ଶ୍ରେଷ୍ଠ ବୋଲି କୁହାଯାଇଅଛି । ଅଳଙ୍କାରିକମାନଙ୍କ ଦ୍ୱାରା ନିର୍ଦ୍ଧାରିତ ନାରୀ ଶରୀର-ସୌନ୍ଦର୍ଯ୍ୟର ସମସ୍ତ ଲକ୍ଷଣମାନ ଏମାନଙ୍କଠାରେ ଦେଖିବାକୁ ମିଳେ (୧) । ଅଧିକନ୍ତୁ ମଧ୍ୟ ଲକ୍ଷ୍ୟ କରିବାର କଥା, ବିଶେଷ କାରଣ ଉପସ୍ଥିତ ନ ଥିଲେ (ରାମାୟଣରେ ଯେପରି ମନ୍ଥରା), ସ୍ତ୍ରୀମାନଙ୍କୁ ସାଧାରଣତଃ ସତ୍ତ୍ୱଗୁଣ ପ୍ରଧାନା ବା ରଜୋଗୁଣ ପ୍ରଧାନା (ବିଳାସିନୀ) ଭାବେ ବର୍ଣ୍ଣନା କରାଯାଇ ଥାଏ । ଏଣୁ କୌଣସି କୃଷ୍ଣବର୍ଣ୍ଣ ପଦାର୍ଥ ସହିତ

---

(୧) ପଦ୍ମିନୀ ଲକ୍ଷଣ

"ଭବତି କମଳ ନେତ୍ରା ନାସିକା କ୍ଷୁଦ୍ର ରନ୍ଧ୍ରା
ଅବିରଳ-କୁଚଯୁଗ୍ମା ଦୀର୍ଘକେଶୀ କୃଶାଙ୍ଗୀ ।
ମୃଦୁବଚନ ସୁଶୀଳା ନୃତ୍ୟ ଗୀତାନୁରକ୍ତା
ସକଳ ତନୁ ସୁବେଶା ପଦ୍ମିନୀ ପଦ୍ମଗନ୍ଧା ।"

"ଚିତ୍ରିଣୀ ଲକ୍ଷଣ—

"ଭବତି ରତି ରସଜ୍ଞା ନାତିଦୀର୍ଘା ନ ଖର୍ବା
ତିଲକୁସୁମ ସୁନାସା ସ୍ନିଗ୍ଧ ଦେହୋତ୍ପଲାକ୍ଷୀ
କଠିନ ଘନ କୁଚାଢ୍ୟା ସୁନ୍ଦରୀ ସା ସୁଶୀଳା
ସକଳ ଗୁଣ-ବିଚିତ୍ରା ଚିତ୍ରିଣୀ ଚିତ୍ରରକ୍ତା ।"

ରତି ରହସ୍ୟ ।

ସେମାନଙ୍କୁ ଉପମା ଦିଆଯାଏ ନାହିଁ । ସମଗ୍ର ନାରୀଶରୀରର ତୁଳନା ସାଧାରଣତଃ ଚନ୍ଦ୍ରକଳା, କମଳରଜ୍ଜୁ, ଶିରୀଷମାଳା, ବିଦ୍ୟୁଲ୍ଲତା, ସ୍ୱର୍ଣ୍ଣଖଣ୍ଡ, ଦୀପଶିଖା ଭଳି ବସ୍ତୁଗୁଡ଼ିକ ସହିତ ହୋଇଥାଏ । କାବ୍ୟରେ ନାରୀଶରୀରର କେତେଗୋଟି ବିଶିଷ୍ଟ ଅଙ୍ଗ ବିଶେଷ ଭାବରେ ବର୍ଣ୍ଣିତ ହୋଇଥାଏ । ଗୋବର୍ଦ୍ଧନାଚାର୍ଯ୍ୟ ଆଦି ଅଳଙ୍କାରିକମାନଙ୍କ ମତରେ ନାରୀର ମୁଖ ମଣ୍ଡଳରେ କେଶ, ଲଲାଟ, କପୋଳ, ମୁଖ, ନାସିକା, ନେତ୍ର, ଅଧର, ଓଷ୍ଠ, ଦନ୍ତ, ବାଣୀ, କଣ୍ଠ, ଆଦି ବର୍ଣ୍ଣନୀୟ । କର୍ଣ୍ଣକୁ ପ୍ରାୟ ସମସ୍ତ ଅଳଙ୍କାର ଶାସ୍ତ୍ରରେ ଓ କାବ୍ୟରେ ବାଦ୍ ଦିଆ ଯାଇଅଛି । କଣ୍ଠ ଓ କଟିର ମଧ୍ୟବର୍ତ୍ତୀ ଅଂଶରେ ବାହୁ, କର, ଅଙ୍ଗୁଳି, ନଖ, ବକ୍ଷସ୍ଥଳ, ନାଭି, ତ୍ରିବଳୀ, ରୋମାଳି, କଟି ଓ କୁଚର ପୃଷ୍ଠ ବର୍ଣ୍ଣନୀୟ । କଟିର ଅଧୋଭାଗରେ ଜଘନ, ନିତମ୍ବ, ଊରୁ, ଚରଣ, ନଖ, ଗମନ ଆଦିର ବର୍ଣ୍ଣନା ବିଧେୟ ।

ନାରୀ ରୂପ ବର୍ଣ୍ଣନାରେ ଦାଣ୍ଡି ରାମାୟଣରେ ଉପର୍ଯ୍ୟୁକ୍ତ କ୍ରମ ଲକ୍ଷିତ ହୁଏ । ଅଯୋଧ୍ୟାରେ ରାଣୀମାନଙ୍କ ମୁଖରେ ସୀତାଙ୍କ ରୂପ ବର୍ଣ୍ଣନାକୁ ଦୃଷ୍ଟାନ୍ତ ସ୍ୱରୂପ ନିଆ ଯାଇପାରେ (୧) । କବି ପ୍ରସିଦ୍ଧି ଅଛି, ମାନବୀର ମୁଖରୁ ଓ ଦେବୀର ପାଦରୁ ବର୍ଣ୍ଣନା ଆରମ୍ଭ ହେବା ବିଧେୟ । ଏହି କ୍ରମରେ ମାନବୀ ରୂପେ ସୀତାଙ୍କୁ ମୁଖରୁ ପ୍ରଥମେ ବର୍ଣ୍ଣନା କରାଯାଇଅଛି । ସୀତାଙ୍କ ଶରୀର-କାନ୍ତି ପାରଦ ମିଶ୍ରିତ ଶୁଦ୍ଧ ସୁବର୍ଣ୍ଣ ଭଳି । ଏହା ପରେ ତାଙ୍କର ମୁଖମଣ୍ଡଳ, କଣ୍ଠରୁ କଟି ପ୍ରଦେଶ ଓ କଟି ପ୍ରଦେଶରୁ ଶରୀର ଅଧୋଭାଗର ବିଭିନ୍ନ ଅବୟବମାନଙ୍କର ବର୍ଣ୍ଣନା କରାଯାଇଅଛି । ମୁଖମଣ୍ଡଳରେ ମୁଖ, ନୟନ, ବାଣୀ, ନାସିକା ଓ କଣ୍ଠ ଆଦିକୁ ଯଥାକ୍ରମେ ସୁଧାକର ମଣ୍ଡଳ, କୁରଙ୍ଗ ନେତ୍ର, ଅଣ୍ଡିର କୋକିଳର ସ୍ୱର, ତିଳ କୁସୁମ ଓ କମ୍ବୁ ଆଦି ସହ ତୁଳନା କରା ଯାଇଅଛି । କଣ୍ଠ ଓ କଟି ମଧ୍ୟରେ ବକ୍ଷ, ବାହୁ ଉଦର, ନାଭି ଓ କଟି ଆଦି ଯଥାକ୍ରମେ କରୀକୁମ୍ଭ, ପଦ୍ମମୃଣାଳ, ପଦ୍ମପତ୍ର, ଦକ୍ଷିଣାବର୍ତ୍ତ, ଓ ସିଂହକଟି ଆଦି ସହ ତୁଳିତ ହୋଇଅଛି । ଉରୋଜର ବିସ୍ତୃତ ବର୍ଣ୍ଣନା ହୋଇଛି । ତାହାକୁ କସ୍ତୁରୀ ମୃଦ ଦିଆ ନୀଳ ଢାଙ୍କୁଣୀଯୁକ୍ତ ଭଣ୍ଡାର ବୋଲି କହି, ମାତୁଲଙ୍ଗ ଫଳ ସହିତ ତୁଳନା କରିଅଛନ୍ତି । ଶରୀରର ଅଧୋଭାଗରେ ନିତମ୍ବ, ଜାନୁ, ତଳିପା, ନଖ ଆଦିର ବର୍ଣ୍ଣନା ଦେଇଛନ୍ତି ।

---

(୧) ଆଦିକାଣ୍ଡ, ପୃ ୨୨୮ ।

ସାମୁଦ୍ରିକ ଓ କାମଶାସ୍ତ୍ର ବର୍ଣ୍ଣିତ ସୌଭାଗ୍ୟବତୀ ନାରୀର ଲକ୍ଷଣମାନ ମଧ୍ୟ ସୀତାଙ୍କଠାରେ ଆରୋପିତ ହୋଇଅଛି । ସୀତାଙ୍କୁ ରାବଣ, ରାମ ଓ ଲକ୍ଷ୍ମଣଙ୍କ ମାୟାମୁଣ୍ଡମାନ ଦେଖାଇବାରେ ସୀତା ଶୋକରେ ଅଧୀର ହୋଇଛନ୍ତି । ସୀତାଙ୍କୁ ପ୍ରବୋଧ ଦେଇ ତ୍ରିଜଟା କହୁଛି, ସୀତାଙ୍କର ବୈଧବ୍ୟ ଲକ୍ଷଣ ନାହିଁ । ଏହି ପ୍ରସଙ୍ଗରେ ତ୍ରିଜଟା ସୌଭାଗ୍ୟବତୀ ନାରୀ ଓ କୁଲକ୍ଷଣ ନାରୀର ଲକ୍ଷଣମାନ ସୀତାଙ୍କୁ ଶୁଣାଇଛି (ଲଙ୍କାକାଣ୍ଡ, ପୃ: ୩୨-୩୪) । ସୌଭାଗ୍ୟବତୀର ସର୍ବାଙ୍ଗ ସୁନ୍ଦର, ଦନ୍ତପନ୍ତି ସମତୁଲ, ନାସା ତିଳଫୁଲ ଭଳି ଉନ୍ନତ; ଲଲାଟ ସମତଳ ଓ ନେତ୍ର ଲାବଣ୍ୟ ସରରେ କମଳ ଭଳି ସୁଶୋଭନ । ତାର ଶରୀର ନାତିଦୀର୍ଘ, ନାତିଖର୍ବ ଓ ନାତିସ୍ଥୂଳ । ସେ ଅତି ଚଞ୍ଚଳ ବା ଅତି ଧୀର ନୁହନ୍ତି । ଅନ୍ୟ ପକ୍ଷରେ କୁଲକ୍ଷଣ ନାରୀର ଲୋଚନ ଚଞ୍ଚଳ, କବରୀ ପିଙ୍ଗଳ ବର୍ଣ୍ଣ, ଭ୍ରୂଲତା ଖଣ୍ଡିତ, କର୍ଣ୍ଣ ପ୍ରଲମ୍ବ ଓ ବିଲମ୍ବ, ମଞ୍ଜା ମୋଟା, ଗଣ୍ଡଯୁଗଳ ବିପୁଳ, ଦନ୍ତ ଦୀର୍ଘ ଓ କପୋଳ ଉଚ୍ଚ । କୁଲକ୍ଷଣ ନାରୀ ଚାଲିବା ବେଳେ ବସୁଧା ଥରି ଉଠେ, ତାର କନିଷ୍ଠା ଅଙ୍ଗୁଳି ଭୂମି ସ୍ପର୍ଶ କରେ ନାହିଁ । ତାର ସ୍ୱର ପୁରୁଷ କଣ୍ଠ ଭଳି କର୍କଶ । ସେ କଳହପ୍ରବଣା ଓ ଅତି ଭୋଜନରେ ଅସକ୍ତା ।

ନାରୀ ରୂପ ବର୍ଣ୍ଣନାରେ ବଳରାମ ଦାସ ଅନେକ ସମୟରେ ପାରମ୍ପରିକ ରୀତି ଅବଲମ୍ବନ କରିଥିଲେ ମଧ୍ୟ, ନାରୀର ଅଳଙ୍କାରମାନ ବର୍ଣ୍ଣନା କରିବାରେ ଉତ୍କଳୀୟ ଅଳଙ୍କାରର ବିଶେଷତ୍ୱ ଦେଖାଇ ଅଛନ୍ତି । ନାରୀକୁ ସାଧାରଣତଃ ସତ୍ତ୍ୱମୟୀ ଓ ବିଳାସିନୀ ରୂପେ ଚିତ୍ରିତ କରି ଅଛନ୍ତି ।

## ସମ୍ଭୋଗ ଚିତ୍ର—

କବି ବଳରାମ ଦାସ ରମାୟଣରୂପୀ ବିଶ୍ୱକୋଷ ଭିତରେ ନାରୀ ଓ ପୁରୁଷର କେବଳ ବହିରଙ୍ଗର ଚିତ୍ର ଦେଇ ନାହାନ୍ତି । ସେମାନଙ୍କ ଆତ୍ମା ଉପରେ ମଧ୍ୟ ଆଲୋକପାତ କରିଅଛନ୍ତି । ନିଖୁଣ ନାରୀ ଶରୀରର କମନୀୟ ଚିତ୍ର କବିଙ୍କ ବର୍ଣ୍ଣନାରେ ଗୋଟିଏ ଦିଗ । ମାତ୍ର ନାରୀତ୍ୱ ଓ ପୌରୁଷର ପ୍ରକୃତ ମର୍ଯ୍ୟାଦା ସେ ନାୟକ ନାୟିକାଙ୍କର ସମ୍ଭୋଗ ଚିତ୍ର ଭିତରେ ଦେଇଛନ୍ତି । ଏଠାରେ ମନେ ରଖିବା ଉଚିତ—ନାୟକ ନାୟିକାଙ୍କର ବିଚ୍ଛେଦ, ମିଳନ, ସମ୍ଭୋଗ ଓ ମଣ୍ଡନ ଭଞ୍ଜୀୟ କାବ୍ୟର ଆତ୍ମା । କିନ୍ତୁ ବଳରାମ ଦାସଙ୍କ

ମହାକାବ୍ୟ ପକ୍ଷରେ ଏହା ପ୍ରଯୁକ୍ତ୍ୟ ନୁହେ । ସମୁଦାୟ ଜୀବନ ଭିତରେ ସମ୍ଭୋଗର ସ୍ଥାନ ଯେପରି ଅଳ୍ପ, ବଳରାମ ଦାସଙ୍କ ମହାକାବ୍ୟରେ ସମ୍ଭୋଗ ବର୍ଣ୍ଣନାର ଅବସର ମଧ୍ୟ ସେହିପରି ସୀମିତ । ରାମଚନ୍ଦ୍ର ଓ ସୀତାଙ୍କର ବିଚ୍ଛେଦ ପୂର୍ବରୁ ଚିତ୍ରକୂଟରେ ରାମସୀତାଙ୍କ ବନବିହାରରେ ମଧୁରରସ, ଅତ ଲଙ୍କା ବିଜୟରୁ ଫେରି ଅଯୋଧ୍ୟାର ସିଂହାସନରେ ଅଭିଷିକ୍ତ ରାମସୀତାଙ୍କ ସମ୍ଭୋଗ ବର୍ଣ୍ଣନା ହିଁ, ଏ ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ । ଉଭୟ କ୍ଷେତ୍ରରେ ମଧୁରରସ ବର୍ଣ୍ଣନାରେ କବି କୁଶଳତା ଦେଖାଇଛନ୍ତି । ସମ୍ଭୋଗ ଭିତରେ ସୌନ୍ଦର୍ଯ୍ୟକୁ ପ୍ରତିଷ୍ଠା ଦେଇଛନ୍ତି । ମାତ୍ର ସୀମା ଲଙ୍ଘନ କରି ନାହାନ୍ତି । ଭକ୍ତ କବିଙ୍କ ମହନୀୟ ଲେଖନୀ ସମ୍ଭୋଗରେ ଐଶ୍ୱର୍ଯ୍ୟର ସନ୍ଧାନ ଦେଉଛି, ମାତ୍ର ସମ୍ଭୋଗରେ ଶୃଙ୍ଗାରିକତାର ବିସ୍ୱାଦ ପଙ୍କ ବୋଳି ନାହିଁ ।

ଚିତ୍ରକୂଟ ଅରଣ୍ୟବାସୀ ରାମସୀତାଙ୍କର ବନବିହାରରେ ମଧୁର ରସ ବର୍ଣ୍ଣନା କବିଙ୍କର ଏକ ସାର୍ଥକ ସୃଷ୍ଟି । ଏଠାରେ ଚିତ୍ରକୂଟର ବିଚିତ୍ର ପ୍ରକୃତି କୋଳରେ କେତେବେଳେ ରାମ ଓ ସୀତା ଦୁଇଟି ଶିଶୁ ଭଳି ଲୁଚକାଳି ଖେଳିଛନ୍ତି, ବନ୍ୟ ମର୍କଟମାନଙ୍କୁ ଦେଖି ଭୟରେ ପରସ୍ପର କୋଳାକୋଳି ହୋଇଛନ୍ତି, ଉଡନ୍ତା ପାରିପଲକୁ ଦେଖି ଧରିବାକୁ ଯତ୍ନ କରିଅଛନ୍ତି । ପୁଣି କେତେବେଳେ ସେମାନେ ହୋଇଛନ୍ତି ଚପଳ କିଶୋର । ମନ୍ଦାକିନୀ ନଦୀରେ ମନ ଆନନ୍ଦରେ ସନ୍ତରଣ କରି ସ୍ନାନ କରିଛନ୍ତି । ଅଭିମାନ କରି ନାଗେଶ୍ୱର ଫୁଲ ଡାଳରେ ପରସ୍ପରକୁ ପ୍ରହାର କରିଛନ୍ତି । ପୁଣି କେତେବେଳେ ଜଗତର ଶ୍ରେଷ୍ଠ ପ୍ରେମିକ ସାଜି ନିର୍ମଳ ସ୍ଥାନରେ ବସି ପରସ୍ପରକୁ ପ୍ରେମ ନିବେଦନ କରିଛନ୍ତି । ବନ୍ୟ କୁସୁମ, କସ୍ତୁରୀ ଅଗୁରୁ ଓ ଚନ୍ଦନରେ ଉଭୟେ ମଣ୍ଡିତ ହୋଇଛନ୍ତି । ରାମଚନ୍ଦ୍ର ଓ ସୀତାଙ୍କର ଏଇ ସମ୍ଭୋଗ ଚିତ୍ର ଭିତରେ ସମୁଦାୟ ଚିତ୍ରକୂଟର ପ୍ରକୃତି ଜୀବନ୍ତ ହୋଇ ଉଠିଅଛି (୧) ।

ଲଙ୍କା ବିଜୟ ପରେ ବହୁ ଦୁର୍ଦ୍ଦିନ ଅତିକ୍ରମ କରି ରାମଚନ୍ଦ୍ର ଓ ସୀତା ସର୍ବ ସୁଖରେ ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ହୋଇଅଛନ୍ତି । ମାନବିକତାର ଶ୍ରେଷ୍ଠ ପ୍ରତିମୂର୍ତ୍ତି ରାମଚନ୍ଦ୍ରଙ୍କ ଜୀବନରେ କବି କେବଳ ନୃପତିର ଆଦର୍ଶ ଦେଖାଇ ନାହାନ୍ତି । ରାଜା ରୂପେ ତାଙ୍କର ଗୌରବ ବର୍ଣ୍ଣନା

(୧) ଚିତ୍ରକୂଟରେ ବନବିହାର—ଅଯୋଧ୍ୟା, ପୃ: ୭୯-୮୮ ।

ସଙ୍ଗେ ସଙ୍ଗେ କବି ଆଦର୍ଶ ପ୍ରେମିକ ଓ ନାଗର ରୂପେ ରାମଚନ୍ଦ୍ରଙ୍କର ମହନୀୟ ଚିତ୍ର ଦେଇଅଛନ୍ତି । ଛଅଟି ଯାକ ଋତୁ ପରିପୂର୍ଣ୍ଣ ଭାବରେ ରାମଚନ୍ଦ୍ର ସମ୍ଭୋଗ କରୁଥିବାର ବର୍ଣ୍ଣନା କରିଅଛନ୍ତି । ଗ୍ରୀଷ୍ମ ଋତୁରେ ରାମଚନ୍ଦ୍ର ଜଳକ୍ରୀଡ଼ା କରନ୍ତି । ବସନ୍ତ ଋତୁରେ ମଧୁବନରେ ସୀତାଙ୍କ ସହିତ ବିହାର କରନ୍ତି । ବର୍ଷାରେ ଘରଣୀ ସହିତ ଗୋପନବାସ କରନ୍ତି । ଶରତରେ ଖଟଖୀ ଉପରେ ଉଠନ୍ତି । ଶିଶିରରେ ଅଗୁରୁକାଠର ଅଗ୍ନି ଜାଳି, ଦକ୍ଷିଣ ମେଲା ଘରେ ପହୁଡ଼ନ୍ତି । ହିମ ଋତୁରେ "ପାହାନ୍ତ ମେଢ଼"କୁ ଯାଆନ୍ତି । ହାତୀ ଘୋଡ଼ାରେ ଚଢ଼ି ଦୌଡ଼ନ୍ତି । ନଦୀ ବାଲିରେ ସଂଗ୍ରାମ ଅଭ୍ୟାସ କରନ୍ତି (୧) । ଏଠାରେ କବି ରାମସୀତାଙ୍କ ବିହାର ସହିତ ମଧୁବନ ରଚନାର ବିଶଦ ବର୍ଣ୍ଣନା ଦେଇଛନ୍ତି । ବଳରାମ ଦାସଙ୍କ ରଚନାରେ ସର୍ବଦା ବନ ଓ ଉଦ୍ୟାନ ଆପଣାର ସ୍ୱତନ୍ତ୍ର ସୀମା ହରାଇ ଏକାକାର ହୋଇଥାଆନ୍ତି । ଏହି ମଧୁବନ ତୋଟାକୁ କବି ଏକପ୍ରକାର ଅରଣ୍ୟ ରୂପେ କଳ୍ପନା କରିଛନ୍ତି ।

ନାୟକ ନାୟିକାଙ୍କ ସମ୍ଭୋଗ ବର୍ଣ୍ଣନାରେ କବି ବ୍ୟଙ୍ଗ ଓ ପରିହାସକୁ ଯଥାଯୋଗ୍ୟ ସ୍ଥାନ ଦେଇଛନ୍ତି । ଚିତ୍ରକୂଟରେ ବନ ବିହାର ସମୟରେ ସୀତା ମନଖୁସିରେ ଫଳେ ପାରିକର ପଶ୍ଚାତ୍‌ଧାବନ କରିବା ବେଳେ ରାମଚନ୍ଦ୍ର କହୁଛନ୍ତି—"ଛାର ପକ୍ଷୀଟାକୁ ଧରି ପାରୁ ନାହିଁ ?" ହସି ହସି ସୀତା ଉତ୍ତର ଦେଇଛନ୍ତି "ତୁମେ କେଉଁଠି ପାରିପଲକୁ ଧରି ପାରନ୍ତ କି ? ମୁଁ ଉଡ଼ି ଗଲେ ସିନା ଧରନ୍ତ" । ଠିକ୍ ଏହିଭଳି ଉତ୍ତରକାଣ୍ଡରେ ମଧୁବନ ବିହାର ସମୟରେ ରାମଚନ୍ଦ୍ର ସୀତାଙ୍କ ସହିତ ଏକାନ୍ତରେ ସୁଖାଳାପ କରୁଁ କରୁଁ ଲକ୍ଷ୍ମଣଙ୍କୁ ଧନୁ ଧରି ଆସିବାକୁ ଉଚ୍ଚସ୍ୱରରେ ଆହ୍ୱାନ କରିଛନ୍ତି । ସୀତା ଏଥିରେ ବିସ୍ମିତ ଓ ଚକିତ ହୋଇ ରାମଚନ୍ଦ୍ରଙ୍କୁ କାରଣ ପଚାରିବାରେ ସେ ହସି ହସି କହୁଛନ୍ତି—"ସୀତାଙ୍କ ପାଦ ଅଙ୍ଗୁଳିର ଦଶୋଟି ନଖରେ ନିଜର ପ୍ରତିବିମ୍ବ ଦେଖି, ଦଶମୁଣ୍ଡିଆ ରାବଣ ବୋଲି ଭ୍ରମ ହେବାରୁ ସେ ଲକ୍ଷ୍ମଣଙ୍କୁ ଧନୁଧର ଆସିବାକୁ ଡାକିଲେ" । ଏହାପରେ ହାସ୍ୟର ଢେଉରେ ଦୁହେଁ ଲୋଟି ପଡ଼ିଛନ୍ତି । ଏହି ବିମଳ ପରିହାସ ଭିତରେ ପ୍ରେମିକ ରାମଚନ୍ଦ୍ରଙ୍କ ମୁଖରେ ପ୍ରଣୟିନୀ ସୀତାଙ୍କ ନଖପନ୍ତିର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କ କଳାସୃଷ୍ଟିର ଚରମ ନୈପୁଣ୍ୟ ଚିରକାଳ ଅନତିକ୍ରମ୍ୟ ହୋଇ ରହିବ ।

---

(୧) ଉତ୍ତରକାଣ୍ଡ ସମ୍ଭୋଗ-ଉତ୍ସବ, ପୃ. ୧୦୦ ।

ମଧୁବନରେ ବିହାର ପରେ ଉଦ୍ୟାନରୁ ଅନ୍ତଃପୁର-ରମଣୀମାନଙ୍କ ଲାଗି ଫଳଫୁଲ ଆହରଣ କରି ସୀତା ଅନ୍ତଃପୁରକୁ ଫେରନ୍ତି । ସମ୍ଭୋଗ ପରେ ତାଙ୍କର ମଳିନ ବେଶ ଓ ମୁକୁଳିତ କେଶ ଦେଖି ସଖିଗଣ ପରିହାସ କରିଅଛନ୍ତି । ଚନ୍ଦ୍ର ଦେଖିଲେ ସରୋଜ ଭଳି ସୀତା ଲାଜରେ ମଉଳି ପଡ଼ିଛନ୍ତି । ପରବର୍ତ୍ତୀଯୁଗରେ ଓଡ଼ିଆ କାବ୍ୟରେ ସଂଭୋଗାନ୍ତ ନାୟିକାର ଯେପରି ବିଶଦ ଅସ୍ୱାଦ୍ୟ ବର୍ଣ୍ଣନା ଦେଖିବାକୁ ମିଳେ, କବି ଏଠାରେ ତାହା ନ କରି କେବଳ ଇଙ୍ଗିତ ମାତ୍ର ଦେଇଛନ୍ତି ।

**ସଂଳାପ—**

ବର୍ତ୍ତମାନ ସାହିତ୍ୟରେ ଗଳ୍ପ, ଉପନ୍ୟାସ ଓ ନାଟକଗୁଡ଼ିକରେ ସଂଳାପ ବା କଥୋପକଥନ ଉଚ୍ଚ କଳାଗତ ବୈଶିଷ୍ଟ୍ୟର ପରିଚୟ ଦେଇଥାଏ । ବାସ୍ତବ ଜୀବନର ସୂକ୍ଷ୍ମ ଦର୍ଶନ ଉପରେ ସଂଳାପ ସଂଯୋଜିତ ନ ହେଲେ ତାହାର ସ୍ୱାଭାବିକତା ହାନି ଘଟେ । ବାସ୍ତବ ଜୀବନକୁ ଲକ୍ଷ୍ୟ କଲେ ଦେଖୁଁ, ସଂଳାପ ବା କଥୋପକଥନରେ ବ୍ୟକ୍ତି ବିଶେଷର ସମୁଦାୟ ଅନ୍ତର ଲୋକର ଛବି ଉନ୍ମୋଚିତ ହୋଇଥାଏ । କାବ୍ୟ ନାଟକରେ କବିମାନେ ଚରିତ୍ର ମୁଖରେ କଥୋପକଥନ ଅଙ୍କନ କଲାବେଳେ ଏଥିପ୍ରତି ଅବହିତ ଥାଆନ୍ତି । କୌଣସି ଚରିତ୍ରମୁଖରେ ପଦଟିଏ କଥା, ତାର ପ୍ରକୃତିର ସମସ୍ତ ବୈଶିଷ୍ଟ୍ୟ ଆଉ ପରିବେଶର ସମସ୍ତ ଇଙ୍ଗିତ ଯଦି ବହନ ନ କରେ— ତେବେ ସେଥିରେ ସଂଳାପର କଳା ଫୁଟେ ନାହିଁ । ସାର୍ଥକ ସଂଳାପ ଯୋଜନାର କୁଶଳତା ଏ କ୍ଷେତ୍ରରେ କବିଠାରୁ ଆଶା କରିବା ସୁଦୂର ପରାହତ ହୋଇ ପଡ଼େ । ଏଭଳି ସୂକ୍ଷ୍ମାତିସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ଗଭୀର ଅନୁଭୂତି ଉପରେ ପ୍ରତିଷ୍ଠିତ ଜୀବନ୍ତ ସଂଳାପ ପ୍ରାଚୀନ ଓଡ଼ିଆ ସାହିତ୍ୟରେ କେତେକ ପରିମାଣରେ ବିରଳ । ତଥାପି ଯଦି ଏଥିଲାଗି ଅନୁସନ୍ଧାନ କରିବାକୁ ହୁଏ, ତେବେ ଆମକୁ ପୁରାଣ କବିଙ୍କ ଉପରେ ଦୃଷ୍ଟି ପକାଇବାକୁ ହେବ । ଏହାର ବହୁ ସାର୍ଥକ ଦୃଷ୍ଟାନ୍ତ ବଳରାମ ଦାସଙ୍କର ଦାଣ୍ଡିରାମାୟଣରୁ ଅଭାବ ହେବ ନାହିଁ ।

ଦାଣ୍ଡିରାମାୟଣରେ ସଂଳାପ ଏକ ବଡ଼ ଅଂଶ ଗ୍ରହଣ କରିଅଛି । ଏଥିର କଥୋପକଥନଗୁଡ଼ିକ ଯେଉଁଭଳି ନାଟକୀୟ, ସେଇଭଳି ସ୍ୱାଭାବିକ । କବି ପାତ୍ରମାନଙ୍କୁ ଏଭଳି ପରିବେଶ ଭିତରେ ଏଥିଲାଗି ଉପସ୍ଥିତ କରାଇ

ଅଛନ୍ତି ଯେ, ସମୁଦାୟ ଦୃଶ୍ୟ ଅଭିନୟ ଭଳି ପାଠକର ଦୃଷ୍ଟି ଆଗରେ ଜୀବନ୍ତ ହୋଇଉଠେ । ପୁଣି ଅବସ୍ଥା ଭେଦରେ ଯେଉଁ ଚରିତ୍ର ମୁଖରେ ଯେପରି କଥା ପ୍ରକାଶ ପାଇବା ସ୍ୱାଭାବିକ, ସେଇ ଭଳି ତାହା ସଂଯୋଜିତ ହୋଇଅଛି । ଏଥିଲାଗି ଭକ୍ତକବିଙ୍କ ରାମାୟଣ ପାଠ କଲାବେଳେ କେବଳ କାବ୍ୟ ପାଠର ଆନନ୍ଦ ମିଳେ ନାହିଁ, ଜୀବନର ଆସ୍ୱାଦ ମିଳେ । ସେଥିଲାଗି ତାହା ଲୋକଙ୍କରେ ଏତେ ପ୍ରିୟ ।

ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ନ ହେଲେ ଦାଣ୍ଡିରାମାୟଣରୁ ସାର୍ଥକ ସଂଳାପ ସବୁର ଦୃଷ୍ଟାନ୍ତ ଦେଇ ଶେଷ କରି ହେବ ନାହିଁ । ନମୁନା ସ୍ୱରୂପ ଗୋଟିଏ ଦୁଇଟିର ଉଲ୍ଲେଖ କଲେ ଯଥେଷ୍ଟ ହେବ । ପ୍ରଥମରୁ ଅଯୋଧ୍ୟାକାଣ୍ଡରେ ଦଶରଥ ଓ ବିଶ୍ୱାମିତ୍ରଙ୍କ କଥୋପକଥନ ଦେଖାଯାଉ (୧) । ରାକ୍ଷସମାନଙ୍କଠାରୁ ଯାଗ ରକ୍ଷା କରିବାକୁ ରାମଚନ୍ଦ୍ରଙ୍କୁ ନେବାଲାଗି ବିଶ୍ୱାମିତ୍ର ଆସିଛନ୍ତି । ଏଠାରେ ପ୍ରଥମ ପାତ୍ର ହେଉଛନ୍ତି ଋଷି ବିଶ୍ୱାମିତ୍ର । ସେ ତତ୍ତ୍ୱଦ୍ରଷ୍ଟା । ସାଧାରଣ ଦୁନିଆର ପ୍ରୀତିବନ୍ଧନ, ମାନସିକ ଦୁର୍ବଳତାର ବହୁ ଊର୍ଦ୍ଧ୍ୱରେ ତାଙ୍କର ବିଚରଣ । ଅତି ସାନ ସାନ, ଯେଉଁ ଘଟଣାରେ ସଂସାରୀ ମାନବର ହୃଦୟ ଆନ୍ଦୋଳିତ ହୁଏ, ତାହା ତାଙ୍କୁ ସ୍ପର୍ଶ କରିବା ସମ୍ଭବ ନୁହେ । ତାଙ୍କ ମନ ମେରୁଭଳି ଅଟଳ, ହୃଦୟ ଆକାଶଭଳି ଉଦାର । ଦ୍ୱିତୀୟପାତ୍ର ରାଜା ଦଶରଥ । ସେ ବୃଦ୍ଧ । ସଂସାରର ସ୍ନେହବନ୍ଧନ ଦୁର୍ବଳତାର ସୀମା ଭିତରେ ତାଙ୍କ ଗତି । ଶେଷ ବୟସରେ ପୁତ୍ର ହିଁ ତାଙ୍କର ଆଶା ଓ ଆନନ୍ଦ । ଗଙ୍ଗାଭଳି ଗମ୍ଭୀର ତାଙ୍କର ହୃଦୟ ବାତ୍ସଲ୍ୟ ରସରେ ପରିପୂର୍ଣ୍ଣ । ବାତ୍ୟାତରଙ୍ଗର କ୍ଷୀଣ ଆଘାତରେ ସେ କ୍ଷୋଭପ୍ରବଣ ।

ରାଜ୍ୟର ସମସ୍ତ କୁଶଳବାର୍ତ୍ତା ବୁଝିସାରିବା ପରେ ବିଶ୍ୱାମିତ୍ର ଦଶରଥଙ୍କୁ ତାଙ୍କ ପୁତ୍ରମାନଙ୍କ କଥା ପଚାରିଛନ୍ତି । ସ୍ୱୟଂ ଭଗବାନ ରାମଚନ୍ଦ୍ର ରୂପେ ଜନ୍ମ ହୋଇ ଦଶରଥଙ୍କ ବଂଶ ଉଜ୍ଜ୍ୱଳ କରିଥିବା କଥା ପ୍ରକାଶ କରିସାରି, ଯାଗ ନାଶକାରୀ ରାକ୍ଷସମାନଙ୍କୁ ନିଧନ କରିବାଲାଗି ରାମଚନ୍ଦ୍ରଙ୍କୁ ନିଜ ସାଙ୍ଗରେ ନେବାକୁ ଚାହିଁଛନ୍ତି । ଦଶରଥ ଏ ସବୁ କିଛି ବୁଝିପାରି ନାହାନ୍ତି । ଧାଇର ଦୁଧରେ ବାରବରଷର ଯେଉଁ ବାଳୁତ ରାମର ପିଣ୍ଡ ବଢ଼ିଛି, ସେ କପରି ରାକ୍ଷସ ନିଧନ କରିବ, ତାହା ଦଶରଥଙ୍କୁ ବିଚଳିତ

(୧) ଅଯୋଧ୍ୟାକାଣ୍ଡ, ପୃ:୬୫-୬୭ ।

କରନ୍ତି । ଏହା ତାଙ୍କୁ ଗୋଟିଏ ବିପରୀତ କଥା ବୋଲି ମନେ ହୋଇଛି । ବଳଦ ବିନା ଶଗଡ଼ ଟାଣେ, କିନ୍ତୁ ଶଗଡ଼ରେ ବଳଦଙ୍କୁ ବନ୍ଧିବା ଭଳି ଏ କଥା ତାଙ୍କୁ ଲାଗିଛି । ଏହାପରେ ସେ ମୁନିଙ୍କୁ ଲକ୍ଷ୍ୟକରି କହୁଛନ୍ତି, ଖେଳିବା, ଭୁଞ୍ଜିବା ବ୍ୟତୀତ ଦ୍ୱିତୀୟ କଥା ଯେଉଁ ବାଳୁତ ରାମ ଜାଣେ ନାହିଁ, ସେ ରାକ୍ଷସମାନଙ୍କ ସହିତ ଲଢ଼ିବା କଥା କିପରି ବିଶ୍ୱର ହିତାକାଂକ୍ଷୀ ବିଶ୍ୱାମିତ୍ରଙ୍କ ମୁଖରୁ ବାହାରୁଛି ? ତା'ପରେ ସେ ଅନୁଶୋଚନା କରିଛନ୍ତି—ହୁଏତ ସେ ନିଜେ ହତଭାଗ୍ୟ । ଭାଗ୍ୟଦୋଷରୁ ବିରହୀକୁ ଚନ୍ଦ୍ର ଶୀତଳତା ଦିଏ ନାହିଁ । ଯେଉଁ ମୁନିଙ୍କର ବଚନ-କର୍ମରେ ସମସ୍ତ ବିଶ୍ୱଲାଗି ମଙ୍ଗଳ ଭାବନା ନିହିତ, ହୁଏତ ନିଜର ଦୁର୍ଭାଗ୍ୟଲାଗି ଦଶରଥଙ୍କୁ ତାହା ଅହିତ ହେଉଛି । 'ରାଜାଙ୍କର ଏଇ କାତରୋକ୍ତି ବିଶ୍ୱାମିତ୍ର ଗ୍ରହଣ କରିନାହାନ୍ତି । ଅଧିକନ୍ତୁ ରାକ୍ଷସମାନଙ୍କୁ ଦଶରଥ ନିଜେ ବା ଆଉ କେହି ମାରିବା ସମ୍ଭବ ନୁହେ, କେବଳ ରାମଚନ୍ଦ୍ର ସମର୍ଥ ହେବେ ବୋଲି କହୁଛନ୍ତି । ନିଆଁରେ ପାଣି ପକାଇ ତାକୁ ନ ନିବର୍ତ୍ତାଇଲେ, ସେ ଯେପରି କ୍ଷଣକେ ସଂସାର ଦହିବାପାଇଁ ଶିଖା ବିସ୍ତାର କରେ, ଦୁଷ୍ଟ ଅସୁରମାନଙ୍କୁ ରାମଚନ୍ଦ୍ର ନିଧନ ନ କଲେ ସେଇପରି ସୃଷ୍ଟି ରହିବ ନାହିଁ । ଦୈତ୍ୟମାନେ ଜ୍ୱଳନ୍ତ ହୁତାଶନ ହେଲେ, ରାମଚନ୍ଦ୍ର ନିଜେ ସାଗର । ତେଣୁ ରାମଚନ୍ଦ୍ରଙ୍କୁ ଛାଡ଼ିଦେବାକୁ ଦଶରଥଙ୍କୁ କେବଳ ଅନୁରୋଧ ନୁହେ, ଆଦେଶ କରିଛନ୍ତି । ରାମଚନ୍ଦ୍ରଙ୍କୁ ନ ଛାଡ଼ିଲେ ଅଯୋଧ୍ୟା ଭସ୍ମ କରିବେ ବୋଲି ଧମକ ଦେଇଛନ୍ତି । ଏଇଠି କବି ଦଶରଥଙ୍କର ଯେଉଁ ଚିତ୍ର ଦେଇଛନ୍ତି, ତାହା ଭାଷାଶିଳ୍ପରେ ଏକ ଚିରନ୍ତନ ସୃଷ୍ଟି । ବିଶ୍ୱାମିତ୍ରଙ୍କ ଏଇ କଠୋର ବାକ୍ୟ ପରେ ବଶିଷ୍ଠଙ୍କ ପ୍ରବୋଧବାଣୀ ବି ତାଙ୍କୁ ଶାନ୍ତ କରିପାରି ନାହିଁ । ସେ ଆଉ ବିଶ୍ୱାମିତ୍ରଙ୍କ ଆଡ଼କୁ ମୁହଁ ଟେକି ଚାହିଁପାରି ନାହାନ୍ତି । ରାମଚନ୍ଦ୍ରଙ୍କୁ ତାଙ୍କ କୋଳରେ ବସାଇ କହୁଛନ୍ତି—"ତୁ ବାଳୁତ ପୁଅ । ମୁଁ ତୋର ବାପ । ମୋର ଏ ଶେଷ ବୟସରେ ତୁ ଯୁଦ୍ଧକୁ ଯାଅ ବୋଲି କିପରି କହିବି" । ଏତିକିରେ ତାଙ୍କ ଆଖି ଅଶ୍ରୁରେ ପୂରି ଉଠିଛି । କଣ୍ଠ ରୁଦ୍ଧ ହୋଇ ଆସିଛି । ଚନ୍ଦ୍ର ସୂର୍ଯ୍ୟଙ୍କୁ ସାକ୍ଷୀ କରି, ଧର୍ମଦେବତାଙ୍କ ଉପରକୁ ଦୃଷ୍ଟିରଖି ସେ ମାତ୍ର ଗୋଟିଏ ପଦ ଉଚ୍ଚାରଣ କରିଛନ୍ତି—"ହେ ଧର୍ମ-ଦେବତା ! ରଣେ ବଣେ ମୋ ବାଳୁତ କୁମରକୁ ରକ୍ଷାକର ।" ଏହାପରେ କୋଳ ଛାଡ଼ି ପିତାଙ୍କ ନୟନରୁ ଲୁହ ପୋଛିବାଲାଗି ଉଠି ପଡ଼ିଛନ୍ତି ରାମଚନ୍ଦ୍ର । ସିଂହ, ସର୍ପ ଓ କ୍ଷତ୍ରିୟଙ୍କୁ ସଂସାରରେ ଲୋକେ ବଡ଼ ସାନ ବିଚାରନ୍ତି ନାହିଁ । ସେ କ୍ଷତ୍ରିୟ ସନ୍ତାନ, ବୟସରେ ସାନ ବୋଲି କଣ ବୀରତ୍ୱରେ ମହାନ୍ ନୁହନ୍ତି ? ପିତାଙ୍କ ହୃଦୟରେ ସାହସ ସଂଚାରପାଇଁ ଉଦ୍ୟମ କରିଛନ୍ତି ।

ଏଇ ପ୍ରସଙ୍ଗ ଶେଷ କରିବା ପୂର୍ବରୁ ଆଉ ଗୋଟିଏ ସାର୍ଥକ ସଂଳାପର ଦୃଷ୍ଟାନ୍ତ ଦିଆ ଯାଇପାରେ । ତାହା ହେଉଛି ଅନ୍ତଃପୁରରେ କୈକେୟୀ ଓ ମନ୍ଥରାର କଥୋପକଥନ (୧) । ନଗରରେ ରାମଚନ୍ଦ୍ରଙ୍କର ଅଭିଷେକ ଆୟୋଜନ ଦେଖି, ରାମ ବନବାସର ସମସ୍ତ ଚକ୍ରାନ୍ତ ମନ ଭିତରେ ଫାନ୍ଦ ମନ୍ଥରା ଫେରିଛି । କୈକେୟୀଙ୍କୁ ଦେଖିବା ମାତ୍ରେ ବିଷାଦର ଛଳନା କରି ମୂର୍ଚ୍ଛା ମାଡ଼ି ପଡ଼ି ଯାଇଅଛି । ପରେ କୈକେୟୀଙ୍କଠାରୁ ଅଭୟ ପାଇ, ଅନ୍ତର ଖୋଲି, ଦେଖି ଆସିଥିବା ରାମ ଅଭିଷେକର ଆୟୋଜନମାନ ବର୍ଣ୍ଣନା କରିଛି । ସେ ମନେ କରିଥିଲା ଯେ, ରାମଙ୍କୁ ଯୌବରାଜ୍ୟରୁ ବିରତ କରିବା ପାଇଁ କୈକେୟୀ ବି ତାହାରି ଭଳି ଭାବୁଥିବ । କିନ୍ତୁ ତାର ଆଶା ବିଫଳ ହୋଇଛି । ରାମଚନ୍ଦ୍ରଙ୍କ ଅଭିଷେକ ବାର୍ତ୍ତା ଆଣି ଦେଇଥିବାରୁ ଖୁସିରେ, କୈକେୟୀ ନିଜ ଗଳାରୁ ରତ୍ନହାର କାଢ଼ି ମନ୍ଥରା ଗଳାରେ ଲମ୍ବାଇ ଦେଇଛନ୍ତି । ଏଥିରେ ଚକିତ ହୋଇ, ମନ୍ଥରା ନିଜର କୁଚକ୍ରାନ୍ତରେ କୈକେୟୀଙ୍କୁ ଦୀକ୍ଷିତ କରିବା ଲାଗି ଉଦ୍ୟତ ହୋଇ, ଦୈବ ଅନୁଗ୍ରହରୁ ଶେଷରେ ସଫଳ ହୋଇଛି । ଏଠାରେ କହିବା ବାହୁଲ୍ୟ, ଏଇ ସଂକ୍ଷିପ୍ତ ସଂଳାପ ଭିତରେ, କବି କୈକେୟୀ ଚରିତ୍ରକୁ ଯେଉଁ ପରିମାଣରେ ମହତ୍ତ୍ୱ ଦେଇଛନ୍ତି, କୁଚକ୍ରୀ ଓ କଳହପ୍ରିୟା ମନ୍ଥରା ଚରିତ୍ରକୁ ପରିସ୍ଫୁଟ କରିବା ଲାଗି, ସେଇଭଳି ପରିବେଶ ସୃଷ୍ଟି କରିପାରି ଅଛନ୍ତି । ପାଠକ ମନରେ ଅବଶ୍ୟକ ନାଟକୀୟ କୌତୂହଳ ଜଗାଇ, ସଂଳାପ ନିପୁଣତାର ପରିଚୟ ଦେଇଅଛନ୍ତି । ଏଇଭଳି ସଂଳାପର ବହୁ ଦୃଷ୍ଟାନ୍ତ ମଧ୍ୟରୁ ଶ୍ରୀରାମ ଓ ଗୁହକର ଉକ୍ତି, ମଧୁଶଯ୍ୟା ଘରେ ସୀତା ଓ ରାମଙ୍କ ଆଳାପ, ଶିବ ଓ ବିଷ୍ଣୁଙ୍କ ପୌରାଣିକ ପରିଚୟ ଅଂଶକୁ ବାଦ୍‌ଦେଲେ ରାମ ଓ ପର୍ଶୁରାମଙ୍କ ବାଦାନୁବାଦ, ରାମ ଓ ସୁଗ୍ରୀବଙ୍କର ସମଦଶା ବର୍ଣ୍ଣନା, ରାମଚନ୍ଦ୍ର ଓ ଶରାହତ ବାଳିର କଥୋପକଥନ ପ୍ରସଙ୍ଗ ଉଲ୍ଲେଖଯୋଗ୍ୟ । ଯଥାକ୍ରମେ ବନ୍ଧୁତ୍ୱ, ପ୍ରେମ, ବୀରତ୍ୱ, ସୌହାର୍ଦ୍ଦ୍ୟ ଓ କରୁଣାର ଯଥାର୍ଥ ଅଭିବ୍ୟକ୍ତି ଏଇ ସଂଳାପ-ଗୁଡ଼ିକରେ ଫୁଟିଛି । ବ୍ୟଙ୍ଗ ଓ ବ୍ୟଞ୍ଜନାରେ ଏସବୁ ଜୀବନ୍ତ । ଭକ୍ତ କବିଙ୍କ ଲେଖନୀର ଏଇଗୁଡ଼ିକ ସଫଳ ସୃଷ୍ଟି ।

---

(୧) ଅଯୋଧ୍ୟା, ପୃ: ୨୪—୨୭ ।

## ଅଳଂକରଣ ଶୈଳୀ—

ପ୍ରକୃତ ଅଳଂକାର କାବ୍ୟର ଆତ୍ମାକୁ ଐଶ୍ବର୍ଯ୍ୟଶାଳୀ କରେ; ଶରୀରକୁ ଭାରାକ୍ରାନ୍ତ କରେ ନାହିଁ । ଅଧିକନ୍ତୁ ଯେଉଁ ରଚନାର ଆତ୍ମା ବଳିଷ୍ଠ, ତାର କୋମଳ ବାହ୍ୟରଙ୍ଗ କାରୁକର୍ମର ଅପେକ୍ଷା ରଖେ ନାହିଁ । ଭାବ ଓ ଆଖ୍ୟାନ ବସ୍ତୁହିଁ କାବ୍ୟର ଆତ୍ମା । ଭାବାବର୍ତ୍ତତା ଯେଉଁଠି କ୍ଷୀଣ, ଆଖ୍ୟାନବସ୍ତୁର ଗତି ଯେଉଁଠି ମନ୍ଥର; ସେଇଠାରେ କବି, କାବ୍ୟର ବାହ୍ୟରଙ୍ଗ ଅଳଂକରଣ ଲାଗି ଅବସର ପାଇଥାନ୍ତି । ଦାଣ୍ଡି ରାମାୟଣର କବି ଏପରି ଅବସର ଲୋଡ଼ି ନାହାନ୍ତି । ସ୍ୱଭାବତଃ ଏଥିରେ କୌଣସି ଶବ୍ଦାଳଙ୍କାରର ପ୍ରୟାସ ଦେଖିବାକୁ ମିଳେ ନାହିଁ । ଏହାର ମୁଖ୍ୟ ଅଳଙ୍କାର ହେଉଛି ଅର୍ଥାଳଙ୍କାର । ଭାବ ପ୍ରକାଶରେ ଉତ୍କର୍ଷ ଆଣିବା, ବସ୍ତୁର ସ୍ୱରୂପୋପଲବ୍ଧିରେ ସାହାଯ୍ୟ କରିବା, ଘଟଣା ଓ କ୍ରିୟାକୁ ସ୍ପଷ୍ଟ ଓ ଜୀବନ୍ତ କରିବା ଏଇ ଅଳଙ୍କାରର ଧର୍ମ । ସବୁ ସମୟରେ, ସବୁ ପ୍ରକାର ସାହିତ୍ୟରେ ଏହାର ମୂଲ୍ୟ ଚିରନ୍ତନ ।

କବି ବଳରାମ ଦାସଙ୍କ କୃତିରେ ଅଳଙ୍କରଣ ଶୈଳୀ ଆଲୋଚନା କରିବାବେଳେ ସେହି ଯୁଗର ଓଡ଼ିଆ ଭାଷା ଓ ସାହିତ୍ୟର ବିଶେଷ ସ୍ଥିତିପ୍ରତି ଦୃଷ୍ଟିଦେବା ଆବଶ୍ୟକ । ଏହି ସମୟରେ ପ୍ରାକୃତ ଓଡ଼ିଆ ଭାଷା ସଂସ୍କୃତ କବଳରୁ ମୁକ୍ତିଲଭି ସ୍ୱାଧୀନ ଭାବରେ ଗତି କରିବାକୁ ଆରମ୍ଭ କରିଥାଏ ମାତ୍ର । ଓଡ଼ିଆର ବ୍ୟାସକବି ସାରଳା ଅବଶ୍ୟ ଏ ଦିଗରେ ଆଦ୍ୟ ସରଣୀର ନିର୍ଦ୍ଦେଶ ଦେଇ ସାରିଥାଆନ୍ତି । କିନ୍ତୁ ଏହା ସୁମାର୍ଜିତ ଓ ସୁନିୟନ୍ତ୍ରିତ ହୋଇ ନ ଥିଲା । ତଥାପି ପୁଷ୍ଟି ଓ ବିକାଶ ପଥରେ ଏହାର ଦ୍ରୁତଗତି ଅପ୍ରତିହତ ଥିଲା । ଏହା ଥିଲା ଭାଷାର ଶକ୍ତି ସଞ୍ଚୟର ଯୁଗ । ଭାଷା ଅଧିକ ଧାରଣକ୍ଷମ ହୋଇ ଚାଲିଥିଲା । ପରବର୍ତ୍ତୀ ଯୁଗରେ ଭାଷାରେ ଯେଉଁ ମସୃଣତା ଓ କୋମଳ ପ୍ରବୃତ୍ତି ଦେଖିବାକୁ ମିଳେ, ତାହା ଏହାଠାରୁ ଆଶା କରିବା ସମ୍ଭବ ନ ଥିଲା । ଆପଣାର ସ୍ୱଚ୍ଛନ୍ଦ-ଗତି ଓ ସ୍ୱଭାବ-ସୌନ୍ଦର୍ଯ୍ୟରେ ଏ ଭାଷା ଓ ସାହିତ୍ୟ ବିକଶିତ ହେଉଥିଲା । ଦାଣ୍ଡି ରାମାୟଣର ପ୍ରତିଚ୍ଛବି ଏହାର ପରିଚୟ ଦିଏ ।

ସ୍ୱଭାବ-ସୌନ୍ଦର୍ଯ୍ୟ ହିଁ ବଳରାମ ଦାସଙ୍କ ଉପମା ଓ ରୂପକଳ୍ପର ମୂଳ କଥା । କଥାରେ ଯେପରି ଅନେକ ସମୟରେ ସ୍ୱଭାବ ସୁଲଭ ଅତିରଞ୍ଜନ

ଦେଖାଯାଏ, ଦାଣ୍ଡି ରାମାୟଣରେ ମଧ୍ୟ ସେଇଭଳି ଅନ୍ତରଞ୍ଜନର ସ୍ୱଚ୍ଛନ୍ଦ ପ୍ରୟୋଗମାନ ଦେଖାଯାଏ । ଏହା କିନ୍ତୁ ବସ୍ତୁ, ଭାବ ବା କ୍ରିୟାର ସ୍ୱରୂପୋପଲବ୍ଧିରେ ବ୍ୟାଘାତ ନ ଘଟାଇ, ବରଂ ସହାୟତା କରେ । ଦୃଷ୍ଟାନ୍ତ ସ୍ୱରୂପ, ମେଘନାଦ ପାଚେରୀ ଗୃଳଣି କୋଶ ଉଚ ବୋଲି କହୁ ସାରି, କବି ଯେତେବେଳେ ବର୍ଣ୍ଣନା କରନ୍ତି "ମଞ୍ଚକୁ ହିଁ ସ୍ୱର୍ଗବାଟ ସ୍ୱର୍ଗକୁ ହିଁ ମଞ୍ଚ" ସେତେବେଳେ ଏଇ ଅନ୍ତରଞ୍ଜନ ଭିତରେ ମେଘନାଦ ପାଚେରୀର ଉଚ୍ଚତାର ଏକ ସ୍ପଷ୍ଟ ଧାରଣା ଆମ ମନରେ ଅଙ୍କିତ ହୋଇଥାଏ । ଆଉ ଗୋଟିଏ ଦୃଷ୍ଟାନ୍ତରୁ କବିଙ୍କ ରୂପସୃଷ୍ଟିର ବୈଶିଷ୍ଟ୍ୟ ସ୍ପଷ୍ଟ ହେବ । ରାମଚନ୍ଦ୍ରଙ୍କ ବନବାସ ପରେ ଅଯୋଧ୍ୟାର ପୁର ନାରୀମାନଙ୍କର ଶୋକ ବର୍ଣ୍ଣନା କରିସାରି ଗୋଟିଏ ମାତ୍ର ରୂପକଳ୍ପ ଭିତରେ ସମୁଦାୟ ଅଯୋଧ୍ୟାର ଛବି କବି ପାଠକ ମନରେ ସ୍ପଷ୍ଟ କରି ଦେଇଛନ୍ତି । "ଜଳ ଶୁଖିଲେ ପଦ୍ମବନ ତଳ ପଡ଼ିବା ଭଳି ଅଯୋଧ୍ୟାର ଦଶା ହୋଇଛି" ଏଇ ବର୍ଣ୍ଣନା ଭିତରେ ପ୍ରସ୍ଫୁଟିତ ପଦ୍ମବନ ତୁଲ୍ୟ ରାମଚନ୍ଦ୍ରଙ୍କ ଅଭିଷେକ ପାଇଁ ଉତ୍ସବମତ୍ତ ଅଯୋଧ୍ୟାର ତାଙ୍କ ବନବାସ ପରେ କରୁଣ ଅବସ୍ଥା ଜୀବନ୍ତ ହୋଇଛି । ଏଠାରେ ଏକାଧିକ ଦୃଷ୍ଟାନ୍ତ ଦେଇ କବିଙ୍କ ରଚନାର ବୈଶିଷ୍ଟ୍ୟ ଦେଖାଇବାକୁ ଗଲେ, ଅରଣ୍ୟରେ ପ୍ରବେଶ କଲାଭଳି ହେବ ! ପ୍ରକୃତିଛବି, ସମ୍ଭୋଗ ବର୍ଣ୍ଣନା ଓ ସଂଳାପ ବିଷୟକ ଆଲୋଚନାରେ ପୂର୍ବେ ଏହାର ସୂଚନା ଦିଆଯାଇଛି ।

**ଦାଣ୍ଡି ବୃତ୍ତ—**

ଓଡ଼ିଆ ସାହିତ୍ୟରେ ସାରଳାଦାସ ଏହାର ଆଦ୍ୟସ୍ରଷ୍ଟା । କବି ବଳରାମ ଦାସ ଏହାର ସଫଳ ପ୍ରୟୋଗ କରିଅଛନ୍ତି । ଇତିମଧ୍ୟରେ ଏଇ ବୃତ୍ତର ପ୍ରକୃତି ଓ ବିକାଶ ଯେଣି ଢେର ଢେର ଆଲୋଚନା ହୋଇ ଯାଇଅଛି । କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ, ଏହା ଏକ ପ୍ରକାର ବଚନିକା ଛନ୍ଦ । ଅର୍ଥାତ୍ କହିବା ଭଙ୍ଗୀରେ ବା କଥାରେ କିଞ୍ଚିତ୍ ସ୍ୱର ସଙ୍ଗତ ଦେଲେ ଯାହା ହେବ—ଏ ସେଇଆ । ଏହାର ପ୍ରକୃତିକୁ ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ କହିଛନ୍ତି, "ଲୋକଙ୍କ ଭିତରେ ଗଦ୍ୟକୁ ପଦ୍ୟ କରି, ପଦ୍ୟ ପରି ପଢ଼ିବା ଓ ସେଇପରି ଗାଇବାର ଗୋଟିଏ ଧରଣ ଫୁଟି ଉଠିଲା । ତା ହେଉଛି ଆମ ଦାଣ୍ଡିବୃତ୍ତ" (୧) । ଏହା ବହୁ ପରିମାଣରେ ସତ । କାରଣ ଏଇ ବୃତ୍ତର ପ୍ରତ୍ୟେକ ପାଦର ଗଠନଭଙ୍ଗି ପ୍ରତି ଲକ୍ଷ୍ୟ କଲେ,

(୧) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ—ଦ୍ୱିତୀୟଭାଗ, ପୃ: ୨୨୪ ।

ତାହା ସମ୍ପୂର୍ଣ୍ଣ ଗଦ୍ୟ ଭଳି ମନେ ହୁଏ । ପ୍ରତ୍ୟେକ ପାଦ ସମାନ ଅକ୍ଷର ବିଶିଷ୍ଟ ନୁହେଁ । କେବଳ ପାଦଗୁଡ଼ିକର ଶେଷ ଅକ୍ଷରର ଆଂଶିକ ମେଳ ରହିଛି ( ଏହି ପ୍ରବନ୍ଧରେ ବ୍ୟବହୃତ ବଚ୍ଛି ଦାନ୍ତରୁ ଦୃଷ୍ଟାନ୍ତ ଦ୍ରଷ୍ଟବ୍ୟ ) । ଏହି ଯାହା ପଦ୍ୟର ସୂଚନା । ଏହାକୁ ଗାଇବା ପାଇଁ କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । ପଢ଼ିବା ଲୋକର ବିଶେଷତା ଦେଖାଇବା ପାଇଁ ଏଇଠାରେ ବିଶେଷ ଅବସର ଦିଆ ଯାଇଅଛି । ଆଜି ଆମେ ଯେପରି କଥା ସାହିତ୍ୟ ପଢ଼ୁଥାଉଁ, ସେଇପରି ଯଦି ଏହାକୁ କେହି ସ୍ୱଗତ ଭାବରେ ପଢ଼େ, ତେବେ ନିଶ୍ଚୟ ଏହାର ଅର୍ଦ୍ଧେକ ସୌନ୍ଦର୍ଯ୍ୟ ଅପ୍ରକାଶିତ ରହିଯିବ । ବୋଲିବା ଲୋକର କୁଶଳୀ କଣ୍ଠରେ କେବଳ, ଏହି ଦାଣ୍ଡି ବୃତ୍ତର ସମସ୍ତ ସୌନ୍ଦର୍ଯ୍ୟ ଫୁଟି ଉଠେ । ତେଣୁ ଏଇ ବୃତ୍ତରେ ଲେଖା ପୁରାଣମାନ, ଆମର ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟ ଭଳି କାନରେ ଶୁଣିବା ପାଇଁ ଅଭିପ୍ରେତ ଥିଲା ବୋଲି ମନେ ହୁଏ । ଆଜି ବି ଗାଆଁ ଗହଳରେ ବହୁ ଶ୍ରୋତାଙ୍କ ଆଗରେ ଉଚ୍ଚ କଣ୍ଠରେ ଏଇ ପୁରାଣମାନ ପଢ଼ାଯାଏ । ତାକୁ ଲକ୍ଷ୍ୟ କଲେ ମନେ ହୁଏ, ଯେପରି ଗୋଟିଏ ସ୍ୱଚ୍ଛନ୍ଦ ନିର୍ଝରଣୀ ମୁକ୍ତ ବନ୍ୟ ଛନ୍ଦରେ ଅବାରିତ ଗତିରେ କଳ ନିନାଦ କରି ବହିଯାଉଛି । ଏହା ପଛରେ ସମାଜ ଜୀବନର ଏକ ବିଶେଷ ଭୂମିକା ବିଦ୍ୟମାନ ଥିବାର ଇଙ୍ଗିତ ମିଳେ । ମନେ ହୁଏ, ଯେପରି କେଉଁ ସରଳ ସାବଲୀଳ ଗ୍ରାମ୍ୟ ଜୀବନର ପ୍ରକାଶ ଧାରା ଏଥିରେ ମୁକ୍ତ ଅଭିବ୍ୟକ୍ତି ଲଭିଅଛି ।

ଆଜି ଗାଆଁ ଗହଳରେ ଚୈତିଘୋଡ଼ା ଓ ଭଗତା (ପୁରୀ ଅଞ୍ଚଳର ପାଲୁଆ) ଆଦି ଯେଉଁ ଗୀତ ଗାଆନ୍ତି, ତାହା ଅନେକାଂଶରେ ଦାଣ୍ଡି ବୃତ୍ତ ଭଳି । ପାଲାବାଲାମାନେ ପ୍ରତିପକ୍ଷକୁ ଉତ୍ତର ଦେବାଲାଗି ମୁହଁରୁ ପଦ ଯୋଡ଼ି ଗାଇଲା ବେଳେ ଅବିକଳ ଏଇ ବୃତ୍ତର ବିନିଯୋଗ ଅନେକ ସମୟରେ କରି-ଥାଆନ୍ତି । ଏହାର ସ୍ୱର ବିନ୍ୟାସ ପ୍ରତି ଲକ୍ଷ୍ୟ କଲେ, ଏଥିରେ ଗୁରୁତ୍ୱାର୍ଥ ସ୍ୱରର (Stress accent) କୌଣସି ସୂଚନା ମିଳେ ନାହିଁ । ଏହାର ସ୍ୱର ବିନ୍ୟାସ କୋମଳ (Pitch) ଅଥଚ ସରଳ ଓ ବଳିଷ୍ଠ । କାରଣ ସଙ୍ଗୀତର କୋମଳ ସ୍ୱର ଭିତରେ ଯେଉଁ କୃତ୍ରିମ ଭଙ୍ଗ ବା ବକ୍ରଗତି ଦେଖାଯାଏ, ତାହା ଏଥିରେ ମିଳେ ନାହିଁ । ଏସବୁ ବିଶେଷତାର ବର୍ଣ୍ଣନା ସମ୍ଭବ ନୁହେଁ । ତାହା ଅନୁଭବର ବସ୍ତୁ । ଆମର ଏଇ ସବୁ ଦାଣ୍ଡି ବୃତ୍ତ ଲୌକିକ ବୋଲି ଭିତରୁ ଯେ, ଆତ୍ମପ୍ରକାଶ କରିଅଛି, ଏଥିରେ ସନ୍ଦେହ

ନାହିଁ । ଏହା ପଣ୍ଡିତମାନଙ୍କ ସୃଷ୍ଟି ନୁହେ । ପ୍ରାକୃତ ଜନର ସୃଷ୍ଟି । ଏ ଭାବରେ, ଏହା ଯେପରି ଦାଣ୍ଡିରୁ ଆସି, ସାରଳା ଓ ବଳରାମଙ୍କ ଭଳି କୁରଦୃଷ୍ଟା ସ୍ରଷ୍ଟାଙ୍କ ଲେଖନୀ ସଂଯୋଗରେ ଆମ ସାହିତ୍ୟର କୋଠ ସମ୍ପତ୍ତି ହୋଇ ପାରିଛି । ଜନସାଧାରଣଙ୍କ ଭିତରେ ବିପୁଳ ଭାରତୀୟ ଚିନ୍ତାର ପ୍ରଚାର ଲାଗି ସାର୍ଥକ ବାହନ ହୋଇପାରିଛି । ଏ ଆମ ଛନ୍ଦସାହିତ୍ୟର ଗୌରବ । ଆମ ଜାତିର ମୂକ ଅତୀତ ଆତ୍ମାର ପ୍ରାଣପ୍ରାଚୁର୍ଯ୍ୟ ଏବେ ବି ଏହା ଭିତରେ ଜୀବନ୍ତ ରହିଛି ।

**କବିଙ୍କ ବ୍ୟକ୍ତିତ୍ୱ—**

ବଳରାମ ଦାସଙ୍କ ରାମାୟଣ ବ୍ୟକ୍ତିକ ( Subjective ) ରଚନା ନୁହେ । ଏକଥା ସତ, ଦାଣ୍ଡି ରାମାୟଣରେ କବି ଆପଣା ସମୟର ପରମ୍ପରା କ୍ରମରେ ପ୍ରତିଷ୍ଠିତ ଧର୍ମଧାରଣା, ସମାଜ ସଂହତି ଓ ଲୋକ ବିଶ୍ୱାସ ଆଦିଠାରୁ ସ୍ୱତନ୍ତ୍ର ଭାବରେ ବିଚାର କରି ହେବାଭଳି କୌଣସି ମତବାଦର ଉଲ୍ଲେଖ କରି ନାହାନ୍ତି । ଅଧିକନ୍ତୁ ନିଜ ମହାଗ୍ରନ୍ଥର ପ୍ରତିଛନ୍ଦରେ ସେ ଆପଣା ଯୁଗର ବ୍ୟାଖ୍ୟା କରିଅଛନ୍ତି । ଯେଉଁ ମାନବ ଗୋଷ୍ଠୀ ଓ ପରିବେଶ ଭିତରେ ସେ ବାସ କରୁଥିଲେ, ତାର ମୂର୍ତ୍ତି ପ୍ରତୀକ ରୂପେ ଆପଣା ଗ୍ରନ୍ଥରେ ସେ ଆତ୍ମ-ପ୍ରକାଶ କରିଛନ୍ତି । ଜୀବନର ଦୋଷ ଦୁର୍ବଳତା, ପାପପୁଣ୍ୟ, ଆଶା ଆକାଂକ୍ଷା ଘେନି ଅଗଣିତ ମାନବ ପୃଥିବୀରେ ଜନ୍ମନ୍ତି । ସମସ୍ତେ ନିଜର ମନକଥା କହି ପାରନ୍ତି ନାହିଁ । ହୃଦୟର ମୂକ ବାଣୀକୁ ରୂପ ଦେଇ ପାରନ୍ତି ନାହିଁ । କିନ୍ତୁ ଆତ୍ମା ଅମର । ସେମାନଙ୍କ ଅମର ଆତ୍ମାର ବାଣୀ ଜଣେ ଜଣେ ମହା-ପୁରୁଷଙ୍କ ଅମଳିନ ବ୍ୟକ୍ତିତ୍ୱର ଦୀପଶିଖା ଭିତରେ ଆପଣାର ପ୍ରକାଶ ଖୋଜି ପାଏ । ବଳରାମ ଦାସଙ୍କ ବ୍ୟକ୍ତିତ୍ୱ ଏହିଭଳି ଏକ ଅମଳିନ ଦୀପଶିଖା । ତାର ଜ୍ୱଳନ ଶାଶ୍ୱତ । ତାର ପ୍ରକାଶ ବହୁ ବିସ୍ତୃତ । ଯେତେବେଳେ ଏହା ବିନୟର ଅବରୋହଣ ପଥରେ ଗତି କରିଛି—ସେତେବେଳେ ତାହା କ୍ଷୁଦ୍ରତମ ଅଣୁ ସହିତ ଅଣୁ ହୋଇଯାଇଛି । ଆତ୍ମବିଶ୍ୱାସର ଆରୋହଣ ପଥରେ ଏହି ବ୍ୟକ୍ତିତ୍ୱର ଚୂଡ଼ା ମର୍ତ୍ତ୍ୟରୁ ଉଠି ସ୍ୱର୍ଗ ଛୁଇଁଛି । ଯେତେ-ବେଳେ ଏହି ବ୍ୟକ୍ତିତ୍ୱ, ବିସ୍ମୟକର ହିମାଳୟ ରୂପେ ଦଣ୍ଡାୟମାନ ହୋଇ ଏ ଜାତିକୁ ସମୃଦ୍ଧିର ବାଣୀ ଶୁଣେଇଛି । ଏହା ଧାରରେ ବିସ୍ତୃତ ଶାସ୍ତ୍ରଜ୍ଞାନ

ଓ ଲୋକ ଜୀବନର ନିବିଡ଼ ପରିଚୟ ଭକ୍ତକବି ବଳରାମ ଦାସଙ୍କର ପ୍ରଧାନ ବିଶେଷତ୍ୱ ।

## ମହାକାବ୍ୟର ଲକ୍ଷଣ—

ବହୁଶତ ବର୍ଷଧରି ଅଗଣିତ ଜନ ସାଧାରଣରେ ପ୍ରତିଷ୍ଠା ଓ ଲୋକପ୍ରିୟତା ସହଜରେ ଦାଣ୍ଡି ରାମାୟଣର ସଫଳତା ପ୍ରତିପାଦନ କରେ । ସାହିତ୍ୟିକ ବିଚାରରେ ଏଇ ସାଫଲ୍ୟର ଅବଧାରଣା କରିବାପାଇଁ କେହି ହୁଏତ ଏଥିରେ ପୁରାଣ ପ୍ରକାଶର ଧାରା ଅନୁସନ୍ଧାନ କରି ପାରନ୍ତି, ଅଥବା ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ସୃଷ୍ଟ ମହାକାବ୍ୟଗୁଡ଼ିକର ପାଖରେ ତଉଲି ପାରନ୍ତି । ଏ ଭାବରେ ବିଚାର କଲେ ଦାଣ୍ଡି ରାମାୟଣ ଓ ଏହାର ମହାକବିଙ୍କୁ ନେଇ ତର୍କର ବହୁ ସାମଗ୍ରୀ ମିଳିବ । କିନ୍ତୁ ସହଜ ଓ ସ୍ୱାଭାବିକ ଭାବରେ ଏଇ ମହାକବିଙ୍କ ମହତ୍ତ୍ୱ ଉପଲବ୍‌ଧିର ପନ୍ଥା ଟିକିଏ ଭିନ୍ନ । ଏଠାରେ ଇଂରେଜ କବି ଶେଲିଙ୍କର ଗୋଟିଏ ଉକ୍ତି ସ୍ମରଣୀୟ । ତାଙ୍କ ମତରେ, "ଯାହାଙ୍କର ସୃଜନୀଶକ୍ତି ନିଜ ଜାତି ଓ କାଳର ଜ୍ଞାନ, ମାନସିକ ବୃତ୍ତି, ଧର୍ମ, ଚଳଣି, ଭାବଧାରା, ବିଶ୍ୱାସ ଓ ଅଭିରୁଚିକୁ ଅଭିବ୍ୟକ୍ତ ଦେଇପାରେ ସେଇ ପ୍ରକୃତ ମହାକାବ୍ୟର କବି"(୧) । ଯଦି ନିଜ ଜାତି ଓ କାଳକୁ ଗ୍ରହଣ କରି ନ ଥାନ୍ତି, କବି ତେବେ ତାଙ୍କର ଏଇ ଅଭିବ୍ୟକ୍ତ ପ୍ରତ୍ୟକ୍ଷ ହୋଇ ପାରିବ ନାହିଁ । ତାହା ବିଶୁଦ୍ଧ, ସ୍ୱାଭାବିକ ନ ହୋଇ କ୍ଷଣା ଅଧିକେ କୃତ୍ରିମ ହୋଇ ପଡ଼ିବ । ଏଇ ଦୃଷ୍ଟିରେ ବିଚାର କରି ପାଶ୍ଚାତ୍ୟ ଦୃଷ୍ଟାନ୍ତରୁ ଶେଲି ମାତ୍ର ତିନିଜଣଙ୍କୁ ପ୍ରଥମ ଶ୍ରେଣୀର ମହାକବି ରୂପେ ଗ୍ରହଣ କରିଅଛନ୍ତି । ସେମାନେ ହେଉଛନ୍ତି—ହୋମର, ଦାନ୍ତେ ଓ ମିଲ୍‌ଟନ୍ । ଏମାନଙ୍କ ଅମର କୃତିରେ ଯଥାକ୍ରମେ ଖ୍ରୀଷ୍ଟ ହଜାରେ ବର୍ଷ ପୂର୍ବର ଗ୍ରୀସ୍, ମଧ୍ୟଯୁଗର ଇଟାଲି ଓ ପ୍ରୋଟେଷ୍ଟାଣ୍ଟ ଯୁଗର ଇଂଲଣ୍ଡ ଆତ୍ମପ୍ରକାଶ କରିଅଛି । ଏଇ ଭାବରେ ଦେଖିଲେ ବ୍ୟାସ ଓ ବାଲ୍ମୀକି ଭାରତୀୟ ସାହିତ୍ୟ ଜଗତରେ ପ୍ରଥମ ଶ୍ରେଣୀର ମହାକବି । ଓଡ଼ିଆ ସାହିତ୍ୟ ଦୃଷ୍ଟାନ୍ତରେ ଦେଖିଲେ ସାରଳା ଓ ବଳରାମ ଏମାନଙ୍କର ସମସ୍ଥାନୀୟ । ଏଠାରେ ଆମର ଆଲୋଚ୍ୟ ମହାକବି ବଳରାମ ଦାସଙ୍କ କୃତିରେ ଦେଶ ଓ କାଳର ପ୍ରତ୍ୟକ୍ଷ

---

(୧) A Syllabus of Poetry—page, 106—107.

ପ୍ରମାଣ ଯେ ଘଟିଛି, ସେ କଥା ଆଉ ଅଧିକ କହିବା ପ୍ରୟୋଜନ ନାହିଁ । ମଧ୍ୟଯୁଗୀୟ ଓଡ଼ିଆର ଅଂଶିକ ପରିଚୟ ଦିଏ ତାର କାରୁକାମ ମନ୍ଦିର, ମାଳା ଓ ଶିଳାଶିଳ୍ପ । କିନ୍ତୁ ତାର ସଂପୂର୍ଣ୍ଣ ପରିଚୟ ମିଳେ, ତାହାର ସାହିତ୍ୟରୁ । ଏଭଳି ତାହାର ସାହିତ୍ୟ ମଧ୍ୟରେ ଦାଣ୍ଡି ରାମାୟଣ ଅନ୍ୟତମ ସଫଳ ସୃଷ୍ଟି । ଏହାର ନିବେଦନ ସାର୍ବଜନୀନ ଓ ଚିରନ୍ତନ । ଏହାର ସ୍ରଷ୍ଟା ବଳରାମ ଦାସ, ଅମର ଚିରବନ୍ଦ୍ୟ ତାହାର ମହାକବି ।

---

# ରାମ ଉପାସନା *

ବର୍ତ୍ତମାନ ଭାରତବର୍ଷର ବହୁ ଅଞ୍ଚଳରେ ରାମଚନ୍ଦ୍ରଙ୍କର ଉପାସନା ଦେଖାଯାଏ । ସେ ପରମବ୍ରହ୍ମଙ୍କ ଅବତାର ରୂପେ ଗୃହୀତ । ତେବେ ବିଷ୍ଣୁ, ଶିବ ଆଦି ଦେବତାମାନଙ୍କ ପାଇଁ ଦେଶର ଚତୁର୍ଦ୍ଦିଗରେ ଯେପରି ଅସଂଖ୍ୟ ମନ୍ଦିର ଦେଖାଯାଏ, ରାମଙ୍କ ଲାଗି ସେଭଳି ଦେଖାଯାଏ ନାହିଁ । ଏକାଦଶ ଶତକ ପର୍ଯ୍ୟନ୍ତ ରାମଙ୍କ ମୂର୍ତ୍ତି ବା ମନ୍ଦିରର କୌଣସି ସୂଚନା ଭାରତବର୍ଷର ସ୍ଥାପତ୍ୟ ଶିଳ୍ପରେ ଏକାନ୍ତ ବିରଳ ।

ମହାଭାରତ, ପ୍ରାଚୀନ ପୁରାଣ ଓ କାବ୍ୟରେ ରାମଚନ୍ଦ୍ରଙ୍କୁ ବିଷ୍ଣୁଙ୍କ ଅବତାର ରୂପେ ଗ୍ରହଣ କରାଯାଇଥିବାର ସୂଚନା ମିଳେ । ମହାଭାରତର ନାରାୟଣୀୟ ଉପାଖ୍ୟାନରେ ବରାହ, ନୃସିଂହ, ବାମନ, ଭାର୍ଗବ ରାମ, କୃଷ୍ଣ ବାସୁଦେବ ଆଦି ଅବତାରଙ୍କ ମଧ୍ୟରେ ଦାଶରଥି ରାମଙ୍କୁ ଦେଖିବାକୁ ମିଳେ । ଏହାପରେ ଯେଉଁ ପୁରାଣମାନଙ୍କରେ ଦଶଅବତାର ବା ବାଇଶି ଅବତାର ଆଦି ପ୍ରସଙ୍ଗର ଚର୍ଚ୍ଚା ହୋଇଅଛି, ସେଥିରେ ଦାଶରଥି ରାମ ସ୍ଥାନ ପାଇଅଛନ୍ତି । ରାମଚନ୍ଦ୍ର ଅବତାର ରୂପେ ଗୃହୀତ ହୋଇଥିବାର ସୂଚନା ବାଲ୍ମୀକି ରାମାୟଣରୁ ମଧ୍ୟ ମିଳେ । ତେବେ ଏହି ଅଂଶ ପ୍ରକ୍ଷିପ୍ତ ବୋଲି ଅନୁମିତ ହୋଇଥାଏ । ରାମଚନ୍ଦ୍ରଙ୍କୁ ଅବତାର ରୂପେ କେବେ ଗ୍ରହଣ କରାଗଲା, ଏ ସବୁଥିରୁ ତାହା ନିର୍ଦ୍ଦିଷ୍ଟ ରୂପେ କଳନା କରିବା ସମ୍ଭବ ନୁହେଁ । ରାମଙ୍କ ଅବତାର ସମ୍ବନ୍ଧରେ ଏସବୁ ସୂଚନା ମାତ୍ର । ରଘୁବଂଶର ଦଶମ ଅଧ୍ୟାୟରେ କ୍ଷୀରାବ୍ଧିଶାୟିତ ବିଷ୍ଣୁ ରାମଚନ୍ଦ୍ର ରୂପେ ଅବତାର ଗ୍ରହଣ କରିଥିବା କଥା ବିଶଦ ଭାବରେ କାଳିଦାସ ବର୍ଣ୍ଣନା କରିଅଛନ୍ତି । ଅବତାର ରୂପେ ରାମଚନ୍ଦ୍ର ପ୍ରତିଷ୍ଠିତ ହୋଇଥିବାର ଏଥିରୁ ମନେ ହୁଏ ।

୧୦୧୪ ଖ୍ରୀ: ଅ: ରେ ଜୈନ ଦିଗମ୍ବର ଅମିତଗତି "ଧର୍ମପରୀକ୍ଷା" ନାମରେ ଏକ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏଥିରେ ସେ ରାମଙ୍କୁ ସର୍ବଜ୍ଞାତା, ସର୍ବବ୍ୟାପୀ, ସୃଷ୍ଟି ପାଳକ ରୂପେ ବର୍ଣ୍ଣନା କରିଛନ୍ତି । ପଞ୍ଚମ ଶତକର

---

* ସାର୍ ରାମକୃଷ୍ଣ ଭଣ୍ଡାରକରଙ୍କ ତଥ୍ୟର ଅବଲମ୍ବନରେ ଲିଖିତ ।

ନିକଟବର୍ତ୍ତୀ ରଚନା ବାୟୁପୁରାଣ ପୂର୍ବରୁ ରାମ ଅବତାରର ସ୍ପଷ୍ଟ ବର୍ଣ୍ଣନା ବିରଳ । ଖ୍ରୀଷ୍ଟପୂର୍ବାବ୍ଦରୁ ରାମଚନ୍ଦ୍ର ଅବତାର ରୂପେ ଗୃହୀତ ହୋଇଥିବାର ମନେ ହୁଏ ନାହିଁ । ପତଞ୍ଜଳିଙ୍କ ଲେଖାରେ, କୌଣସି ପ୍ରାଚୀନ ଅଭି-ଲେଖରେ ଏପରି କି ଅମର ସିଂହଙ୍କ ଅମରକୋଷରେ ମଧ୍ୟ ବ୍ରାହ୍ମଣ୍ୟ ଦେବତାଙ୍କ ମଧ୍ୟରେ ରାମଙ୍କ ଉଲ୍ଲେଖ ନାହିଁ । ଏଥିରୁ ମନେ ହୁଏ, ପୁରାଣ-ମାନଙ୍କରେ ରାମଙ୍କ ଅବତାର ପ୍ରସଙ୍ଗ ବର୍ଣ୍ଣିତ ହୋଇଥିଲେ ବି, ରାମ ଉପା-ସନାର ସଚରାଚର ପ୍ରଚଳନ ନ ଥିଲା ।

ରାମଚନ୍ଦ୍ରଙ୍କ ଜନପ୍ରିୟତାର କାରଣ ତଥାପି ଅନୁମାନର ବାହାରେ ନୁହେ । ରାମଚରିତର ମହତ୍ତ୍ୱ ବର୍ଣ୍ଣନାରେ ଭାରତୀୟ କାବ୍ୟପୁରାଣର ସ୍ରଷ୍ଟା ପରମ୍ପରା । ବାଲ୍ମୀକି ଏ ଦିଗରେ ପଥପ୍ରଦର୍ଶକ । ତାଙ୍କ ପରେ ପରବର୍ତ୍ତୀ ଅଗଣିତ ପୁରାଣକାର ଋଷି ଓ ସାଧକଗଣଙ୍କଠାରୁ ଆରମ୍ଭ କରି କାଳିଦାସ, ଭବଭୂତି ଆଦି କବିମାନେ ମୁକ୍ତକଣ୍ଠରେ ରାମଙ୍କ ଗୁଣଗାନ କରି ଅଛନ୍ତି । ଭାରତୀୟ ଜନସାଧାରଣଙ୍କ ଉପରେ ଏହାର ପ୍ରଭାବ ଅତି ପ୍ରବଳ । ଏଥିରୁ ରାମଉପାସନାର ବୀଜ ଅଙ୍କୁରିତ ହୋଇଥିବ । ହିନ୍ଦୁର ସ୍ୱାଭାବିକ ଧର୍ମ-ପ୍ରାଣତା ଏହାକୁ ବିକଶିତ କରିଥିବ । କେବେ ଏହାର ଆରମ୍ଭ ହେଲା, ଆଉ ସମୟର ଗତିରେ ରାମ ଉପାସନା କିପରି ଏଡ଼େ ବ୍ୟାପକ ହୋଇ-ଉଠିଲା ତାହା ଠିକ ଭାବରେ କହିବା ଲାଗି ଏବେ ଯଥେଷ୍ଟ ଉପାଦାନ ମିଳି ନାହିଁ ।

ମଧ୍ୱାଚାର୍ଯ୍ୟ ବା ଆନନ୍ଦତୀର୍ଥ ରାମୋପାସକ ସମ୍ପ୍ରଦାୟର ଜଣେ ବିଶିଷ୍ଟ ପ୍ରତିଷ୍ଠାତା । ତାଙ୍କର ଜୀବନୀ 'ମାଧବ ବିଜୟ' ନାମକ ଗ୍ରନ୍ଥରେ ବର୍ଣ୍ଣିତ । ଏଥିରୁ ଜଣାଯାଏ, ସେ ପ୍ରଥମେ ବଦରିକାଶ୍ରମରୁ ଦିଗ୍‌ବିଜୟ ରାମଙ୍କ ମୂର୍ତ୍ତି ଆଣି ପ୍ରତିଷ୍ଠା କରିଥିଲେ । ଅପଣାର ଶିଷ୍ୟ ନରହରି ତୀର୍ଥଙ୍କୁ ଓଡ଼ିଶାର ଜଗନ୍ନାଥଙ୍କଠାରୁ ରାମସୀତାଙ୍କ ମୂଳ ମୂର୍ତ୍ତି ନେବାଲାଗି ପଠାଇ ଥିଲେ । ଏହା ୧୨୯୪ ଖ୍ରୀ: ଅ: ର ନିକଟବର୍ତ୍ତୀ ଘଟଣା । ଆନନ୍ଦ ତୀର୍ଥଙ୍କଠାରୁ ରାମ ଉପାସନା ବିଶେଷ ଭାବେ ପ୍ରଚଳିତ ହୋଇଥିବା ସମ୍ଭବ । ତେଣୁ ୧୧ଶ ଶତକକୁ ରାମ ଉପାସନାର ଆରମ୍ଭକାଳ ଅନୁମାନ କରାଯାଇ ପାରେ । ଏହାପରେ ରାମଙ୍କ ବିଶେଷ ପୂଜା ଆରାଧନାର ପଦ୍ଧତି ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ । ତ୍ରୟୋଦଶ ଶତକର ନିକଟବର୍ତ୍ତୀ ରଚନା 'ବ୍ରତ ଖଣ୍ଡ'ରେ ହେମାଦ୍ରି ରାମପୂଜା ପଦ୍ଧତିର ବିଶଦ ବର୍ଣ୍ଣନା କରିଅଛନ୍ତି । ଏହା 'ସାତ୍ତ୍ୱତ

ସଂହିତା''ରେ ଥିବା ବାସୁଦେବ ପୂଜାର ଅନୁରୂପ । ଚୈତ୍ର ଶୁକ୍ଳନବମୀରେ ରାମ ଜନ୍ମୋତ୍ସବର ବିଶଦ ବ୍ୟବସ୍ଥା ସେ ଦେଇଛନ୍ତି । ଏହା ବ୍ୟତୀତ "ବୃଦ୍ଧହାରୀତ-ସ୍ମୃତି" ଗ୍ରନ୍ଥରେ ବାସୁଦେବଙ୍କ ପୂଜାର ଯେଉଁଳି ବ୍ୟବସ୍ଥା ଦିଆଯାଇଅଛି, ରାମଙ୍କ ପୂଜାର ମଧ୍ୟ ସେହିଭଳି ବ୍ୟବସ୍ଥା ଦିଆ ହୋଇଅଛି (୧) । ତଥାପି, ରାମ ଉପାସନା ସର୍ବତୋଭାବେ ଆମର ଧର୍ମଧାରାରେ ପ୍ରବେଶ କରି ପାରି ନାହିଁ । ଆମର ଶାଳ୍ପ ଉତ୍ସବରେ କେଶବ, ନାରାୟଣ, ଗୋବିନ୍ଦ, ଆଦି ବିଷ୍ଣୁଙ୍କ ୨୪ ମୂର୍ତ୍ତିଙ୍କ ଆରାଧନାରେ ରାମଙ୍କୁ ସ୍ଥାନ ଦିଆ ହୋଇନାହିଁ ।

ସଂସ୍କୃତରେ ଅଧ୍ୟାତ୍ମ ରାମାୟଣ ନାମରେ ଗୋଟିଏ ଗ୍ରନ୍ଥ ଦେଖାଯାଏ । ଏଥିରେ କୁହା ଯାଇଅଛି, ପ୍ରାଚୀନ ଋଷିମାନଙ୍କ ମୁଖରୁ ଏହା ଉଦ୍ଭୂତ । ୧୬ଶ ଶତକର ମହାରାଷ୍ଟ୍ର ସନ୍ଥ 'ଏକନାଥ'ଙ୍କ 'ଭାବାର୍ଥ ରାମାୟଣ'ର ସୂଚନାରୁ ଜଣାପଡ଼େ, ଅଧ୍ୟାତ୍ମ ରାମାୟଣ ପ୍ରାଚୀନ ରଚନାର ଅବଲମ୍ବନରେ ଅର୍ବାଚୀନ ସଙ୍କଳନ ମାତ୍ର । ଏହି ଅଧ୍ୟାତ୍ମ ରାମାୟଣରେ ପରମବ୍ରହ୍ମ ରୂପେ ରାମଙ୍କୁ ପ୍ରତିଷ୍ଠା ଦେବା ଲାଗି ଆମୂଳ ଚୂଳ ଉଦ୍ୟମ ହୋଇଅଛି । ଏହାର ପ୍ରଥମ ଖଣ୍ଡରେ ଥିବା 'ରାମହୃଦୟ'ରେ ସୀତା ହନୁମାନଙ୍କୁ କହୁଛନ୍ତି— "ମୂଳ ପ୍ରକୃତି ରୂପେ ସେ ସମସ୍ତ ରାମାୟଣ ଘଟଣା ସମ୍ପାଦନ କରିଛନ୍ତି ଓ ଅକ୍ରିୟ, ଅପରିବର୍ତ୍ତନଶୀଳ ଓ ସଦାନନ୍ଦ ପରମାତ୍ମା ରାମଚନ୍ଦ୍ର ତାହାର ଦ୍ରଷ୍ଟା ମାତ୍ର ।" ଅଷ୍ଟାଦଶ ଶତକର କବି ହଳଧର ଦାସ ଓଡ଼ିଆ ଅଧ୍ୟାତ୍ମ ରାମାୟଣରେ ଏହା ବର୍ଣ୍ଣନା କରି ଲେଖିଛନ୍ତି—

ଜାନକୀ ବୋଲେ ହନୁବୀର । ଶୁଣ ତୁ ବଚନ ମୋହର
ପରମ-ବ୍ରହ୍ମ ଏ ବୋଲଣ । ଶ୍ରୀ ରାମଙ୍କୁ ନିଶ୍ଚୟ ଜାଣ ।
ଶୁଦ୍ଧ-ଜ୍ଞାନ-ସ୍ୱରୂପ ମୟେ । ଆନନ୍ଦ ସ୍ୱରୂପ ଉଦୟେ ।
ନିର୍ମଳ ଶାନ୍ତ ନିର୍ବିକାର । ନିଷ୍କାମ ପ୍ରାଜ୍ଞ ନିରାକାର
ସର୍ବୁଠାରେ ଏହାଙ୍କ ବାସ । ଆପଣା ଇଚ୍ଛାଏ ପ୍ରକାଶ
ମୁଁହିଁ ମୂଳ ପ୍ରକୃତି ଜାଣ । ସୃଷ୍ଟି ସ୍ଥିତି ଲୟ କାରଣ ।

ଏହି ଗ୍ରନ୍ଥର ଶେଷ ଖଣ୍ଡରେ ୫ମ ଅଧ୍ୟାୟରେ "ରାମଗୀତା" ସଂସ୍ଥାପିତ । ଏହା ମହାଭାରତର ଭଗବଦ୍ ଗୀତା ଅନୁରୂପ । ଏଥିରେ ଶ୍ରୀକୃଷ୍ଣଙ୍କ ସ୍ଥାନରେ

(୧)ବୃଦ୍ଧ-ହାରୀତ-ସ୍ମୃତି—ଅନନ୍ଦାଶ୍ରମ ସଂସ୍କୃତ ସିରିଜ,ପୃ:୧୪୮—୧୦ମଅଧ୍ୟାୟ ।

ରାମ ଓ ଅର୍ଜୁନଙ୍କ ସ୍ଥାନରେ ଲକ୍ଷ୍ମଣ ରହିଛନ୍ତି । ରାମଙ୍କ ପରମବ୍ରହ୍ମତ୍ୱ ପ୍ରତିପାଦନ ଲାଗି ଅଧ୍ୟାତ୍ମ ରାମାୟଣ ବା ରାମଗୀତା ଭଳି ଯେଉଁ ଗ୍ରନ୍ଥ ସବୁ ରଚିତ ହୋଇଅଛି, ସେଗୁଡ଼ିକ ବିଶେଷ ଅର୍ବାଚୀନ । ଏଥିରୁ ମନେହୁଏ ରାମ ଉପାସନାର ପରମ୍ପରା ବି ଖୁବ୍ ବେଶି ପ୍ରାଚୀନ ନୁହେଁ ।



Srinivas ...

# ଓଡ଼ିଆ ରାମ ସାହିତ୍ୟ

## —ଇତିହାସ—

### ଓଡ଼ିଆରେ ରାମ ସାହିତ୍ୟର ପରମ୍ପରା—

ଓଡ଼ିଆ ସାହିତ୍ୟର ଇତିହାସରେ ରାମ ସାହିତ୍ୟର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଆ ସାହିତ୍ୟର ଆଦିଯୁଗରୁ ଆଜି ପର୍ଯ୍ୟନ୍ତ, ଏହା ଏକ ମୌଳିକ ପ୍ରେରଣାର ଉତ୍ସ ରୂପେ ସାହିତ୍ୟ ସୃଷ୍ଟିରେ ସାହାଯ୍ୟ କରିଛି । ଆଦିକବି ସରଳା ଓ ବଳରାମ ଏହାକୁ ଭେଜି ପୁରାଣ ଲେଖିଛନ୍ତି । କାବ୍ୟଯୁଗରେ ଧନଞ୍ଜୟ ଓ ଉପେନ୍ଦ୍ର ରାମଚରିତର ଅବଲମ୍ବନରେ କାବ୍ୟ ରଚିଛନ୍ତି । ରାମଚରିତ ଏକାଧାରରେ ଓଡ଼ିଆ ଧର୍ମ ସାହିତ୍ୟ ଓ ରସସାହିତ୍ୟର ଅବଲମ୍ବନ ହୋଇଛି । ମଧ୍ୟଯୁଗରେ ଆମ ସାହିତ୍ୟରେ ଚଉତିଶା, ଚଉପଦୀ, ପୋଇ, ଭଜନ ଆଦି ଯେତେ ପ୍ରକାର ଖଣ୍ଡିତ ଆକୃତିଗତ ବୈଚିତ୍ର୍ୟ ଦେଖିବାକୁ ମିଳେ, ସେଥିରେ ରାମ ସାହିତ୍ୟର ପ୍ରକାଶ ବ୍ୟାପକ । ପୋଥୀ ସାହିତ୍ୟରୁ କ୍ରମେ ଏହା ଲୋକ-ସାହିତ୍ୟକୁ ସଞ୍ଚରିତ ହୋଇଛି; ଲୋକମନକୁ ନାନା ଭାବରେ ପ୍ରଭାବିତ କରିଅଛି । ମୌଖିକ ଲୋକ ସାହିତ୍ୟର ଯାହା ସଂଗ୍ରହ ଓ ଆଲୋଚନା ଏପର୍ଯ୍ୟନ୍ତ ହୋଇଅଛି, ସେଥିରୁ ଏହା ସ୍ପଷ୍ଟ ଭାବରେ ଜଣାପଡ଼େ । ଯଥାସମ୍ଭବ ସଂକ୍ଷିପ୍ତ ପରିସର ଭିତରେ ଏକାଧିକ ହଳିଆ ଗୀତରେ ସଂପୂର୍ଣ୍ଣ ରାମଚରିତ ଦେଖିବାକୁ ମିଳେ । ସୁତରାଂ ରାମସାହିତ୍ୟର ଉପଯୋଗୀତା ସମ୍ବନ୍ଧରେ ଦ୍ୱିମତ ହୋଇ ନ ପାରେ । ଏହାର ଏକକ ସଂକଳନ ଓ ଆଲୋଚନା ଦ୍ୱାରା ଓଡ଼ିଆ ସାହିତ୍ୟର ସଂପୂର୍ଣ୍ଣ ଇତିହାସ ବିଶ୍ଳେଷଣ ସହଜ ହେବ । ସମଗ୍ର ଓଡ଼ିଆ ଜାତିର ହୃଦୟମନର ପରିପୂର୍ଣ୍ଣ ପରିଚୟ ଲାଗି ବିଶିଷ୍ଟ ଉପାଦାନ ଭାବେ ରାମସାହିତ୍ୟ ପ୍ରତି ଦୃଷ୍ଟିପାତ କରିବାକୁ ହେବ ।

ଏବେ କିନ୍ତୁ ସମୁଦାୟ ଓଡ଼ିଆ ରାମସାହିତ୍ୟକୁ ଆଲୋଚନାର ମୁଖ୍ୟ ଅଙ୍ଗ ରୂପେ ଗ୍ରହଣ କରିବା ସମ୍ଭବ ନୁହେ । ପ୍ରଥମ କାରଣ, ଏପର୍ଯ୍ୟନ୍ତ ରାମ ସାହିତ୍ୟର ସଂଗ୍ରହ ଓ ବୈଜ୍ଞାନିକ ଭାବରେ ସଙ୍କଳନ ପାଇଁ କେହି ଦୃଷ୍ଟି ଦେଇ ନାହାନ୍ତି । ଅନେକ ସ୍ଥଳରେ ତାହା ପାଣ୍ଡୁଲିପି ଆକାରରେ

ଯାଉ ରହିଅଛି । ଦେହୁଁଟି ବା ଛପା ବହିରେ ଅସ୍ପପ୍ରକାଶ କରିଛି, ସମାଲୋଚନା ଦୃଷ୍ଟିରେ ତାହା ହୋଇ ନାହିଁ । କେତେକ ପରିମାଣରେ ସାଧାରଣ ପାଠକମାନଙ୍କର ପ୍ରାଚୀନ ବାର୍ଦ୍ଧକ୍ୟବତା ବିଶେଷତଃ ତାର ସଙ୍ଗୀତ ଓ ଧର୍ମ ମୂଲ୍ୟ ପ୍ରତି ଅନୁରାଗ, ଅଉ ସେଥିଲାଗି ପ୍ରକାଶକମାନଙ୍କର ଅର୍ଥପିପାସା ଜନିତ ବ୍ୟବସାୟ ଉଦ୍ୟୋଗ ଏହା ମୂଳରେ କାମ କରିଅଛି । ପାଣ୍ଡୁଲିପିଗୁଡ଼ିକରୁ ଶୁଦ୍ଧପାଠ ଗ୍ରହଣରେ ଉଦ୍ୟମ ହୋଇନାହିଁ । ଅଧିକନ୍ତୁ ଏ ଗୁଡ଼ିକ ବିକୃତ ହୋଇଛି । ବିଭିନ୍ନ ସମୟରେ ଲେଖନକାରମାନଙ୍କ ସାମାଜିକ ଓ ଧର୍ମିକ ସ୍ଥିତିକୁ ସୁହେଇଲା ଭଳି ଯେଉଁ ପ୍ରକ୍ଷିପ୍ତ ଅଂଶମାନ ପାଣ୍ଡୁଲିପି ଗୁଡ଼ିକରେ ପ୍ରବେଶ କରିଥିବ, ତାହା ନିର୍ଣ୍ଣୟ କରିବା ବଡ଼ କଠିନ । ଏହି ଅବସ୍ଥାରେ ସମୁଦାୟ ରାମ ସାହିତ୍ୟକୁ ଆଲୋଚନାର ମୁଖ୍ୟଅଙ୍ଗ ରୂପେ ଗ୍ରହଣ କରିବା ଅସମ୍ଭବ; କଲେ, ପଦେ ପଦେ ଝୁଣ୍ଟିବାର ସମ୍ଭାବନା । ତେଣୁ ଏଠାରେ ବହିରଙ୍ଗ ଆଲୋଚନା ରୂପେ କେତେକ ବିଶିଷ୍ଟ ଗ୍ରନ୍ଥର ଅବଲମ୍ବନରେ ସମୁଦାୟ ଓଡ଼ିଆ ରାମ ସାହିତ୍ୟର ପ୍ରକୃତି ଓ ପ୍ରବୃତ୍ତିର ସୂଚନା ମାତ୍ର ଦେବାର ପ୍ରୟାସ ହେଉଅଛି । କାହାର ଦୃଷ୍ଟି ପିଆଇ ଭବିଷ୍ୟତ ଆଲୋଚନା ଲାଗି କ୍ଷେତ୍ର ପ୍ରସ୍ତୁତ କରିବା ଏଥିର ଉଦ୍ଦେଶ୍ୟ ।

## ବିଲଙ୍କା ରାମାୟଣ—

ସାରଳା ଦାସଙ୍କ ବିଲଙ୍କା ରାମାୟଣ ହିଁ ଓଡ଼ିଆରେ ପ୍ରଥମ ରାମ ସାହିତ୍ୟ । ଏହା ପଞ୍ଚଦଶ ଶତକର ପ୍ରଥମ ପାଦର ରଚନା । ଶାକ୍ତ ସଂପ୍ରଦାୟଙ୍କ ମଧ୍ୟରେ ବିଶେଷ ପ୍ରଚଳିତ ସଂସ୍କୃତ ଅଦ୍ଭୁତ ରାମାୟଣର ଏହା ଉପରେ ପ୍ରଭାବ ବିଶେଷ ଉଲ୍ଲେଖଯୋଗ୍ୟ । ଏଥିରେ ଶକ୍ତିରୂପେ ସୀତାଙ୍କ ମହିମା ବର୍ଣ୍ଣିତ । ବିଲଙ୍କାର ସହସ୍ର ଶୀର୍ଷା ରାବଣକୁ ରାମଚନ୍ଦ୍ର ସୀତାଙ୍କ ସାହାଯ୍ୟରେ ବିନାଶ କରିଥିବା କଥା କୁହାଯାଇଅଛି । ଶାକ୍ତ ମତର ପ୍ରତିଷ୍ଠା ଲାଗି ଏହା ଏକ ପୁରାଣ-କଳ୍ପନା ପରି ମନେହୁଏ । ସହସ୍ର ଶୀର୍ଷା ମୂଳତଃ ବୈଦିକ ପୁରୁଷ । ଏହାଙ୍କୁ ଦୈତ୍ୟ ରାବଣ ସହିତ ଯୋଡ଼ି— ଶକ୍ତିରୂପିଣୀ ସୀତାଙ୍କ ଦ୍ୱାରା ନିଧନ କରାଇବା ଆଖ୍ୟାନ ଏହାହିଁ ପ୍ରତିପାଦିତ କରେ । ଏହି ଚିନ୍ତା ବିଷୟରେ ପଣ୍ଡିତ ବିନାୟକ ମିଶ୍ର କହନ୍ତି— "ଏହି ଗଳ୍ପ ( ବିଲଙ୍କା ରାମାୟଣରେ ଗଳ୍ପ ) କୌଣସି ସଂସ୍କୃତ ପୁରାଣରେ ନାହିଁ । ଏହା ସାରଳା ଦାସଙ୍କ ମୌଳିକ କଳ୍ପନାରୁ ପ୍ରସୂତ (ସତ୍ୟ ?) ।

ନାରୀ ଜାତିର ଗୌରବ ପ୍ରକଟ କରିବା ବିଲଙ୍କା ରାମାୟଣର ଉଦ୍ଦେଶ୍ୟ । ସେ କାଳରେ ଓଡ଼ିଶାରେ ପ୍ରଚଳିତ ତନ୍ତ୍ର ପୂଜାର ପ୍ରଭାବ ଯୋଗୁଁ ବୋଧହୁଏ ସାରଳା ଦାସଙ୍କ ମନରେ ନାରୀ ଜାତିର ଗୌରବ ସମ୍ବନ୍ଧରେ ଧାରଣା ଜନ୍ମିଥିଲା" (୧) । ପଣ୍ଡିତ ନୀଳକଣ୍ଠ ମଧ୍ୟ ଏଥିରେ ଓଡ଼ିଆ ନାରୀର ଯଥାର୍ଥ ପ୍ରାଣ ପ୍ରତିଷ୍ଠା ଦେଖିଛନ୍ତି (୨) ।

ସହସ୍ର ମୁଖ ରାବଣ ବଧ ଅଦ୍ଭୁତ ରାମାୟଣର ଅନ୍ତିମ ଭାଗରେ (ସର୍ଗ ୧୭-୨୭) ବର୍ଣ୍ଣିତ । ଏହା ବିଲଙ୍କା ରାମାୟଣର ଉପଜୀବ୍ୟ । ଲଙ୍କା ଯୁଦ୍ଧ ଶେଷରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ଏହାର କଥା ଭାଗ ଆରମ୍ଭ ହୋଇଅଛି । ବାଲ୍ମୀକି ରାମାୟଣର କଥାବସ୍ତୁର ମୂଳସ୍ରୋତ ସହିତ ଏହାର କୌଣସି ସାମଞ୍ଜସ୍ୟ ନାହିଁ । ରାମଚରିତର ପ୍ରକାଶ ଆଂଶିକ ହେଲେହେଁ ସାରଳାଦାସଙ୍କ ବର୍ଣ୍ଣିତ ଘଟଣାବଳୀର ପ୍ରଭାବ ପରବର୍ତ୍ତୀ ଓଡ଼ିଆ ରାମାୟଣ-ମାନଙ୍କରେ ଅନୁଭୂତ ହୁଏ । ବଳରାମ ଦାସ ଦାଣ୍ଡି ରାମାୟଣର ସୁନ୍ଦରା-କାଣ୍ଡରେ ହନୁମାନଙ୍କୁ ପ୍ରାଧାନ୍ୟ ଦେବାରେ ସାରଳା ଦାସଙ୍କ ଦୃଷ୍ଟାନ୍ତ ଗ୍ରହଣ କରିଥିବା ସମ୍ଭବ । କାରଣ, ବିଲଙ୍କା ରାମାୟଣରେ ସାରଳାଦାସହିଁ ପ୍ରଥମେ ହନୁମାନଙ୍କୁ ଉପନାୟକର ସ୍ଥାନ ଦେଇଛନ୍ତି । ସର୍ବତ୍ର ହନୁମାନର ବୀରତ୍ୱ ଓ ଅଦ୍ଭୁତ କର୍ମ ବିଶଦ ଭାବରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ଦୁଇଟି ସ୍ଥାନରେ ମଥାରୁ ବ୍ରହ୍ମଅଗ୍ନି କାଢ଼ି ହନୁମାନ ବିଲଙ୍କା ଦହନ କରିଥିବାର ଚିତ୍ର ସାରଳା ଦେଇଛନ୍ତି । ବଳରାମ ଏହା ଗ୍ରହଣ କରିଛନ୍ତି । ହନୁମାନର ମାୟାମୃତ୍ୟୁ, ରାବଣର ରାଣୀମାନଙ୍କର ନାକ କାନ କର୍ତ୍ତନ ଆଦି ପ୍ରସଙ୍ଗ ସାରଳା ଦାସଙ୍କ ଅନୁସରଣରେ ବଳରାମ ଦାସ ବର୍ଣ୍ଣନା କରିଥିବାର ମନେହୁଏ ।

## ଦାଣ୍ଡି ରାମାୟଣ—

ସାରଳା ଦାସଙ୍କ ପରେ ଖୁବ୍ ସମ୍ଭବ ପଞ୍ଚଦଶ ଶତକର ଶେଷ ପାଦରେ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ରଚିତ ହୋଇଥିଲା । ବାଲ୍ମୀକିଙ୍କ ରାମଚରିତର ପରିପୂର୍ଣ୍ଣ ପ୍ରକାଶ ଏଥିରେ ପ୍ରଥମେ ଦେଖିବାକୁ ମିଳେ । ଏହି ବିପୁଳାୟତନ ପୁରାଣ ଗ୍ରନ୍ଥରେ ପଦ୍ମ, ଅଗ୍ନି, ସ୍କନ୍ଦ ଆଦି ପୁରାଣଗୁଡ଼ିକର

(୧) ଓଡ଼ିଆ ସାହିତ୍ୟର ଇତିହାସ, ପୃ: ୬୮ ।
(୨) ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୨ୟ ଭାଗ—ପୃ: ୩୯ ।

ପ୍ରଭାବ ସୃଷ୍ଟି । ଏଥିଲାଗି ଏହା ବାଲ୍ମୀକି ରାମାୟଣର ଅନୁସରଣ ମାତ୍ର ନ ହୋଇ ଏକ ସୃଜନାତ୍ମକ ମୌଳିକ ମହାଗ୍ରନ୍ଥ ରୂପେ ଆତ୍ମପ୍ରକାଶ କରିଅଛି । ବିଶେଷତଃ ଓଡ଼ିଆ ଜନସମାଜର ସାଂସ୍କୃତିକ ବିକାଶଧାରା ସହିତ ଏହାର ଯୋଗ ନିବିଡ଼ । ସେଥିଲାଗି ଏହା ପରବର୍ତ୍ତୀ ଓଡ଼ିଆ ରାମ ସାହିତ୍ୟକୁ କେବଳ ପ୍ରଭାବିତ କରି ନାହିଁ, ଲୋକ-ଜୀବନକୁ ରୂପ ଦେବାରେ ସକ୍ରିୟ ଅଂଶ ଗ୍ରହଣ କରିଛି ।

**ଟୀକା ରାମାୟଣ—**

ବଳରାମ ଦାସଙ୍କ ପରେ ମହେଶ୍ୱର ଦାସଙ୍କ ଟୀକା ରାମାୟଣ ଏକ ପ୍ରଧାନ ରଚନା । ମହେଶ୍ୱର ଦାସ କେବେ ଏହା ରଚନା କରିଥିଲେ, ତାହା ଏହି ଗ୍ରନ୍ଥରୁ ଠିକ୍ ଭାବେ ଜଣାଯାଏ ନାହିଁ । ସପ୍ତଦଶ ଶତକର ଆଦ୍ୟ ପାଦରେ ଅଧ୍ୟାତ୍ମ ରାମାୟଣର କବି ହଳଧର ଦାସ ମହେଶ୍ୱର ଅଗ୍ରଜ ତାଙ୍କର ଗୁରୁଥିଲେ ଓ ରାମାୟଣ ଶିକ୍ଷା ଦେଇଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଏହି ମହେଶ୍ୱର ଅଗ୍ରଜ ଯଦି ମହେଶ୍ୱର ଦାସ ହୋଇଥାନ୍ତି, ତେବେ ସେ ଷୋଡ଼ଶ ଶତକର ଶେଷ ପାଦର କବି ହୋଇଥିବା ସମ୍ଭବ ।

ଟୀକା ରାମାୟଣରେ ସାତଖଣ୍ଡ ରାମାୟଣ ଟୀକାରେ ଅର୍ଥାତ୍ ସଂକ୍ଷେପରେ ପ୍ରକାଶ କରାଯାଇଅଛି । ଏଥିରେ କବି କୃଷ୍ଣ, ଜଗନ୍ନାଥ ଓ ରାମଙ୍କ ମଧ୍ୟରେ ଏକତ୍ୱ ଆରୋପ କରିଥିଲେହେଁ ରାମ ନାମକୁ ଅଧିକ ମହତ୍ତ୍ୱ ଦେଇଛନ୍ତି । ଥରେ ରାମନାମ ଉଚ୍ଚାରଣ କଲେ ହଜାରେ କୃଷ୍ଣ ନାମ ଜପର ପୁଣ୍ୟ ମିଳିବ ବୋଲି କବି ଆଦି କାଣ୍ଡରେ କହିଛନ୍ତି । ଏହା ରାମ ଭକ୍ତି ବିକାଶର ସୂଚନା ।

ମହେଶ୍ୱର ଦାସ ଦାଣ୍ଡି ରାମାୟଣର କଥାବସ୍ତୁକୁ ଅତି ନିବିଡ଼ ଭାବରେ ଅନୁସରଣ କରିଅଛନ୍ତି । ଏଥିରୁ ମନେହୁଏ, ସେ ସେପରି ଉତ୍କଳର ବହୁ ପ୍ରଚଳିତ ଦାଣ୍ଡି ରାମାୟଣର ଟୀକା ରଚନା କରିଛନ୍ତି । ବଳରାମ ଦାସଙ୍କ ଭାବଧାରା ଓ କଥାବସ୍ତୁର ସଂପୂର୍ଣ୍ଣ ସାମ୍ୟ ଥିବା ବହୁ ପ୍ରସଙ୍ଗ ମଧ୍ୟରୁ ଏହି କେତୋଟି ବିଶେଷ ଉଲ୍ଲେଖଯୋଗ୍ୟ—ଅରଣ୍ୟକ କାଣ୍ଡରେ ଗଣ୍ଡକୀ ନଦୀ ତୀର୍ଥରେ ବ୍ରାହ୍ମଣଙ୍କର ଆକଟ ଓ ରାମଚନ୍ଦ୍ରଙ୍କ ଅଭିଶାପ, କିଷ୍କିନ୍ଧ୍ୟା କାଣ୍ଡରେ ରାବଣର ବଳାତ୍କାରରେ ସୀତା ହରଣ ପ୍ରସଙ୍ଗ, ଲଙ୍କା ବିଜୟ

ପରେ ହାନ୍ଦୋଳାରେ ନ ଅସି ଋଷ କପିଙ୍କ ଗହଣରେ ଗ୍ରଲ ଅସିବାକୁ ରାମଙ୍କର ସୀତାଙ୍କୁ ନିର୍ଦ୍ଦେଶ, ଭରତଙ୍କ ବିବୋଧରେ ଗୁହାରିଅଙ୍କର ରାମଙ୍କୁ ଅଭିଯୋଗ ଓ ଭରତଙ୍କର କଳିଯୁଗ ପ୍ରଜାଙ୍କୁ ଅଭିଶାପ ଇତ୍ୟାଦି ।

ଟୀକା ରାମାୟଣର ଭାଷା ସରଳ । ସଂକ୍ଷିପ୍ତ ହେତୁ ବର୍ଣ୍ଣନାରେ ଅତିରଞ୍ଜନ, ବିସ୍ତାରିତ ବଂଶାନୁଚରିତ, ପୂର୍ବକଳ୍ପ ପ୍ରସଙ୍ଗ ଓ ଗୌଣ ଉପାଖ୍ୟାନମାନ ଏଥିରୁ ବାଦ୍ ଦିଆଯାଇଅଛି । ଏଥିରେ କଥାର ଗତି ଅତି ଦ୍ରୁତ । ଅଳ୍ପ ସମୟରେ ପାଠକ ମନରେ ଅନାୟାସରେ ରାମ ଚରିତର ମହତ୍ତ୍ୱ ଉପଲବ୍ଧି କରେଇବା ଏହାର ମୁଖ୍ୟ ଉଦ୍ଦେଶ୍ୟ ଭଳି ମନେହୁଏ ।

ଆଲୋଚିତ ଟୀକା ରାମାୟଣଟି 'ରାଧାରମଣ ପୁସ୍ତକାଳୟ'ରୁ ୧୯୪୭ ଖ୍ରୀ: ଅ: ରେ ୪ର୍ଥ ଥର ପ୍ରକାଶିତ । ପ୍ରଥମେ କେବେ, କେଉଁ ପାଣ୍ଡୁଲିପି ସାହାଯ୍ୟରେ ପ୍ରକାଶିତ ହୋଇଥିଲା, ତାହାର କୌଣସି ସୂଚନା ନାହିଁ । 'ମନମୋହନ ପୁସ୍ତକାଳୟ'ରୁ ଉକ୍ତ ବର୍ଷ ପ୍ରକାଶିତ ଖଣ୍ଡିଏ ଟୀକା ରାମାୟଣର ଭଣିତାରେ ଦୀନ ବାସୁଦେବ ନାମ ମିଳେ । ମହେଶ୍ୱର ଦାସଙ୍କ ରାମାୟଣରୁ ପାଠାନ୍ତର ଏଥିରେ ସ୍ପଷ୍ଟ । ବିଷୟ ବସ୍ତୁରେ ବିଶେଷ ପାର୍ଥକ୍ୟ ନାହିଁ । ଏହା ମହେଶ୍ୱର ଦାସଙ୍କ ରଚନାର ପରବର୍ତ୍ତୀ ଅନୁକରଣ ହୋଇପାରେ ।

## ଅଧ୍ୟାତ୍ମ ରାମାୟଣ—

ସଂସ୍କୃତରେ ଅଧ୍ୟାତ୍ମ ରାମାୟଣ ଏକ ରାମଭକ୍ତିମୂଳକ ଗ୍ରନ୍ଥ । ହଳଧର ଦାସ ଏହି ଗ୍ରନ୍ଥଟିକୁ ସରଳ ଓଡ଼ିଆରେ ନବାକ୍ଷରୀ ଓ ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ଅନୁବାଦ କରିଅଛନ୍ତି । ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ସେ ପୁରୀରେ ବାସ କରୁଥିଲେ ଓ ଅଧ୍ୟାତ୍ମ ରାମାୟଣର ଅନୁବାଦ ସେ ୧୬୮୧ ଖ୍ରୀ: ଅ: ରେ ଶେଷ କରିଥିଲେ । ଏହାର ସୂଚନା କବିଙ୍କ ନିଜ କୃତିରୁ ମିଳେ (୧) । ସ୍ୱର୍ଗତଃ ଶ୍ୟାମ ସୁନ୍ଦର ରାଜଗୁରୁ ମହାଶୟ କହନ୍ତି—ହଳଧର ଦାସ ସଂସ୍କୃତରେ "ହଳଧର କାରିକା" ନାମରେ ଗ୍ରନ୍ଥ ରଚନା କରିଥିଲେ । ଏହାଙ୍କ ଅନୁବାଦ କୁଶଳତା ଲକ୍ଷ୍ୟ କରି ସେ ଯଥାର୍ଥ ଲେଖିଛନ୍ତି—"ଅଧ୍ୟାତ୍ମ ରାମାୟଣର ଭାଷା ପରିଶୁଦ୍ଧ, ମୂଳ

(୧) ଓଡ଼ିଆ ସାହିତ୍ୟର ଇତିହାସ, ପଣ୍ଡିତ ବିନାୟକ ମିଶ୍ର—ପୃ. ୯୩ ।

ସଂସ୍କୃତର ଅବିକଳ ଅନୁବାଦ ହେଲେ ମଧ୍ୟ ଏଥିରେ ସଂସ୍କୃତର ପ୍ରଖରତା ଯେତେ ଦେଖାଯାଏ ନାହିଁ । କବି ବହୁଳ ଭାବରେ ସୁଲଭ ଶବ୍ଦ ବ୍ୟବହାର କରି ରଚନାର ସରଳତା ସମ୍ପାଦନ କରିବାରେ କିଛି ମାତ୍ର ତ୍ରୁଟି କରି ନାହାନ୍ତି" (୧) ।

**ବିଚିତ୍ର ରାମାୟଣ—**

ବିଭିନ୍ନ ଓଡ଼ିଆ ରାମାୟଣ ମଧ୍ୟରେ ବିଚିତ୍ର ରାମାୟଣ ଖୁବ୍ ଜନପ୍ରିୟ । ଏହି ଗ୍ରନ୍ଥର ଭଣିତାରେ ଗୋପୀ, ବିକ୍ରମ, ନରେନ୍ଦ୍ର, ପଦ୍ମନାଭ ଆଦି ଅନେକ ନାମ ଦେଖିବାକୁ ମିଳୁଥିଲେ ହେଁ, 'ବିଶି' ନାମରେ ଅଧିକାଂଶ ସ୍ଥଳରେ ଭଣିତା ଦେଖିବାକୁ ମିଳେ । ତେଣୁ ବିଚିତ୍ର ରାମାୟଣକୁ କେହେକେହେ ବିଶି ରାମାୟଣ ବୋଲି କହୁଥାନ୍ତି । ପ୍ରାଚୀନ କବିମାନେ ଆପଣା ପୃଷ୍ଠପୋଷକମାନଙ୍କ ନାମରେ କାବ୍ୟ ଭଣିତା କରୁଥିବାର ଦେଖାଯାଏ । ବିଚିତ୍ର ରାମାୟଣର ଭଣିତାରେ ମିଳୁଥିବାର ନାମ ଗୁଡ଼ିକୁ ଏହାର ସୂଚନା ଅଥବା ଏକାଧିକ କବିଙ୍କ ରଚନାର ସଙ୍କେତ ବୁଝିବାକୁ ହେବ, ତାହା ନିର୍ଣ୍ଣୟ କରିବା କଠିନ ।

ବିଶ୍ୱନାଥ ଖୁଣ୍ଟିଆଙ୍କ ସମୟ ସମ୍ବନ୍ଧରେ ବିଚିତ୍ର ରାମାୟଣରୁ ମିଳୁଥିବା "ଶ୍ରୀ ଦିବ୍ୟସିଂହ ଗଜପତି ଶ୍ରୀ ଜଗନ୍ନାଥ ଶ୍ରୀ ଚରଣେ ଭକ୍ତେ" ପଂକ୍ତିଟି ସୂଚନା ଦିଏ । ବିଶ୍ୱନାଥଙ୍କ ଭଣିତ "ବା ଚଉତିଶା"ରୁ ଜଣା ପଡ଼େ, ସେ ମରହଟ୍ଟା-ମାନଙ୍କ ରାଜତ୍ୱ କାଳ ପୂର୍ବରୁ ଜୀବିତ ନ ଥିଲେ । ଉକ୍ତ ଦିବ୍ୟସିଂହ ଦେବଙ୍କୁ ଏଥିଲାଗି ୧୮ଶ ଶତକର ଶେଷପାଦର ପୁରୀ ରାଜା ବୋଲି ଧରିଲେ, ଏହାକୁହିଁ ବିଶ୍ୱନାଥଙ୍କ ସମୟ ବୋଲି ବୁଝିବାକୁ ହେବ । ବିଶ୍ୱନାଥ ଉପେନ୍ଦ୍ର ଭଞ୍ଜଙ୍କ ଚଉପଦୀ ଭୂଷଣର ବାଣୀ ନିର୍ଦ୍ଦେଶ କରିଅଛନ୍ତି । ଏଥିରୁ ସେ ଉପେନ୍ଦ୍ର ଭଞ୍ଜଙ୍କ ପରବର୍ତ୍ତୀ ଥିବାର ଜଣାଯାଏ (୨) ।

ବାଲ୍ମୀକି ରାମାୟଣରେ ରାମାୟଣ ରଚନାର ଯେଉଁ ଉପକ୍ରମ ବର୍ଣ୍ଣିତ ହୋଇଅଛି, ତାହା ବିଚିତ୍ର ରାମାୟଣରେ ଦେଖିବାକୁ ମିଳେ । ଏହାର ଆରମ୍ଭରେ ସଙ୍ଗୀତ ଆକାରରେ ଅନେକ ଦେବଦେବୀଙ୍କ ବନ୍ଦନା ସନ୍ନିବିଷ୍ଟ

---

(୧) ପ୍ରବନ୍ଧାବଳୀ—ପୃ. ୮୩ ।

(୨) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର, ପୃ: ୧୬୩-୧୬୪ ।

ହୋଇଛି । ବିଚିତ୍ର ରାମାୟଣରେ କଥାବସ୍ତୁ ଓ ଘଟଣାବଳୀର ବର୍ଣ୍ଣନା କ୍ରମ ଉପରେ ରାମାୟଣର ପ୍ରଭାବ ସ୍ପଷ୍ଟ ହେଲେହେଁ, ଏହାର ଅଭିବ୍ୟକ୍ତି ଶୈଳୀ ଭିନ୍ନ । ସଙ୍ଗୀତ ଏହାର ପ୍ରାଣ । ଉପେନ୍ଦ୍ରୀୟ ନାରୀରୂପ ବର୍ଣ୍ଣନାର ପ୍ରୟାସ ଏଥିରେ ଅଧିକ । ଆଦ୍ୟକାଣ୍ଡରେ ସୀତାଙ୍କ ଜନ୍ମ ପ୍ରସଙ୍ଗରେ ଜାନକୀ, ମୈଥିଳୀ, ଯୋଜନଗନ୍ଧା, ପାର୍ଥିବୀ ଆଦି ନାମକରଣ ହେବା କଥା ବିଶ୍ୱନାଥ ଉପେନ୍ଦ୍ରଙ୍କ ଅନୁକରଣରେ କହିଅଛନ୍ତି (୧) । ଏହି କାଣ୍ଡରେ ଶ୍ରୀରାମଙ୍କ ବାଲ୍ୟଲୀଳା ବର୍ଣ୍ଣନାକୁ କୃଷ୍ଣଙ୍କ କୈଶୋର ଲୀଳାର ଶୃଙ୍ଗାରିକତା ପ୍ରଭାବିତ କରିଅଛି । ରାମ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କର ମିଥିଳା ଯିବାଲାଗି ଗଙ୍ଗାପାର ହେବା ସମୟରେ ଧୀବର ପ୍ରସଙ୍ଗ ଉପେନ୍ଦ୍ରଙ୍କ ଅନୁସରଣରେ ବିଶ୍ୱନାଥ ବର୍ଣ୍ଣନା କରି-ଅଛନ୍ତି । ଏହା ଦାଣ୍ଡି ରାମାୟଣରେ ନାହିଁ, ସଂସ୍କୃତ ଅଧ୍ୟାତ୍ମ ରାମାୟଣରେ ଦେଖାଯାଏ ।

ବିଚିତ୍ର ରାମାୟଣ ଯେଉଁ ଯୁଗରେ ଲେଖା ଯାଇଥିଲା, ତାହା ଓଡ଼ିଆ ସାହିତ୍ୟରେ କାବ୍ୟ ଓ ସଙ୍ଗୀତର ଯୁଗ । ଏହା କେତେକ ପରିମାଣରେ କୃତ୍ରିମତା ଦୁଷ୍ଟ । ବଳରାମ ଦାସଙ୍କ କୃତିରେ, ତଥା ମହେଶ୍ୱର ଦାସଙ୍କ ରାମାୟଣରେ ଯେଉଁ ସ୍ୱାଭାବିକତା ଓ ମାନବିକ ଆଶା ଆକାଂକ୍ଷାର ଛବିର ପ୍ରକାଶ ଦେଖିବାକୁ ମିଳେ, ତାହା ବିଚିତ୍ର ରାମାୟଣରେ ଦେଖିବାକୁ ମିଳେ ନାହିଁ । ଏଠାରେ ରାମସୀତାଙ୍କ ମଧୁଶଯ୍ୟା ରାତି ବର୍ଣ୍ଣନାର ଦୃଷ୍ଟାନ୍ତ ଦିଆଯାଇ ପାରେ । ଦାଣ୍ଡିରାମାୟଣରେ ଏହି ବର୍ଣ୍ଣନାରେ ପରିଶୁଦ୍ଧ ମାନବିକତା, ବିପୁଳ ଜୀବନ-ବୋଧ ଓ ସମାଜରକ୍ଷାର ପୁଣ୍ୟ ଶୃଙ୍ଖଳରେ ପରିପୂର୍ଣ୍ଣ ନାରୀତ୍ୱର ଯେଉଁ ମହାନ୍ ଚିତ୍ରଣ ଦେଖିବାକୁ ମିଳେ, ଆମ ସାହିତ୍ୟରେ ତାହା ବିରଳ । ବିଚିତ୍ର ରାମାୟଣରେ ଏ ମହନୀୟତା ନାହିଁ । ଏଠାରେ ଅନ୍ତରର ଉଚ୍ଛ୍ୱାସପୂର୍ଣ୍ଣ ଅଳାପ ଭିତରେ ଏକ ଶ୍ରେଷ୍ଠ ଯୁଗଳଙ୍କ ଚରିତ୍ର ଫୁଟି ଉଠିନାହିଁ । ଆରମ୍ଭରେ ସଖୀମାନଙ୍କର ପରିହାସ ଓ ଶେଷରେ ଭୋଗାକାଂକ୍ଷା ନାୟିକା ରୂପେ ସୀତାଙ୍କ ବେଶ ବର୍ଣ୍ଣନା ହିଁ ପ୍ରଧାନ ସ୍ଥାନ ଅଧିକାର କରିଅଛି । ତାରା, ମନ୍ଦୋଦରୀ ଆଦି ଯେ କୌଣସି ପବିତ୍ର ନାରୀମାନଙ୍କ ପ୍ରସଙ୍ଗ ବର୍ଣ୍ଣନା ବେଳେ ଯୌନରସମୂଳକ ଶୃଙ୍ଗାରିକତାକୁ ବିଚିତ୍ର ରାମାୟଣର କବି ପ୍ରାଧାନ୍ୟ ଦେଇଛନ୍ତି । କେବଳ ନାରୀ ଚରିତ୍ରରେ ନୁହେଁ, ପ୍ରକୃତି ଚିତ୍ରରେ ମଧ୍ୟ ଶୃଙ୍ଗାରିକତାର ସଙ୍କେତ ଅତି ସ୍ପଷ୍ଟ ।

(୧) ବୈଦେହୀଶ ବିଳାସ—୩ୟ ଛାନ୍ଦ, ୧୬-୨୦ ପଦ ଦ୍ରଷ୍ଟବ୍ୟ ।

ରାମଚନ୍ଦ୍ରଙ୍କ ମୁଖରେ କବି ମାଲ୍ୟବନ୍ତର ଶୋଭା ବର୍ଣ୍ଣନାରେ ଏହାକୁ ଏକ ନାରୀରୂପେ ଚିତ୍ରିଛନ୍ତି । ଏହିଠାରେ ରାମଚନ୍ଦ୍ର କନିଷ୍ଠ ଲକ୍ଷ୍ମଣଙ୍କୁ କହୁଛନ୍ତି— "ଏ ଗିରି ସ୍ତ୍ରୀରୀ ପ୍ରାୟ ମନକୁ ମୋର ଅବଶ କରେ (କିଷ୍କିନ୍ଧ୍ୟା—୧୬ଶ ଛନ୍ଦ)" । ଗିରିର ଉପମା ନାରୀର ସମସ୍ତ ଅଙ୍ଗ ସହିତ କରା ହୋଇଅଛି । ବିଭିନ୍ନ ଋତୁ ଚିତ୍ରଣରେ ବି ଏହି ନାଗରିକତା ଓ ଶୃଙ୍ଗାରିକତାର ଦୃଷ୍ଟି ଉଦ୍ଭିନ୍ନ । ବର୍ଷା ଋତୁକୁ କବି ଜଣେ ଆଡ଼ମ୍ବର ପ୍ରିୟ ରଜା ଓ ଶରତକୁ ସୁନ୍ଦରୀ କାମିନୀ ରୂପେ ଦେଖିଅଛନ୍ତି ।

ବଙ୍ଗଳା ରାମାୟଣରେ ବିଶେଷ ଭାବରେ ମିଳୁଥିବା "ମହୀରାବଣର ପାଲ" କାହାଣୀ ବିଚିତ୍ର ରାମାୟଣରେ ମିଳେ (ଲଙ୍କାକାଣ୍ଡ, ଛନ୍ଦ, ୪୮-୫୯) । ଏହା ମୂଳ ବାଲ୍ମୀକି ରାମାୟଣ, ଦାଣ୍ଡି ରାମାୟଣ ତଥା ଅନ୍ୟ ଓଡ଼ିଆ ରାମାୟଣରେ ମିଳେନାହିଁ । ଶାକ୍ତ ଓ ତାନ୍ତ୍ରିକ ମତର ପ୍ରଭାବ ଏଥିରେ ବିଶେଷ ଭାବରେ ଦେଖାଯାଏ । କୃତ୍ତିବାସ ରାମାୟଣରେ ପ୍ରଥମେ ବର୍ଣ୍ଣିତ ହୋଇ ଏ କାହାଣୀ ପର-ବର୍ତ୍ତୀ ବଙ୍ଗସାହିତ୍ୟକୁ ପ୍ରଭାବିତ କରିଥିବା କଥା ଶ୍ରୀଯୁକ୍ତ ଦୀନେଶଚନ୍ଦ୍ର ସେନ ଲକ୍ଷ୍ୟକରି ଅଛନ୍ତି (୧) । ଏହାର ଭାବଧାରା ଓ ଆଦର୍ଶ ପୁରାଣ କ୍ରମରୁ ଭିନ୍ନ । ଏହା ଲୋକ କାହାଣୀମୂଳକ ହୋଇଥିବ ବୋଲି ସେ ଅନୁମାନ କରିଅଛନ୍ତି । ବିଚିତ୍ର ରାମାୟଣ ଓ ବଙ୍ଗୀୟ କାହାଣୀର ମୂଳ ଧାରାରେ କୌଣସି ପାର୍ଥକ୍ୟ ନାହିଁ । ତେବେ, କେତେକ ବ୍ୟକ୍ତିଙ୍କ ନାମରେ ଓ ଘଟଣାର କ୍ରମରେ ସାମାନ୍ୟ ଅନ୍ତର ଦେଖାଯାଏ ।

ଏହି ସମୟର ସାମାଜିକ ଅବସ୍ଥା ବିଷୟରେ ବିଚିତ୍ର ରାମାୟଣରୁ କେତେକ ସୂଚନା ମିଳେ । ବିଶେଷତଃ ରାଜାମାନଙ୍କର ଅଧଃପତନର ଚିତ୍ର ଏଥିରେ ସ୍ପଷ୍ଟ । ସ୍ୱୟଂ ଯୁଦ୍ଧକ୍ଷେତ୍ରକୁ ଯିବାକୁ ଏମାନେ ଭୟ କରୁଥିଲେ । ଅଶ୍ୱମେଧ ଆଦି ଯଜ୍ଞାନୁଷ୍ଠାନରେ ରାଜଚକ୍ରବର୍ତ୍ତୀ ହେବାର ପ୍ରାଚୀନ ବିଶ୍ୱାସ ବି ଏମାନଙ୍କ ମନରେ ନ ଥିଲା । ଯୁଦ୍ଧକାଣ୍ଡରେ ରାମଙ୍କ ମୁଖରେ ସୁଗ୍ରୀବଙ୍କୁ ଓ ଉତ୍ତରା କାଣ୍ଡରେ ଭରତଙ୍କର ରାମଙ୍କୁ ଉକ୍ତିରୁ ଏହା ସ୍ପଷ୍ଟହୁଏ । ବିଚିତ୍ର ରାମାୟଣରେ ସର୍ବତ୍ର ବିଳାସ, ଆଡ଼ମ୍ବର, ଭୀରୁତା ଓ ଯୌନରସମୂଳକ ଶୃଙ୍ଗାରିକତାର ଚିତ୍ର, ସେ ସମୟରେ ସମାଜ କିପରି ଅଧଃପତନଶୀଳ ଅବସ୍ଥାରେ ଗତି କରୁଥିଲା ତାହାହିଁ ସୂଚିତ କରେ ।

(୧) ମହୀରାବଣର ପାଲ—Bengali Ramayan—page 252-254.

## ଅନ୍ୟାନ୍ୟ ରାମାୟଣ—

ପରବର୍ତ୍ତୀ କାଳରେ ବାଲ୍ମୀକି ରାମାୟଣକୁ ଅବଲମ୍ବନ କରି ଏକାଧିକ ରାମାୟଣ ଓଡ଼ିଆରେ ଲେଖା ଯାଇଅଛି । ଗତ ଶତକର ଆରମ୍ଭରେ (୧୮୧୫ ଖ୍ରୀ:ଅ:) ଗଞ୍ଜାମ ଜିଲ୍ଲାର ଧରାକୋଟବାସୀ କୃଷ୍ଣଚରଣ ପଟ୍ଟନାୟକ ବାଲ୍ମୀକିଙ୍କ ସଂସ୍କୃତ ରାମାୟଣର ଅବିକଳ ଓଡ଼ିଆ ଅନୁବାଦ କରିଥିବାର ପଣ୍ଡିତ ଶ୍ରୀଯୁକ୍ତ ବିନାୟକ ମିଶ୍ର ଲେଖିଅଛନ୍ତି (୧) । ଭୁବନେଶ୍ୱରର ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ବାଲ୍ମୀକି ରାମାୟଣ ଅବଲମ୍ବନରେ ଓଡ଼ିଆରେ ସାତକାଣ୍ଡ ରାମାୟଣ ରଚନା କରିଅଛନ୍ତି । ଏଥିରେ ସେ ବଳରାମ ଦାସଙ୍କ ରାମାୟଣରେ ବର୍ଣ୍ଣିତ ଘଟଣାଗୁଡ଼ିକ ସହିତ କୃତ୍ତିବାସ ଆଦିଙ୍କ ବଙ୍ଗଳା ରାମାୟଣରୁ କାହାଣୀମାନ ସନ୍ନିବିଷ୍ଟ କରାଇଅଛନ୍ତି । ଏଠାରେ ମହୀରାବଣ ଓ ସହସ୍ରମୁଖ ରାବଣ ବଧ, ପୁଣି ଦସ୍ୟୁ ରତ୍ନାକର କାହାଣୀ ଆଦି ବିଶେଷ ଉଲ୍ଲେଖଯୋଗ୍ୟ ।

## ଦସ୍ୟୁ ରତ୍ନାକର କାହାଣୀ—

ବିଦ୍ୟାଭୂଷଣଙ୍କ ଦସ୍ୟୁ ରତ୍ନାକର କାହାଣୀଟି ଅଧ୍ୟାତ୍ମ ରାମାୟଣ ବ୍ୟତୀତ ବଳରାମଙ୍କଠାରୁ ବିଶ୍ୱନାଥଙ୍କ ପର୍ଯ୍ୟନ୍ତ ଅନ୍ୟ କୌଣସି ଓଡ଼ିଆ ରାମାୟଣରେ ଦେଖିବାକୁ ମିଳେ ନାହିଁ । ତେବେ ବଙ୍ଗଳା ରାମାୟଣ-ମାନଙ୍କରେ ଏହାର ବିଶେଷ ବିବରଣ ଦେଖାଯାଏ । ଏ ପ୍ରସଙ୍ଗରେ ଶ୍ରୀଯୁକ୍ତ ଦିନେଶଚନ୍ଦ୍ର ସେନ ଆଲୋଚନା କରିବାକୁ ଯାଇ କହିଛନ୍ତି—ଚ୍ୟବନ ମହର୍ଷିଙ୍କ ପୁତ୍ର ବାଲ୍ମୀକି ପ୍ରଥମେ "ରତ୍ନାକର ଦସ୍ୟୁ" ଥିଲେ । ଏ ବିବରଣ ବଙ୍ଗଳା ରାମାୟଣମାନଙ୍କରେ ଦେଖାଯାଏ । ଏହା କେଉଁଠୁ ଆସିଲା, କହିବା କଠିନ । ତାଙ୍କ ମତରେ, ମୂଳ ରାମାୟଣରେ ବା ଅନ୍ୟ କୌଣସି ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ଏହାର ସୂଚନା ନାହିଁ । ବ୍ରହ୍ମାଙ୍କ ଉପଦେଶରେ ରତ୍ନାକର 'ମରା' ଭଜୁ ଭଜୁ ରାମ ନାମ ଉଚ୍ଚାରଣ କରିବାକୁ ସମର୍ଥ ହେଲେ ଓ ତାଙ୍କର ଦିବ୍ୟଜ୍ଞାନ ଉଦୟ ହେଲା । 'ମରା' ଶବ୍ଦଟି ବଙ୍ଗଳା ହୋଇଥିବାରୁ ସମୁଦାୟ କାହାଣୀଟି ବଙ୍ଗଳାର ହୋଇଥିବ ବୋଲି ସେ ଅନୁମାନ କରନ୍ତି (୨) । କିନ୍ତୁ ଦସ୍ୟୁରୂପେ ବାଲ୍ମୀକିଙ୍କ

(୧) ଓଡ଼ିଆ ସାହିତ୍ୟର ଇତିହାସ, ପୃ: ୧୬୯

(୨) Bengali Ramayan, page. 125-128.

ପୂର୍ବଜନ୍ମ ବୃତ୍ତାନ୍ତର କୌଣସି ସୂଚନା ଯେ ପ୍ରାଚୀନ ଗ୍ରନ୍ଥରେ ନାହିଁ, ତାହା ନୁହେ । ମହାଭାରତର ଅରଣ୍ୟକ ପର୍ବ (୬୨ ଅ: ୧୨୨ ଶ୍ଳୋକ) ଓ ଅନୁଶାସନ ପର୍ବ (୪୯ ଅ: ୮-୧୦ ଶ୍ଳୋକ)ରେ ଯଥାକ୍ରମେ ଚ୍ୟବନଙ୍କ ପୁତ୍ର ତପସ୍ୟା କରୁ କରୁ ବଲ୍ମୀକରେ ଆବୃତ୍ତ ହେବା (ବଲ୍ମୀକେନ ସମାବୃତ୍ତ) ଓ ବ୍ରହ୍ମର୍ଷି ଥିବାର ସଙ୍କେତ ମିଳେ । ଅବଶ୍ୟ ଏଥିରେ ରାମନାମ ଜପର କୌଣସି ସୂଚନା ନାହିଁ । ଶୂଦ୍ରା ଗର୍ଭଜ, ଦସ୍ୟୁ ରତ୍ନାକର ରାମନାମ ଜପ ଲାଗି ସପ୍ତ ଋଷିଙ୍କ ଦ୍ୱାରା ଆଦିଷ୍ଟ ହୋଇ 'ମରା' ଜପ କରୁ କରୁ 'ରାମ' ନାମ ଜପ କରି ସିଦ୍ଧ ହେବା କାହାଣୀ ସଂସ୍କୃତ ଅଧ୍ୟାତ୍ମ ରାମାୟଣରେ ମିଳେ (୧) । ପରେ ଆନନ୍ଦ ରାମାୟଣରେ ଏହାର ଅନୁସରଣ କରାଯାଇଅଛି । କୃତ୍ତିବାସ ରାମାୟଣର କାହାଣୀ ଅନୁରୂପ ହେଲେହେଁ ଏଥିରେ କେତେକ ପାର୍ଥକ୍ୟ ଦେଖାଯାଏ । ଏଥିରେ ସପ୍ତଋଷି ସ୍ଥାନରେ ବ୍ରହ୍ମା ଓ ନାରଦ ରତ୍ନାକରଙ୍କୁ ରାମନାମ ଦୀକ୍ଷା ଦେବା କଥା ଅଛି । ତେବେ ଏଠାରେ ସ୍ମରଣ ରଖିବାର କଥା, ଅଧ୍ୟାତ୍ମ ରାମାୟଣ ଏକ ଅର୍ବାଚୀନ ରଚନା ହୋଇଥିବାରୁ ଏଥିର ଦସ୍ୟୁ ରତ୍ନାକର କାହାଣୀ ସ୍ୱତନ୍ତ୍ର ଭାବରେ ବିକଶିତ, କିମ୍ବା ଅଧ୍ୟାତ୍ମ ରାମାୟଣ ସହ ସଂପୃକ୍ତ, ତାହା କହିବା କଠିନ । ବିଦ୍ୟାଭୂଷଣଙ୍କ ଓଡ଼ିଆ ରାମାୟଣର କାହାଣୀ ବଙ୍ଗଳାର ଅନୁରୂପ ।

---

(୧) ଅଧ୍ୟାତ୍ମ ରାମାୟଣ, ଅଯୋଧ୍ୟାକାଣ୍ଡ, ଷଷ୍ଠ, ଅଧ୍ୟାୟ, ୬୪—୮୫ ଶ୍ଳୋକ ।

# ଓଡ଼ିଆ ରାମ ସାହିତ୍ୟ

## —ଆକୃତ ବୈଶଷ୍ୟ—

### ଧର୍ମ ଓ ରସ ସାହିତ୍ୟ—

ମଧ୍ୟ ଯୁଗର ଓଡ଼ିଆ ସାହିତ୍ୟରେ ବହୁ ପ୍ରକାର ଆକୃତିଗତ ଓ ଭାବଗତ ବୈଶିଷ୍ଟ୍ୟ ଦେଖାଯାଏ । ସେ ସବୁଥିରେ ରାମ ସାହିତ୍ୟର ସ୍ୱାକ୍ଷର ସ୍ପଷ୍ଟ । ଭାବବସ୍ତୁ ଦିଗରୁ ମଧ୍ୟଯୁଗର ଓଡ଼ିଆ ସାହିତ୍ୟକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ—ଧର୍ମ ସାହିତ୍ୟ ଓ ରସ ସାହିତ୍ୟ । କୌଣସି ଜଡ଼ବସ୍ତୁ ବିଭାଜନ ଭଳି ଏହା ଅବଶ୍ୟ ସ୍ୱୟଂସଂପୂର୍ଣ୍ଣ ନୁହେ । କାରଣ, ଧର୍ମ ସାହିତ୍ୟ ଯେ ରସାଶ୍ରୟୀ ହୋଇନାହିଁ, ଅଥବା ରସ ସାହିତ୍ୟ ଯେ ଧର୍ମାଶ୍ରୟୀ ଆଦୌ ହୋଇ ନାହିଁ, ତାହା ନୁହେ । ତେବେ ଉଭୟର ଦୃଷ୍ଟିକୋଣରେ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ।

### ଲୋକସାହିତ୍ୟ ଓ ବିଦଗ୍ଧସାହିତ୍ୟ—

ପ୍ରକାଶଧାରା, ଶୈଳୀ ଓ ରଚନାରୀତିର ଆକୃତି ଦୃଷ୍ଟିରୁ ବିଗ୍ଭର କଲେ ମଧ୍ୟ ଆମ ସାହିତ୍ୟରେ ଦୁଇଟି ଧାରା ଦେଖାଯାଏ—ପ୍ରଥମଟି ଲୋକ-ସାହିତ୍ୟ ଓ ଦ୍ୱିତୀୟଟି ବିଦଗ୍ଧସାହିତ୍ୟ । ଗଙ୍ଗା ଯମୁନାର ଜଳଧାରା ପରି, ଏଇ ଦୁଇ ଧାରାର ରଙ୍ଗ ବହୁ ପରିମାଣରେ ଭିନ୍ନ ହେଲେ ହେଁ, ସର୍ବଦା ଏହା ଭିନ୍ନମୁଖୀ ହୋଇ ଗତି କରିନାହିଁ । ଅନେକ ସମୟରେ ଲୋକ ସାହିତ୍ୟ ନିଜଗୁଣରେ ସୁଧୀମଣ୍ଡଳୀର ଦୃଷ୍ଟି ଆକର୍ଷଣ କରେ । ବିଶେଷତଃ ଏଥିରେ ଅନୁଭୂତିର ରସ ପ୍ରଚୁର, ହୃଦୟର ପ୍ରକାଶ ବ୍ୟାପକ । ସେଥିଲାଗି ଏହା ସବୁସ୍ତରର ଲୋକଙ୍କୁ ଆକର୍ଷଣ କରିବା ସ୍ୱାଭାବିକ । ବିଦଗ୍ଧ ସାହିତ୍ୟରେ ସାଧାରଣତଃ ମସ୍ତିଷ୍କର ବ୍ୟବହାର ଅଧିକ । ଏହା ଅଳଙ୍କାର ବହୁଳ ଓ ଦୁର୍ବୋଧ । ସୁନିର୍ବାଚିତ କୋମଳ ଶବ୍ଦସମ୍ଭାର ଓ ସୁପରିକଳ୍ପିତ ଛନ୍ଦ-ଯୋଜନା କେତେକ ସମୟରେ ଏହାକୁ ହୃଦୟଗ୍ରାହୀ କରିଥାଏ । ଏହି ଗୁଣରେ କୁଶଳୀ ଗାୟକ କଣ୍ଠରୁ ଉଚ୍ଚାରିତ ହୋଇ ଅନେକ ସମୟରେ ଏହା ସାଧାରଣରେ ପ୍ରିୟ ଓ ପ୍ରଚଳିତ ହୋଇଥାଏ ।

**ଲୌକିକ ରାମ ସାହିତ୍ୟ—**

ଭାରତୀୟ ଲୋକସାହିତ୍ୟରେ ରାମାୟଣର ସ୍ଥାନ ସମସ୍ତେ ସ୍ୱୀକାର କରିଛନ୍ତି । ଆଦି କବି ବାଲ୍ମୀକିଙ୍କ ଲେଖନୀରେ ମହାକାବ୍ୟ ରୂପେ ପ୍ରତିଷ୍ଠା ପାଇବା ପୂର୍ବରୁ ରାମଚରିତ ଯୋଗୀ ଗୀତ ଭଳି ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ଥିବା କଥା ପଣ୍ଡିତମାନେ ଅନୁମାନ କରିଥାନ୍ତି । ତେଣୁ ଓଡ଼ିଶାରେ ପୁରାଣ ଓ କାବ୍ୟରୂପେ ରାମଚରିତର ପ୍ରକାଶ ଘଟିବା ପୂର୍ବରୁ ଏହା ଲୋକ-ମନରେ ବ୍ୟାପକ ଭାବେ ପ୍ରଚଳିତ ଥିବ । ତେବେ ଏ ବିଷୟରେ ନିର୍ଦ୍ଦିଷ୍ଟ ଭାବରେ କିଛି ମତବ୍ୟକ୍ତ କରିବା ଲାଗି ବର୍ତ୍ତମାନ ଉପାଦାନ ମିଳି ନାହିଁ । ଲୋକକଥା ଓ ଲୋକଗୀତରୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ରାମଚରିତର ଯେଉଁ ସୂଚନା ମିଳୁଛି । ତାହାର ଐତିହାସିକତା ନିର୍ଣ୍ଣୟ କରିବା ପୂର୍ଣ୍ଣତଃ ଅସମ୍ଭବ ।

କେତେକ ଓଡ଼ିଆ ଲୋକକଥା ଉପରେ ରାମାୟଣର ପରୋକ୍ଷ ପ୍ରଭାବ ଏବେ ସ୍ପଷ୍ଟ ଭାବରେ ଅନୁଭୂତ ହୁଏ । କୌଣସି ରାଜକୁମାରଙ୍କର ବନବାସ ଯିବା, ବନରେ ନରଖାଦକ ଅସୁର ବା ଅସୁରୁଣୀକୁ କୌଶଳରେ ହତ୍ୟା କରି, ଉକ୍ତ ରାକ୍ଷସ ପାଳିତା କୌଣସି ରାଜକୁମାରୀକୁ ମୁକ୍ତ କରି ଆଣିବାର ବର୍ଣ୍ଣନା, ବୁଢ଼ୀ ଅସୁରୁଣୀକଥା, ବାଳାବତୀ କନ୍ୟା କଥା ଆଦି ଅତ୍ୟନ୍ତ ଜନପ୍ରିୟ ଲୋକକାହାଣୀ ଗୁଡ଼ିକରେ ମିଳିଥାଏ । ଏ ସବୁ ଉପରେ ରାମବନବାସ ଓ ଲଙ୍କାର ରାକ୍ଷସ ପୁରୀରୁ ସୀତା ଉଦ୍ଧାର ଆଦିର ପରୋକ୍ଷ ପ୍ରଭାବ ଲକ୍ଷିତ ହୁଏ ।

ଲୋକଗୀତରେ ରାମାୟଣର ପ୍ରଭାବ ପ୍ରଚ୍ଛନ୍ନ ନ ହୋଇ ପ୍ରତ୍ୟକ୍ଷ । ଲୋକମୁଖରେ ପ୍ରଚଳିତ ଏକାଧିକ ହଳିଆ ରାମାୟଣମାନ ଏହାର ଦୃଷ୍ଟାନ୍ତ (୧) । ପଲ୍ଲୀଗୀତ ସଞ୍ଚୟନରେ ଅଧ୍ୟାପକ କୁଞ୍ଜବିହାରୀ ଦାସ ଏଭଳି ଦୁଇଟି ହଳିଆ ରମାୟଣ ପ୍ରକାଶ କରିଛନ୍ତି । ସଂଗୃହୀତ ଏହି ଗୀତ ଦୁଇଟି ମଧ୍ୟରେ ପ୍ରଥମଟି ପୁରାଣ ରଚନା ପ୍ରଣାଳୀରେ ଦାଣ୍ଡି ବୃତ୍ତରେ ଲେଖା, ଦ୍ୱିତୀୟଟି ଚଉତିଶା । ତାହାର ଭଣିତାରେ "ପରମା" ନାମ ଅଛି । ପ୍ରଥମଟିର ଆରମ୍ଭ ରାମଙ୍କ ବିଭାଠାରୁ, ଦ୍ୱିତୀୟଟିର ଆରମ୍ଭ ରାମଙ୍କ ଜନ୍ମ

(୧) ପଲ୍ଲୀଗୀତ ସଞ୍ଚୟନ—ଅଧ୍ୟାପକ କୁଞ୍ଜ ବିହାରୀ ଦାସ, ବିଶ୍ୱଭାରତୀ, ୧୯୫୮
ପୃ: ୩୬୮-୩୭୬ ।

ପ୍ରସଙ୍ଗରୁ । ଉତ୍ତରାକାଣ୍ଡର ସୀତାବନବାସ ପ୍ରସଙ୍ଗ ଏଗ୍ରନ୍ଥରେ ନାହିଁ । ଉତ୍ତରଟି ଯଥାସମ୍ଭବ ସଂକ୍ଷିପ୍ତ ପରିସର ମଧ୍ୟରେ ଦାଣ୍ଡି ରାମାୟଣର କଥାବସ୍ତୁ ଅନୁସୃତ ହୋଇଅଛି । ତେବେ ଏଥିରେ ପାତ୍ରପାତ୍ରୀମାନଙ୍କର ଚରିତ୍ର-ଚିତ୍ରଣରେ ହଳଧର ଦୃଷ୍ଟିକୋଣ ସ୍ୱତନ୍ତ୍ର । ରାମଙ୍କ ଚରିତ୍ରରେ ପୁରାଣ ଆରୋପିତ ଆଦର୍ଶକୁ ହଳଆ ବୁଝି ନାହିଁ । ସାଧାରଣ ଦୃଷ୍ଟିରେ ସେ ତାର ବିଶ୍ଳେଷଣ କରିଅଛି । ରାମଙ୍କ ଅସାମର୍ଥ୍ୟହିଁ ତାହା ଆଖିରେ ବଡ଼ ହୋଇ ଦେଖା ଦେଇଅଛି । କୈକେୟୀକୁ ଦମନ ନ କରି ରାଜ୍ୟ ଛାଡ଼ି ବନଗମନ କରିବା ରାମଙ୍କର ଏକ ଅବିବେକୀ କାର୍ଯ୍ୟ ବୋଲି ସେ ମନେ କରିଅଛି । ସୀତାଙ୍କୁ ହେରାଇ ନେବାରେ କେବଳ ରାବଣଠାରେ ସେ ସମସ୍ତ ଦୋଷ ଦେଖିନାହିଁ । ଆପଣା ସ୍ତ୍ରୀକୁ ପୋଷି ନ ପାରିବା ଦୋଷରେ ରାମଙ୍କୁ ବି ଦୋଷୀ କରିଅଛି (୧) ।

ଲୌକିକ ରାମ ସାହିତ୍ୟରେ ବିଶେଷ ଆଙ୍ଗିକଗତ ବୈଚିତ୍ର୍ୟ ନାହିଁ । ଏହାର ପ୍ରକାଶ ପ୍ରାକୃତିକ, ସରଳ ଓ ସାବଲୀଳ । ଛନ୍ଦର କୃତ୍ରିମତା, ଅଳଙ୍କାରର ଦୁର୍ବହତା ଏଥିରେ ସ୍ୱଳ୍ପ । ଲୋକ ହୃଦୟକୁ ସହଜ ଆନନ୍ଦରେ ଦ୍ରବୀଭୂତ କରିବା ଏହାର ଏକମାତ୍ର ଅଭିପ୍ରାୟ ।

## ପୌରାଣିକ ରାମ ସାହିତ୍ୟ —

ଲୋକ ସାହିତ୍ୟର ଆବେଷ୍ଟନୀ ଭେଦ କରି କ୍ରମ ଅଗ୍ରଗତି ପଥରେ ଓଡ଼ିଆ ସାହିତ୍ୟ ପୁରାଣ ଯୁଗରେ ପ୍ରବେଶ କଲା । ସାରଳା ଓ ପଞ୍ଚସଖାଙ୍କ ଲେଖନୀରେ ଓଡ଼ିଆ ସାହିତ୍ୟ ସମ୍ମୁଖରେ ନୂତନ ସମ୍ଭାବନା ଦେଖାଦେଲା । ଲୌକିକ ଉପକଥା ସ୍ଥାନରେ ପୁରାଣର ଦେବଚରିତ୍ର ଅବଲମ୍ବନରେ ଓଡ଼ିଆ ସାହିତ୍ୟ ଶାସ୍ତ୍ରର ମର୍ଯ୍ୟାଦାରେ ପ୍ରତିଷ୍ଠିତ ହେଲା । ଏହି ସମୟକୁ ଭାରତୀୟ ସଂସ୍କୃତି ରାଜ୍ୟରେ ଦେଢ଼ହଜାର ବର୍ଷ ଧରି ଯେଉଁ ସାଧନା ହୋଇ ଆସିଥିଲା, ତାହା ସଂସ୍କୃତ ଭାଷାରେ ପୁରାଣମାନଙ୍କରେ ଲିପିବଦ୍ଧ ହୋଇଥିଲା । ପୁରାଣ ଯୁଗରେ ମନ୍ଦାକିନୀ ଧାରାଭଳି ଏହା ଓଡ଼ିଆ ସାହିତ୍ୟରେ ପ୍ରବାହିତ ହେବାକୁ ଲାଗିଲା । ରାମ ସାହିତ୍ୟ ଏଥିରେ ଉପଯୁକ୍ତ ଅଂଶ ଗ୍ରହଣ କରିଅଛି । ସାରଳାଙ୍କ ବିଲଙ୍କା ରାମାୟଣ, ବଳରାମଙ୍କ ଦାଣ୍ଡି ରାମାୟଣ ଓ ମହେଶ୍ୱରଙ୍କ ଟୀକା

---

(୧) ପଲ୍ଲୀଗୀତି ସଞ୍ଚୟନ-ମୁଖବନ୍ଧ ପୃ: ୪୩ ।

ରାମାୟଣଠାରୁ ଆରମ୍ଭ କରି ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ରାମାୟଣ ପର୍ଯ୍ୟନ୍ତ ଅନେକ ରାମାୟଣ ପୁରାଣ ରଚନାରୀତିରେ ଲେଖା ହୋଇଅଛି ।

ପୌରାଣିକ ରାମ ସାହିତ୍ୟରେ ବିଶେଷ ଆଙ୍ଗିକଗତ ବୈଚିତ୍ର୍ୟ ଦେଖାଯାଏ ନାହିଁ । ପ୍ରଥମେ ଦାଣ୍ଡିବୃତ୍ତ ଓ ପରେ ନଅ ଅକ୍ଷରୀ, ଚଉଦ ଅକ୍ଷରୀ ଆଦି ସରଳ ବୃତ୍ତର ପ୍ରୟୋଗ ଏଥିରେ ଦେଖାଯାଏ । ପୁରାଣରେ କବିତ୍ୱ ଅପେକ୍ଷା କଥକତା ଅଧିକ । ଧର୍ମର ରଙ୍ଗ ଏଥିରେ ବେଶୀ । ଗଳ୍ପ ଛଳରେ ଲୋକ ମନକୁ ସରସ କରିବା ସଙ୍ଗେ ସଙ୍ଗେ, ମହାନ୍ ଚରିତ୍ରା-ବଳୀର ଆଦର୍ଶରେ ଲୋକମନକୁ ପ୍ରଭାବିତ କରିବା ଏଗୁଡ଼ିକର ଅଭିପ୍ରାୟ ।

କାବ୍ୟ, ସଙ୍ଗୀତ, ସନ୍ଦର୍ଭ ଆଦି ବହୁଧାରାରେ ବିକଶିତ ମଧ୍ୟଯୁଗର ଓଡ଼ିଆ ସାହିତ୍ୟର ଭିତ୍ତି ପୁରାଣ ଯୁଗରେ ସ୍ଥାପିତ ହୋଇଥିଲା । ଏହାର ସ୍ପଷ୍ଟ ସୂଚନା ପୁରାଣଗୁଡ଼ିକରୁ ମିଳେ । ସବୁପ୍ରକାର ସାହିତ୍ୟିକ ରଚନାର ବୀଜ ଏହି ପୁରାଣମାନଙ୍କରେ ଅନୁସନ୍ଧାନ କରାଯାଇପାରେ । ପୁରାଣର ଆଖ୍ୟାନ ଭିତରେ କାବ୍ୟ, କଥୋପକଥନରେ ନାଟକ, ଦେବସ୍ତୁତିରେ ସଙ୍ଗୀତ ଓ ସନ୍ଦର୍ଭର ବୀଜ ନିହିତ ।

## ସନ୍ଦର୍ଭ ପର୍ଯ୍ୟାୟରେ ରାମ ସାହିତ୍ୟ—

ଓଡ଼ିଆ ପୁରାଣ ସାହିତ୍ୟର ବିକାଶ ପରେ ବିଶେଷ ଭାବରେ ପଞ୍ଚ-ସଖାଯୁଗରେ ସନ୍ଦର୍ଭ ସାହିତ୍ୟର ବିକାଶ ଦେଖା ଦେଇଥିଲା । ବିଭିନ୍ନ ସମ୍ପ୍ରଦାୟଗତ ଓ ଦର୍ଶନତତ୍ତ୍ୱଗତ ବିଚାରକୁ କେନ୍ଦ୍ର କରି ଏଗୁଡ଼ିକ ଲିଖିତ । ଏ ଧାରା ବହୁଦିନ ପର୍ଯ୍ୟନ୍ତ ଚାଲିଥିଲା । ଓଡ଼ିଆରେ ଯେତେଗୁଡ଼ିଏ ଗୀତା ସଂହିତା ଆଦି ମିଳେ, ସେସବୁ ଏହି ଶ୍ରେଣୀର ଅନ୍ତର୍ଗତ । ପୁରାଣଭଳି କଥକତା, ଅଥବା କାବ୍ୟଭଳି ଅଳଙ୍କାର ପ୍ରୟୋଗ ଏଥିରେ ନ ଥାଏ । ସରଳ, ପ୍ରକାଶକ୍ଷମ ଭାଷାରେ ଦାର୍ଶନିକ ତତ୍ତ୍ୱାବଳୀର ବ୍ୟାଖ୍ୟାହିଁ ଏହାର ବିଶେଷତ୍ୱ ।

ପୁରାଣ, କାବ୍ୟଆଦି ପର୍ଯ୍ୟାୟରେ ରାମ ସାହିତ୍ୟର ଯେଉଁ ପରିମାଣରେ ବିକାଶ ଦେଖିବାକୁ ମିଳେ, ସନ୍ଦର୍ଭ ପର୍ଯ୍ୟାୟରେ ତାହା ମିଳେ ନାହିଁ — ମୌଳିକ ବିକାଶ ଦେଖିବାକୁ ମିଳେ ନାହିଁ କହିଲେ ଚଳେ । ତେବେ

ସଂସ୍କୃତର ଅନୁସରଣରେ ଓଡ଼ିଆରେ ଏ ଭଳି କେତେକ ରଚନା ମିଳେ । 'ରାମ ହୃଦୟ', 'ରାମ ଗୀତା' ଆଦି ଏହାର ନିଦର୍ଶନ । ଏ ସବୁ ଅଧ୍ୟାତ୍ମ ରାମାୟଣର ଅନ୍ତର୍ଗତ । 'ରାମ ହୃଦୟ'ରେ ରାମଙ୍କୁ ପରମ ପୁରୁଷ ଓ ସୀତାଙ୍କୁ ପ୍ରକୃତି ବୋଲି ବ୍ୟକ୍ତ କରାଯାଇଅଛି । ଭଗବତ ଗୀତାରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ଯେଉଁସ୍ଥାନ, ରାମ ଗୀତାରେ ରାମ ଓ ଲକ୍ଷ୍ମଣଙ୍କୁ ସେହିସ୍ଥାନ ଦେବାଲାଗି ଉଦ୍ୟମ ହୋଇଛି । ରାମ ଉପାସନାର ଦାର୍ଶନିକ ବ୍ୟାଖ୍ୟା ଏହାର ଏକମାତ୍ର ଅଭିପ୍ରାୟ ।

## ରାମ ସାହିତ୍ୟର କାବ୍ୟିକ ରୂପ—

ରାମଚରିତ ଅବଲମ୍ବନରେ କାବ୍ୟ ରଚନାର ପରମ୍ପରା ଓଡ଼ିଆ ସାହିତ୍ୟରେ ଖୁବ୍ ପ୍ରାଚୀନ । ଓଡ଼ିଆ କାବ୍ୟର ବିକାଶ ଭଞ୍ଜଯୁଗରେ ବିଶେଷରୂପେ ସାଧିତ ହୋଇଥିଲେହେଁ ଏହାର ବହୁ ପୂର୍ବରୁ କାବ୍ୟ ରଚନାର ସୂତ୍ର ଦେଖା ଦେଇଛି । ସଂସ୍କୃତ ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦେଶ ଅନୁସାରେ କାବ୍ୟର ଶରୀର 'ଉତ୍ପାଦ୍ୟ' ଅର୍ଥାତ୍ କବିର ନିଜସ୍ୱ କଳ୍ପନା, ଅଥବା ପୁରାଣ କଥାରୁ ସମ୍ଭୂତ ହୋଇପାରେ । ଏହି ଭାବରେ ପୁରାଣ କଥା ରୂପେ ରାମଚରିତ ଓଡ଼ିଆ କବିମାନଙ୍କୁ ସବୁ ସମୟରେ କାବ୍ୟ ରଚନାର ପ୍ରେରଣା ଯୋଗାଇ ଆସିଅଛି । ଅର୍ଜୁନ ଦାସଙ୍କ 'ରାମ ବିଭା'କୁ ସର୍ବପ୍ରଥମ ଓଡ଼ିଆ କାବ୍ୟ ବୋଲି ଏପର୍ଯ୍ୟନ୍ତ ଗ୍ରହଣ କରାଯାଇଅଛି । ଏହାପରେ ଧନଞ୍ଜୟ ଭଞ୍ଜଙ୍କ 'ରଘୁନାଥ ବିଳାସ' ଓ ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ବିଶେଷ ପ୍ରସିଦ୍ଧ ରଚନା ।

ପ୍ରାଚୀନ ଓଡ଼ିଆ କାବ୍ୟଧାରା ନାନା ଅକୃତ୍ରିମ ବୈଶିଷ୍ଟ୍ୟରେ ପରିପୂର୍ଣ୍ଣ । ପୁରାଣ ବା ସନ୍ଦର୍ଭଠାରୁ ଏହାର ଶୈଳୀ ସ୍ୱତନ୍ତ୍ର । ପୁରାଣର କଥକତା ବା ସନ୍ଦର୍ଭର ତତ୍ତ୍ୱ ବ୍ୟାଖ୍ୟା ଏହାର ଆଦର୍ଶ ନୁହେ । ଆଳଙ୍କାରିକ ଭଙ୍ଗିରେ ନାୟକ ନାୟିକାଙ୍କ ବିରହ ମିଳନର କଳାପୁଷ୍କଳ ବର୍ଣ୍ଣନା ଏହାର ଲକ୍ଷ୍ୟ । କାବ୍ୟର ଭାଷାରେ ପୁରାଣର ସାରଲ୍ୟ ଓ ସନ୍ଦର୍ଭର ଦ୍ରୁତଗତି ନ ଥାଏ । ଏହାର ଭାଷା ମଣ୍ଡନଧର୍ମୀ, ବିଭିନ୍ନ ରାଗରାଗିଣୀପୂର୍ଣ୍ଣ ସଙ୍ଗୀତ ସମାବେଶରେ ସମୃଦ୍ଧ ।

ପ୍ରାଥମିକ ଯୁଗର କାବ୍ୟରେ ସହଜ କବିତ୍ୱ ହିଁ ଅଧିକ । କବି ଅର୍ଜୁନ ଦାସଙ୍କ ରାମବିଭା ଏହାର ଦୃଷ୍ଟାନ୍ତ । ମହାଭାରତ ଓ ରାମାୟଣର କଥାବସ୍ତୁ

ଅବଲମ୍ବନରେ ଅର୍ଜୁନ ଦାସ 'ରାମ ବିଭା' କାବ୍ୟ ଲେଖିଅଛନ୍ତି । ଏଥିରେ ବକ୍ତା ମାର୍କଣ୍ଡେୟ ଓ ଶ୍ରୋତା ଯୁଧିଷ୍ଠିର । କାବ୍ୟଟି ମିଳନାନ୍ତ । ବିଶ୍ୱାମିତ୍ରଙ୍କ ସହିତ ରାମଙ୍କ ବନଗମନକାଳୀନ ଅଯୋଧ୍ୟାର ଶୋକଦଶାରୁ ଆରମ୍ଭ ହୋଇ ବିଭାପରେ ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନରେ କାବ୍ୟଟି ଶେଷ ହୋଇଅଛି । ପରଶୁରାମଙ୍କୁ କବି ଏଠାରେ ପ୍ରତିନାୟକ ରୂପେ ଉପସ୍ଥାପିତ କରି ରାମଚନ୍ଦ୍ରଙ୍କ ଗୌରବ ପ୍ରକଟିତ କରିଅଛନ୍ତି । ବିଭିନ୍ନ ରାଗରାଗିଣୀ ଏଥିରେ ବ୍ୟବହୃତ ହୋଇଛି । କାବ୍ୟଟିରେ ଭକ୍ତିଭାବନା ସ୍ପଷ୍ଟ ।

ଉପେନ୍ଦ୍ର ଭଞ୍ଜଙ୍କ ସମୟକୁ ଓଡ଼ିଆ କାବ୍ୟ ରଚନାର ଧାରା ବିଶେଷ ରୂପେ ପ୍ରତିଷ୍ଠିତ ହୋଇ ସାରିଥିଲା । ଏହି ସମୟରେ ମୁଖ୍ୟତଃ କାଳ୍ପନିକ କାବ୍ୟଗୁଡ଼ିକ ସହିତ କେତେକ ପୌରାଣିକ କାବ୍ୟ ବି ଲେଖା ହେଉଥିଲା । ଯୌନରସ ମୂଳକ ଶୃଙ୍ଗାରିକତା, ବିଳାସ ଓ ସମ୍ଭୋଗ ବର୍ଣ୍ଣନା ଏଥିରେ ମୁଖ୍ୟ ପ୍ରବୃତ୍ତି ଥିଲା । 'ରଘୁନାଥ ବିଳାସ', ବୈଦେହୀଶ ବିଳାସ' ଆଦି ନାମକରଣରୁ ଏହାର ସୂଚନା ଲକ୍ଷ୍ୟ କରିବାର କଥା । ପୌରାଣିକ କାବ୍ୟ-ମାନଙ୍କରେ ପୁରାଣ କାହାଣୀଗୁଡ଼ିକ ଅତି ସଂକ୍ଷିପ୍ତ ଭାବରେ ପ୍ରକାଶିତ ହେଉଥିଲା । 'ବୈଦେହୀଶ ବିଳାସ' କାବ୍ୟରେ ଦାଣ୍ଡିରାମାୟଣର ଘଟଣା ପରମ୍ପରାକୁ ଉପେନ୍ଦ୍ର ଭଞ୍ଜ ମୂଳତଃ ଗ୍ରହଣ କରିଥିଲେହେଁ, ସାମ୍ପ୍ରଦାୟିକ ସଂସ୍କୃତ ରାମାୟଣ ଓ ଅନ୍ୟାନ୍ୟ କାବ୍ୟରୁ ଉପାଦାନ ବି ସଂଗ୍ରହ କରିଛନ୍ତି । ଏଥିରେ ଭକ୍ତ ଧୀବର ପ୍ରସଙ୍ଗ ଏହାର ଏକ ଦୃଷ୍ଟାନ୍ତ । ଏହା ଅଧ୍ୟାତ୍ମ-ରାମାୟଣରୁ ଗୃହୀତ ।

ମୂଳତଃ ଦେଖିଲେ, ପୁରାଣ ଯୁଗରେ ଓଡ଼ିଆ କବିମାନସ ଯାହା ଥିଲା, କାବ୍ୟଯୁଗରେ ତାହା କୌଣସି ଦିଗରେ ପ୍ରସାରିତ ହୋଇନାହିଁ । ଜ୍ୟୋତିଷ, ସାମୁଦ୍ରିକ, କାମସୂତ୍ର ଓ ଦେବୀସ୍ତୁତି ଗୁଡ଼ିକର ଅବଲମ୍ବନରେ ନାରୀରୂପ ବର୍ଣ୍ଣନା ଆଦି ପୁରାଣମାନଙ୍କରେ ଯେପରି ଦେଖିବାକୁ ମିଳେ, କାବ୍ୟଯୁଗରେ ତାହାର ଅନୁସରଣ ହିଁ ସୃଷ୍ଟି । ତେବେ ପୁରାଣଗୁଡ଼ିକର ପବିତ୍ର ଧାର୍ମିକତା ଓ ସହଜ ସୁନ୍ଦର ଅଭିବ୍ୟକ୍ତି ସ୍ଥାନରେ କାବ୍ୟଯୁଗରେ ଶୃଙ୍ଗାରିକତା ଓ ଆଳଙ୍କାରିକ ମଣ୍ଡନ କଳାର ପ୍ରାଚୁର୍ଯ୍ୟ ଲକ୍ଷ୍ୟଣୀୟ । କାବ୍ୟ ଏକପ୍ରକାର ଦରବାରୀ ସାହିତ୍ୟ । ସୁଧୀ ରସିକଙ୍କ ମନୋରଞ୍ଜନରେ ଏହାର ଜନ୍ମ ଓ ଅଭିପ୍ରାୟ ।

## ରାମ ସାହିତ୍ୟର ସଙ୍ଗୀତ ଓ ନାଟ୍ୟରୂପ—

କୋଇଲି, ଚଉତିଶା, ଚୋଟି, ଛାନ୍ଦ ଓ ଲୀଳା ଆଦିରେ ରାମ ସାହିତ୍ୟର ସଙ୍ଗୀତ ଓ ନାଟ୍ୟରୂପ ଦେଖିବାକୁ ମିଳେ । ରାମ ସାହିତ୍ୟର ଆଦିଯୁଗରୁ ଏହି ସମସ୍ତ ବିଭିନ୍ନ ଗୀତର ରଚନାର ପରମ୍ପରା ଦେଖା ଦେଇଛି । ଆଜି ପର୍ଯ୍ୟନ୍ତ ଏ ସବୁ ସାଧାରଣ ଜନତାର ଆଦରର ସାମଗ୍ରୀ ହୋଇ ରହିଅଛି ।

## କୋଇଲି ଓ ଚଉତିଶା—

କୋଇଲି ଓ ଚଉତିଶାର ଅକୃତି ଓ ଇତିହାସ ପ୍ରତି ଲକ୍ଷ୍ୟ କଲେ ତାହାର ବୈଶିଷ୍ଟ୍ୟ ବିଶେଷ ଭାବରେ ଉପଲବ୍ଧ ହୋଇଥାଏ । ମାର୍କଣ୍ଡ ଦାସଙ୍କର କେଶବ କୋଇଲିକୁ, ଏବେ ମିଳୁଥିବା ଓଡ଼ିଆରେ ପ୍ରଥମ ଲେଖା ସାହିତ୍ୟ ବୋଲି କେତେକ କହୁଥାଆନ୍ତି । ଏହାପରେ ପଞ୍ଚସଖା ଯୁଗରେ ବଳରାମ ଦାସ ଓ ଜଗନ୍ନାଥ ଦାସ ତଥା କାବ୍ୟ ଯୁଗରେ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କଠାରୁ ଆରମ୍ଭ କରି ବହୁ କବି କୋଇଲି ଓ ଚଉତିଶା ରଚନାରେ ହାତ ଦେଇଛନ୍ତି । ବିଭିନ୍ନ ଯୁଗର ସାହିତ୍ୟିକ ରୀତି ଓ ରୁଚିର ପ୍ରଭାବରେ କେତେବେଳେ ଏଗୁଡ଼ିକ ସହଜ ସରଳ ଭାଷାରେ ସାଧାରଣ ମାନବର ଅନୁଭୂତିର ଧାରକ ହୋଇଛି, ପୁଣି କେତେବେଳେ ଧାର୍ମିକ ତତ୍ତ୍ୱ ବ୍ୟାଖ୍ୟାର ସାଧନ, ଅଥବା କୃତ୍ରିମ ଅଳଙ୍କାରିକ ରଚନା ପାଣ୍ଡିତ୍ୟର ଆଧାର ଭାବେ ଆତ୍ମପ୍ରକାଶ କରିଅଛି । ତେଣୁ ଏହି ଭାବରେ ଦେଖିଲେ କୋଇଲି ଓ ଚଉତିଶା ସମ୍ପ୍ରଦାୟ ଓଡ଼ିଆ ସାହିତ୍ୟର ମୁକୁର ।

ଆକୃତି ଦିଗରୁ ଦେଖିଲେ କୋଇଲି ଏକପ୍ରକାର ସ୍ୱଗତୋକ୍ତିମୂଳକ ଖଣ୍ଡ କବିତା । ଏହାର ପାତ୍ର ସାଧାରଣତଃ ପୌରାଣିକ, ଅଧିକାଂଶ ସ୍ଥଳରେ ନାରୀ ଯଶୋଦା, କୌଶଲ୍ୟା ବା ସୀତା (ଅବଶ୍ୟ ତାତ୍ତ୍ୱିକ ରଚନା ଗୁଡ଼ିକରେ ପାତ୍ର ହେଉଛି ସାଧକ—ଜ୍ଞାନୋଦୟ କୋଇଲି ଏହାର ଦୃଷ୍ଟାନ୍ତ) । ଏଥିରେ ବକ୍ତା କୋଇଲିକୁ ଉଦ୍ଦେଶ୍ୟ କରି ଆପଣାର ମନୋଭାବ ପ୍ରକାଶ କରିଥାଏ । ଚଉତିଶା ଏକ ପ୍ରକାର ଅକ୍ଷର ନିୟମାନୁବନ୍ଧ ବର୍ଣ୍ଣନାତ୍ମକ ଖଣ୍ଡ କବିତା । ଏଥିରେ ବହୁପ୍ରକାର ରାଗରାଗିଣୀର ସମାବେଶ ଦେଖାଯାଏ । କେତେକ ସ୍ଥଳରେ କୋଇଲି ମଧ୍ୟ ଚଉତିଶାର ଅକ୍ଷର ନିୟମରେ ଲେଖା

ହୋଇଥିବାର ଦେଖିବାକୁ ମିଳେ । ବଳରାମ ଦାସଙ୍କ କାନ୍ତକୋଇଲି ଏହାର ଦୃଷ୍ଟାନ୍ତ ।

ରାମାୟଣ କଥା ଅବଲମ୍ବନରେ ଲିଖିତ କୋଇଲି ଓ ଚଉତିଶା-ଗୁଡ଼ିକ ସାଧାରଣତଃ ଶୋକାତ୍ମକ । ପୁତ୍ରର ବିଚ୍ଛେଦରେ ଜନନୀର ବିଷାଦ, ପ୍ରିୟ ବା ପ୍ରିୟାର ବିରହରେ ପ୍ରେମୀର ମର୍ମଦାହ ଏହାର ଉପଜୀବ୍ୟ । ଶଙ୍କର ଦାସଙ୍କ ବାରମାସୀ କୋଇଲିରେ ବାରମାସର ଘଟଣାରାଜି ସହିତ ବନବାସୀ ପୁତ୍ର ରାମଙ୍କ ସ୍ମୃତି ଜନନୀ କୌଶଲ୍ୟାଙ୍କ ହୃଦୟକୁ ଯେପରି ଶୋକାକୁଳିତ କରିଅଛି ତାହା ପ୍ରକାଶିତ ହୋଇଛି । ଏଥିରେ ବାରମାସର ବର୍ଣ୍ଣନା ମାର୍ଗଶିରଠାରୁ ଆରମ୍ଭ ହୋଇ କାର୍ତ୍ତିକ ମାସରେ ଶେଷ ହୋଇଅଛି । ଶ୍ରମର ଅମଳ ସମୟ ଅବଲମ୍ବନରେ ଏହା ହୋଇଥିବା ସମ୍ଭବ । ବଳରାମ ଦାସଙ୍କ କାନ୍ତକୋଇଲି, ଚଉତିଶା ଅକ୍ଷର ନିୟମରେ ରଚିତ । ଏଥିରେ ସୀତା ରାବଣ ଦ୍ୱାରା ଅପହୃତା ହେବାର ଘଟଣା କରୁଣ ଭାବରେ ବର୍ଣ୍ଣିତ । ପ୍ରାଚୀ ସମିତି ସଙ୍କଳିତ "ଚଉତିଶା ମଧୁଚକ୍ର"ରେ ରାମାୟଣ ଘଟଣାର ବର୍ଣ୍ଣନାଥିବା କେତୋଟି ଚଉତିଶା ଦେଖିବାକୁ ମିଳେ । ଦ୍ୱିତୀୟ ଖଣ୍ଡରେ ଥିବା 'ସୀତାନୁଚିନ୍ତା ଚଉତିଶା'ରେ ଅଶୋକ ବନରେ ବିରହିଣୀ ସୀତାଙ୍କ ଶୋକ ଓ ପଞ୍ଚମ ଖଣ୍ଡରେ "ସୀତା ବିଚ୍ଛେଦ ଚଉତିଶା"ରେ ମାଲ୍ୟବନ୍ତରେ ବିରହୀ ରାମଚନ୍ଦ୍ରଙ୍କ ଶୋକ ବର୍ଣ୍ଣିତ ହୋଇଛି । ରସକୂଲ୍ୟା ତଟରେ କୌଣସି ଅଜ୍ଞାତ କବିଙ୍କ ଦ୍ୱାରା ରଚିତ 'ମାୟାମୃଗ ଚଉତିଶା'ରେ ମାୟାମୃଗ ବଧଠାରୁ ଲଙ୍କାବିଜୟ ପରେ ରାମାଭିଷେକ ପର୍ଯ୍ୟନ୍ତ ସମସ୍ତ ଘଟଣା ସଂକ୍ଷେପରେ ବର୍ଣ୍ଣନା କରାଯାଇଅଛି । 'ଆରତତ୍ରାଣ ଚଉତିଶା'ରେ ଜଗନ୍ନାଥଙ୍କୁ ଯେପରି ପ୍ରାର୍ଥନା କରାଯାଇଅଛି, ଏଥିରେ ଥିବା 'ରାମଚନ୍ଦ୍ର ଜଣାଣ' ଚଉତିଶାରେ ସେହିପରି ରାମଚନ୍ଦ୍ରଙ୍କୁ ପ୍ରାର୍ଥନା କରାଯାଇଅଛି । ଏହା ବ୍ୟତୀତ 'ସୀତା ବିଳାପ ଚଉତିଶା', 'କୌଶଲ୍ୟାରୋଦନ ଚଉତିଶା' ଆଦି କେତେକ କ୍ଷୁଦ୍ର ପୁସ୍ତକ ଦେଖିବାକୁ ମିଳେ । କରୁଣ ରସାତ୍ମକ ଏହିଭଳି ବହୁସଂଖ୍ୟକ ଚଉତିଶା ଓ କୋଇଲି ଗୀତମାନ ଜ୍ଞାତ ଅଜ୍ଞାତ ବହୁ କବିଙ୍କ ଦ୍ୱାରା ରଚିତ ହୋଇ ପଲ୍ଲୀଜନତାର ହୃଦୟକୁ ଯେପରି ଗଭୀର ଭାବେ ଦ୍ରବିତ କରି ଆସିଅଛି, ତାହା ଅତୁଳନୀୟ ।

## ପୋଇ ଓ ପଢ଼ି—

ଓଡ଼ିଆ ଛାନ୍ଦ ସାହିତ୍ୟରେ ପୋଇ ଓ ପଢ଼ି ନାମରେ କେତେକ ରଚନା ଦେଖାଯାଏ । ସାଧାରଣତଃ ପୌରାଣିକ କାହାଣୀ ଅବଲମ୍ବନରେ ଏଗୁଡ଼ିକ ରଚିତ । ପୋଇ ରଚନାରେ ଏକ ବିଶେଷ ରୀତି ଦେଖାଯାଏ— ଯେଉଁ କବିତା ଯେତିକି ପୋଇ ନାମରେ ନାମିତ, ସେଥିରେ ସେତିକି ସଂଖ୍ୟକ ଛାନ୍ଦ ଏବଂ ପ୍ରତ୍ୟେକ ଛାନ୍ଦରେ ସେତିକି ସଂଖ୍ୟକ ପଦ ରହିଥାଏ (୧) । ଲକ୍ଷ୍ମୀଧର ଦାସଙ୍କ ପଚିଶ ପୋଇରେ ଏ ଲକ୍ଷଣ ଦେଖାଯାଏ । ଏଥିରେ ପ୍ରତ୍ୟେକ ପୋଇ ଶେଷରେ ଉକ୍ତ ଛାନ୍ଦର ପ୍ରଧାନ ପାତ୍ର ମୁଖରେ ଚୌପଦୀ ରାଗରେ ଗୋଟିଏ ଗୋଟିଏ ଗୀତ ଦେଖାଯାଏ । ପୁରାଣ ରଚନା-ରୀତିରେ ଶିବ ପାର୍ବତୀଙ୍କ ପ୍ରଶ୍ନୋତ୍ତର ରୂପେ ଏହା ରଚିତ । ରାମଙ୍କ ଜନ୍ମଠାରୁ ଲଙ୍କାଯୁଦ୍ଧ ପୂର୍ବର ସମସ୍ତ ଘଟଣା ଅତ୍ୟନ୍ତ ସଂକ୍ଷେପରେ ବର୍ଣ୍ଣନା କରିସାରି "ଲଙ୍କାପୁରୁ ରଘୁମଣି ଅସୁରଙ୍କୁ ଜିଣି ସୀତାଙ୍କୁ ଆଣିପାରିଲେ ଝିକି" ପାର୍ବତୀ ଏହି ପ୍ରଶ୍ନ ଶିବଙ୍କୁ କରିଅଛନ୍ତି । ଏହାର ଉତ୍ତର ସ୍ୱରୂପ ଶିବଙ୍କ ମୁଖରେ ସମୁଦାୟ ଲଙ୍କାଯୁଦ୍ଧର ଘଟଣା ବିଶଦ ଭାବରେ ବର୍ଣ୍ଣନା କରାଯାଇଅଛି । ଏହି ଯୁଦ୍ଧ ବର୍ଣ୍ଣନା ଦ୍ୱିତୀୟ ପୋଇଠାରୁ ପଚିଶ ପୋଇ ପର୍ଯ୍ୟନ୍ତ ପରିବ୍ୟାପ୍ତ ।

କବି ଲକ୍ଷ୍ମୀଧର ଦାସଙ୍କ ନାମରେ ଭଣିତ "ଅଙ୍ଗଦପଢ଼ି" ବୋଲି ଏକ କାବ୍ୟଗ୍ରନ୍ଥ ଦେଖାଯାଏ । ଏହା ନବାକ୍ଷରୀ ବୃତ୍ତରେ ରଚିତ । ଏଥିରେ ଆଠ ଗୋଟି ଅଧ୍ୟାୟ ଅଛି । ରାମଙ୍କ ବନବାସଠାରୁ ଏହାର କଥାରମ୍ଭ । ମାର୍କଣ୍ଡ ଋଷି ଯୁଧିଷ୍ଠିରଙ୍କ ଆଗରେ ଏହା କହିଅଛନ୍ତି । ଏହାର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଅଧ୍ୟାୟରେ ଅଙ୍ଗଦର ରାବଣଠାକୁ ରାମଙ୍କ ପକ୍ଷ ଘେନିଯିବା ପ୍ରସଙ୍ଗ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ସମୁଦାୟ ଗ୍ରନ୍ଥରେ ଏହା ଅର୍ଦ୍ଧାଧିକ

---

(୧) ଝଂକାର, ୩୨ଶ ବର୍ଷ, ୫ମ ସଂଖ୍ୟା, ପୋଇ ସାହିତ୍ୟ-ବନବନ୍ଧୁ ରଥ ଏମ୍.ଏ. ଏହି ଉପାଦେୟ ପ୍ରବନ୍ଧରେ ଶ୍ରୀଯୁକ୍ତ ରଥ 'ପୋଇ'ର ଲକ୍ଷଣ ଓ ସାହିତ୍ୟିକ ମୂଲ୍ୟ ନିରୂପଣ କରିଛନ୍ତି । ପୋଇ ସଂଖ୍ୟା ଅନୁସାରେ ଗ୍ରନ୍ଥର ଛାନ୍ଦ, ଛାନ୍ଦର ପଦ ଓ ପଦର ଅକ୍ଷର ସଂଖ୍ୟା ସମାନ ହେବା କଥା ସେ ଲେଖିଛନ୍ତି । କିନ୍ତୁ ପୋଇ ସଂଖ୍ୟା ସହିତ ପ୍ରତି ପଦର ଅକ୍ଷର ସଂଖ୍ୟା ସମାନ ଥିବା ରଚନା ମୁଁ ଦେଖିନାହିଁ ।

ସ୍ଥାନ ଅଧିକାର କରିଅଛି । ଏହା ପରେ ସଂକ୍ଷେପରେ ଲଙ୍କାଯୁଦ୍ଧ ଓ ଲଙ୍କା-ବିଜୟ ପରେ ରାମଚନ୍ଦ୍ରଙ୍କର ଅଯୋଧ୍ୟାରେ ଅଭିଷେକ ପ୍ରସଙ୍ଗ ବର୍ଣ୍ଣିତ । ତୁଳନାରେ ଦେଖିଲେ ପରଶ ପୋଇ ଓ ଅଙ୍ଗଦ ପଡ଼ିର କଥା ଭାଗର ବିସ୍ତାର ପ୍ରାୟ ସମାନ । ତେବେ ପରଶ ପୋଇରେ ଯୁଦ୍ଧ ବର୍ଣ୍ଣନା ହିଁ ମୁଖ୍ୟ ଓ ଅଙ୍ଗଦ ପଡ଼ିରେ ରାବଣ ଓ ଅଙ୍ଗଦର ସଂଳାପ ମୁଖ୍ୟ ସ୍ଥାନ ଅଧିକାର କରିଅଛି । ଏହି ସଂଳାପ ମଧ୍ୟରେ ଅଙ୍ଗଦ ରାବଣର ଐଶ୍ୱର୍ଯ୍ୟକୁ ଧିକ୍କାର କରିଅଛି ଓ ରାବଣ ରାମଚନ୍ଦ୍ରଙ୍କ ମହିମାକୁ ଖଣ୍ଡନ କରିଅଛି । ରାଜେଶ୍ୱରୀର ଅପମାନ, ଏ ସମୁଦାୟ କାବ୍ୟର ମର୍ମ ଭଳି ମନେ ହୁଏ । ଅଙ୍ଗଦ ପଡ଼ିର ସଂଳାପ ବିଶେଷ ନାଟକୀୟ ଓ ଉପଭୋଗ୍ୟ ।

ଭିନ୍ନ ଭିନ୍ନ କବିଙ୍କ ନାମରେ ବିଭିନ୍ନ ବିଷୟରେ 'ପୋଇ' ଜାତୀୟ ରଚନା ମିଳେ । କିନ୍ତୁ ଉକ୍ତ ଅଙ୍ଗଦ ପଡ଼ି ବ୍ୟତୀତ ଏ ଜାତୀୟ ଅନ୍ୟ ଗ୍ରନ୍ଥ କଥା ଜଣା ନାହିଁ । 'ପୋଇ' ଓ 'ପଡ଼ି' ଉଭୟ ସଂସ୍କୃତ 'ପଦୀ' ଶବ୍ଦର ନିକଟବର୍ତ୍ତୀ । 'ପୋଇ'ରେ ସଙ୍ଗୀତ ଓ 'ପଡ଼ି'ରେ ନାଟ୍ୟରୀତିର ପ୍ରାଧାନ୍ୟ ଦେଖିବାକୁ ମିଳେ ।

## ଲୀଳା ଓ ତାହାର ପରବର୍ତ୍ତୀ ବିକାଶ—

ସମ୍ପୂର୍ଣ୍ଣ ନାଟକ ରୀତିର ରଚନା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିରଳ । ଲୀଳା ହିଁ ଆମର ପ୍ରଥମ ନାଟକୀୟ ରଚନା । ଅଷ୍ଟାଦଶ ଶତକର ଶକଟି ରାଜାଙ୍କ ରଚିତ ରାମଲୀଳାକୁ ପ୍ରଥମ ଲୀଳା ସାହିତ୍ୟ ବୋଲି ବିନାୟକ ମିଶ୍ର କହି ଅଛନ୍ତି (୧) । ଏତେବେଳକୁ ପୁରାଣ, ସନ୍ଦର୍ଭ ଓ କାବ୍ୟରଚନାର ରୀତି ସିଦ୍ଧ ହୋଇ ସାରିଥିଲା । ସ୍ୱତନ୍ତ୍ର ଭାବରେ ନାଟକ ଶ୍ରେଣୀୟ ସାହିତ୍ୟ ମିଳୁ ନ ଥିଲେ ହେଁ ଏହାର ଉପାଦାନର ଅଭାବ ନ ଥିଲା । ଆମ ପୁରାଣମାନଙ୍କରେ, ବିଶେଷତଃ ବଳରାମଙ୍କ ରାମାୟଣରେ ଥିବା ସଂଳାପ ଗୁଡ଼ିକରେ ନାଟକର ଉପାଦାନ ପ୍ରଚୁର । ପୁରାଣ ପାଠରେ ନାଟକୀୟ କଳା ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ । ସାଧାରଣତଃ ପୁରାଣ ପାଠକଲାବେଳେ, ମଝିରେ ମଝିରେ ଦୋହା ଧରିବାକୁ ଅନେକ ପାଳିଆ ତାହା ସହିତ ଯୋଗ ଦିଅନ୍ତି । ପୌରାଣିକ ପାତ୍ରମାନଙ୍କର ଉକ୍ତି ପ୍ରତ୍ୟୁକ୍ତିର ବିଶେଷ ମର୍ମ ଅନେକ ସମୟରେ ଏମାନଙ୍କ 'ଦୋହା'ରେ ଫୁଟି ଉଠେ ! 'ଦୋହା' ଧରୁଥିବା ଲୋକଙ୍କର

(୧) ଓଡ଼ିଆ ସାହିତ୍ୟର ଇତିହାସ ପୃ: ୧୪୭ ।

ପୁରାଣ ପାଠରେ ଅଧିକ ସଙ୍କିପ୍ତ ଅଂଶ ଗ୍ରହଣ ଆକାଂକ୍ଷାରୁ ଲୀଳାର ବିକାଶ ହୋଇଥିବା ସମ୍ଭବ ।

ଲୀଳାରେ ବିଭିନ୍ନ ପାତ୍ରଙ୍କର ଅଂଶ ଭିନ୍ନ ଭିନ୍ନ ବ୍ୟକ୍ତି ଗାନ କରିବାର ରୀତି ଥିଲା । ସର୍ବତ୍ର ନାଟ୍ୟବ୍ୟକ୍ତି ମୁଖରେ ପ୍ରଥମ ପୁରୁଷ ପ୍ରଯୁକ୍ତ ନ ହୋଇ ତୃତୀୟ ପୁରୁଷ ଅପେକ୍ଷିତ ହେଉଥିଲା । ବୈଷ୍ଣବ ସଦାଶିବଙ୍କ କୃତ ରାମଲୀଳାରୁ ଏହାର ଦୃଷ୍ଟାନ୍ତ ମିଳେ । ରଚନାରୀତି ଦୃଷ୍ଟିରୁ ବିଚାର କଲେ ସଦାଶିବଙ୍କ ରାମଲୀଳା ପୁରାଣର ନିକଟବର୍ତ୍ତୀ ବୋଲି ମନେ ହୁଏ । କାବ୍ୟକୁଶଳତା ଅପେକ୍ଷା ଏଥିରେ ପୁରାଣର କଥକତା ପ୍ରତି ଆଗ୍ରହ ଅଧିକ । ଏଥିରେ ମଞ୍ଚସଜ୍ଜାର କୌଣସି ସୂଚନା ନାହିଁ । ଅଭିନୟକାରୀମାନେ କି ଭଳି ବେଶରେ ସଜ୍ଜିତ ହେଉଥିଲେ ତାର ବି ସୂଚନା ନାହିଁ । ତେବେ ପୁରାଣବର୍ଣ୍ଣିତ ପାରମ୍ପରିକ ରୀତିରେ ସେମାନେ ସଜ୍ଜିତ ହେଉଥିବେ । ୧୯୦୯ ଖ୍ରୀ:ଅ:ରେ ପଣ୍ଡିତ ବିନାୟକ ମିଶ୍ର ପୀତାମ୍ବର ରାଜେନ୍ଦ୍ରଙ୍କ ରାମଲୀଳାର ଅଭିନୟ ଦେଖିଥିବା କଥା ଉଲ୍ଲେଖ କରିଅଛନ୍ତି । ଏହା ଛଡ଼ା କଳ୍ପତରୁ ଦାସ, ବିକ୍ରମ ନରେନ୍ଦ୍ର ପ୍ରଭୃତିଙ୍କ ରଚିତ ରାମଲୀଳା କଥା ସେ ଉଲ୍ଲେଖ କରିଅଛନ୍ତି (୧) । ଏହି ଲୀଳା ଗୁଡ଼ିକ ସହଜ ଲଳିତ ଭାଷାରେ ଲେଖା । ସାଧାରଣଙ୍କ ପକ୍ଷରେ ଛାନ୍ଦ ବୁଝିବା ଲାଗି ବ୍ୟାଖ୍ୟା ଆବଶ୍ୟକ ହୁଏ । କିନ୍ତୁ ଅଭିନେତାଙ୍କ ମୁଖରୁ ଶୁଣି ଲୀଳାର ମର୍ମ ବୁଝିବାକୁ ତାହାର ପକ୍ଷରେ କଷ୍ଟ ହୁଏ ନାହିଁ । ଏଥି ଲାଗି କୌଣସି ବ୍ୟାଖ୍ୟା ଆବଶ୍ୟକ ନ ଥାଏ । ତୁଳନାରେ ଦେଖିଲେ, କାବ୍ୟ ଦରବାରୀ ସାହିତ୍ୟ—ବିଦଗ୍ଧ, ରସିକ-ମାନଙ୍କ ପାଇଁ ଏହା ଅଭିପ୍ରେତ । କିନ୍ତୁ ଲୀଳା ଗଣସାହିତ୍ୟ । ଶସ୍ତାନଭିଜ୍ଞ ସାଧାରଣ ଗ୍ରାମ୍ୟ ଜନର ସହଜ ଆନନ୍ଦର ସାମଗ୍ରୀ ।

ଆମ ଦେଶରେ ଲୀଳା ବା ଏହି ଶ୍ରେଣୀୟ ସାହିତ୍ୟର ପରମ୍ପରା ଯେ ପୂର୍ବରୁ ନ ଥିଲା, ତାହା କହି ହେବ ନାହିଁ । ହୁଏତ ପ୍ରାକୃତ ଜନସାଧାରଣଙ୍କ ମଧ୍ୟରେ ଏ ଧରଣର ନାଟ୍ୟାନୁଷ୍ଠାନର ରୀତି ବହୁ ପୂର୍ବକାଳରୁ ପ୍ରଚଳିତ ଥିଲା । ପ୍ରଧାନ ନାଟ୍ୟରୀତି ବ୍ୟତୀତ ଅଠର ପ୍ରକାର ଅପ୍ରଧାନ ନାଟ୍ୟରୀତି ପ୍ରଚଳିତ ଥିବା କଥା 'ସାହିତ୍ୟ ଦର୍ପଣ'ରେ ବର୍ଣ୍ଣିତ ହୋଇଅଛି । ଏସବୁ "ଉପରୂପକ" ଶ୍ରେଣୀରେ ପରିଗଣିତ । ନାଟ୍ୟଶାସ୍ତ୍ରରେ ଅବଶ୍ୟ ଏଥିର କୌଣସି ସୂଚନା ନାହିଁ । ତେବେ ପୁରାଣରେ ଏହାର ସୂଚନା ରହିଛି । ଅଗ୍ନିପୁରାଣରେ

(୧) ଓଡ଼ିଆ ସାହିତ୍ୟର ଇତିହାସ ପୃ: ୧୪୬ ।

ବିଭିନ୍ନ ନାମରେ ଅଠର ପ୍ରକାର 'ଉପରୂପକ'ର ବର୍ଣ୍ଣନା ଅଛି । ଦଶରୂପ'ର ଟୀକାକାର ଧନିକ ଏହି ଧରଣର ସାତ ପ୍ରକାର ରଚନାର ଉଲ୍ଲେଖ କରି, ତାହା ପ୍ରାଚୀନ ଅଳଙ୍କାର ଓ ନାଟ୍ୟ ଶାସ୍ତ୍ରରେ ବର୍ଣ୍ଣିତ 'ଭାଣ' ଶ୍ରେଣୀର ଅନ୍ତର୍ଗତ ବୋଲି ନିର୍ଦ୍ଦେଶ କରିଅଛନ୍ତି । 'ଭାଣ'ର ଯେଉଁ ଲକ୍ଷଣ ସଂସ୍କୃତ ଆଳଙ୍କାରିକମାନେ ବର୍ଣ୍ଣନା କରିଅଛନ୍ତି, ତାହାର କେତେକାଂଶ ଓଡ଼ିଆ ଲୀଳା ଓ ସୁଆଙ୍ଗ ଆଦିରେ ଦେଖାଯାଏ । ଏଥିରେ ବୀର ବା ଶୃଙ୍ଗାର ରସର ଆଧିକ୍ୟ ଥାଏ ଓ ଅଭିନେତାର କଥାରେ ତାହା ଫୁଟି ଉଠେ । ଏଥିରେ ଅଭିନେତା ମନକୁ ମନ କଥା କହେ । 'ଭାଣ'ର ଦୃଷ୍ଟାନ୍ତ ରୂପେ ବିଶ୍ୱନାଥ 'ଲୀଳା ମଧୁକର' ନାମକ ଏକ ଗ୍ରନ୍ଥର ଉଲ୍ଲେଖ କରିଅଛନ୍ତି । କୌଣସି ଓଡ଼ିଆ ଦ୍ୱାରା ସଂସ୍କୃତରେ ରଚିତ ଏଭଳି 'ଭାଣ'ର ସନ୍ଧାନ ମିଳିଲେ 'ଲୀଳା'ର ଅତୀତ ପରମ୍ପରା ବିଷୟରେ କଳ୍ପିତ ଧାରଣା ମିଳନ୍ତା (୧) ।

ଲୀଳାର ପରବର୍ତ୍ତୀ ନାଟକୀୟ ରଚନା ଭାବେ ସୁଆଙ୍ଗ, ଗୀତନାଟ୍ୟ ଓ ଗୀତାଭିନୟ ଆଦି ଆମେ ପାଇଥାଉଁ । ରାମାୟଣ ଘଟଣାର ଅବଲମ୍ବନରେ ଏବେ ଏ ଧରଣର ଯେଉଁ ଲେଖାମାନ ମିଳୁଛି, ସେସବୁ ଗତ ଶତକର ଶେଷ ପାଦରେ ବା ଏ ଶତକର ଆରମ୍ଭରେ ରଚିତ । ଏଥିମଧ୍ୟରେ ଚିନ୍ତାମଣି ପ୍ରହରାଜ ଓ ଗୋପାଳ ଦାସ ଆଦିଙ୍କ ସୁଆଙ୍ଗ, ବୈଷ୍ଣବପାଣି ଓ ଶ୍ରୀ ବାଳକୃଷ୍ଣ ମହାନ୍ତିଙ୍କ ଗୀତାଭିନୟ ଓ ଗୀତନାଟ୍ୟ ବିଶେଷ ଉଲ୍ଲେଖ-ଯୋଗ୍ୟ ।

ପୁରୁଣା ରୀତିରେ ଲେଖା ସୁଆଙ୍ଗ ବା ଗୀତନାଟ୍ୟ ଗୁଡ଼ିକରେ କୌଣସି ନିର୍ଦ୍ଦିଷ୍ଟ ଶୈଳୀ ଅନୁସୃତ ହୋଇନାହିଁ । ନାଟ୍ୟକାରଙ୍କ ରୁଚି, ସାମର୍ଥ୍ୟ ଓ ଦର୍ଶକ ଜନସାଧାରଣଙ୍କ ଅଭିପ୍ରାୟ ଅନୁସାରେ ତାହା ବିଭିନ୍ନ ରୂପ ଧାରଣ କରିଅଛି । ଲୀଳାରେ ପ୍ରତ୍ୟକ୍ଷ ସଂଳାପର ଏକାନ୍ତ ଅଭାବ ଥିଲା । ସୁଆଙ୍ଗ ଓ ଗୀତାଭିନୟରେ ତାର କ୍ରମବିକାଶ ଘଟିଅଛି । ପ୍ରାଥମିକ ଅବସ୍ଥାରେ ସଂଳାପକୁ "ବଚନିକା" ନାମରେ ଅଭିହିତ କରାହୋଇଅଛି । 'ବଚନିକା'ରେ ପ୍ରଥମେ 'ଯୁଗ୍ମ କବିତା' ଓ ପରେ ଗଦ୍ୟର ବିନିଯୋଗ

(୧) The Sanskrit Drama—A. B. Keith. p. 349 ରୁ ଉପରୂପକ ସଂପର୍କୀୟ ଆଲୋଚନା ଦ୍ରଷ୍ଟବ୍ୟ ।

ଦେଖା ଦେଇଛି । ଏ ଧରଣର ରଚନାମାନଙ୍କରେ ପ୍ରଚୁର ପରିମାଣରେ ହାସ୍ୟ ରସର ଅବତାରଣା କରା ଯାଇଅଛି । ଏଥିଲାଗି କବିମାନେ ସାଧାରଣତଃ ଦୁଇଟି ଉପାୟ ଅବଲମ୍ବନ କରିଅଛନ୍ତି । ପ୍ରଥମତଃ ଦ୍ୱାରୀ ଓ ଦ୍ୱିତୀୟତଃ ବାଳକ, କେଉଟ, ପୂର୍ବୋକ୍ତ ଆଦି ପଲ୍ଲୀ ଚରିତ୍ରଗୁଡ଼ିକର ସମାବେଶ କରିଅଛନ୍ତି । ଏଠାରେ ଦ୍ୱାରୀର ସ୍ଥାନ ସଂସ୍କୃତ ନାଟକଗୁଡ଼ିକର ବୟସ୍ୟ ସହିତ କେତେକ ପରିମାଣରେ ତୁଳନୀୟ । କେତେକ ସ୍ଥଳରେ ଆମର ପାରିବାରିକ ଜୀବନରୁ ଉପାଦାନ ସଂଗ୍ରହ କରି, ହାସ୍ୟରସ ସୃଷ୍ଟି ଲାଗି ଏମାନେ ପ୍ରୟାସ କରିଥାନ୍ତି । ଅଙ୍ଗନୋତ୍ତୁଣୀ, ଅଜାନାତ, ଦଅର-ଭଞ୍ଜ, ନଣନ୍ଦଭଞ୍ଜଙ୍କ ଆଦିଙ୍କ ଉକ୍ତି ପ୍ରତ୍ୟୁକ୍ତି ଛଳରେ ଝଉ କୋଟୀର ହାସ୍ୟରସ ସୃଷ୍ଟି କରି ପାରିଛନ୍ତି । ଲୋକମାନଙ୍କ ଦାର୍ଶନିକ ଚିନ୍ତା ଓ ଧର୍ମ ଭାବନାକୁ ଜାଗ୍ରତ କରିବା ଲାଗି ବିରହ, ପରାଜୟ, ମୃତ୍ୟୁ ଆଦି ଶୋକାତ୍ମକ ଘଟଣାମାନଙ୍କର ପୂର୍ବେ ବା ପରେ "ଭଗ୍ନ ଦୂତ" ଓ "ଅଦୃଷ୍ଟ କୁମାରୀ"ଙ୍କ ମୁଖରେ ପ୍ରଦତ୍ତ ସଙ୍ଗୀତମାନଙ୍କରେ କେତେକ ସ୍ଥଳରେ ଉଦ୍ୟମ କରା-ଯାଇଅଛି ।

ଗୀତନାଟ୍ୟ, ଗୀତାଭିନୟର କବିମାନେ ଦାର୍ଶନିକ ଭାବସମ୍ବଳିତ ଲୋକଶିକ୍ଷାମୂଳକ ଦୀର୍ଘ ରାମାୟଣ କାହାଣୀର ସ୍ପର୍ଶ କରି ନାହାନ୍ତି । ପୁରାଣ, କାବ୍ୟ ଓ ଲୀଳାରେ କବିମାନେ ଲୋକମନୋରଞ୍ଜକଭାବରେ ବସ୍ତୁତରୂପେ ରାମଚରିତ ବର୍ଣ୍ଣନା କରି ଥାଅନ୍ତି । କିନ୍ତୁ ଏହି ନାଟ୍ୟ-କବିଗଣଙ୍କର ସୀତାବିବାହ, ରାମବନବାସ, ରାମ-ଅଭିଷେକ, ରାବଣବଧ, ସୀତାଙ୍କ ପାତାଳପ୍ରବେଶ ଭଳି ଗୋଟିଏ ଗୋଟିଏ ଘଟଣା ବିଶେଷ ହିଁ ମୁଖ୍ୟ ଉପଜୀବ୍ୟ । ଏହି ଧରଣର ନାଟକୀୟ ରଚନା ଗୁଡ଼ିକର ପ୍ରଭାବ ଏବେ ବି ପଲ୍ଲୀର ଜନସାଧାରଣଙ୍କ ଉପରେ ଅତୁଟ ରହିଛି ।

### ରାମସାହିତ୍ୟର ଅମର ପ୍ରଭାବ—

ପାଶ୍ଚାତ୍ୟ ସଂସ୍କୃତିର ସଂସ୍ପର୍ଶରେ ଆମ ଆଧୁନିକ ସାହିତ୍ୟର ଚେହେରା ସଂପୂର୍ଣ୍ଣ ବଦଳି ଯାଇଛି । ନୂଆ ଚିନ୍ତାଧାରା, ନୂଆ ପ୍ରକାର ରଚନା ରୀତିରେ ସମୃଦ୍ଧ ଏ ଯୁଗରେ ସାହିତ୍ୟ ଏକ ଭିନ୍ନ ମାର୍ଗରେ ଗତି କରିଛି । ତଥାପି ରାମାୟଣର ପ୍ରଭାବ ଓ ପରମ୍ପରା ଏହା ଉପରୁ କୌଣସି ରୂପେ ଊଣା ହୋଇନାହିଁ । ଫକୀର ମୋହନ, ରାଧାନାଥ, ମଧୁସୂଦନ ଓ

ମେରେଡ଼ିଥଙ୍କ ଭଳି ସାହିତ୍ୟସ୍ରଷ୍ଟାଙ୍କ ଲେଖନୀରେ ଏହାର ପ୍ରକାଶ ଅଧିକ ବଳିଷ୍ଠ ଓ ଜୀବନ୍ତ ହୋଇଅଛି । ରାମାୟଣର ଘଟଣା ବା ଚରିତ୍ର ବିଶେଷକୁ ଯେଉଁ କାବ୍ୟ କବିତା ରଚନାର ଦୃଷ୍ଟାନ୍ତ ଏବେ ବି ବିରଳ ନୁହେ । ଆରମ୍ଭରୁ ଆଜି ପର୍ଯ୍ୟନ୍ତ ଆମ ସାହିତ୍ୟର ଶତ ଶତ ବର୍ଷବ୍ୟାପୀ ବିକାଶ-ଧାରାରେ ଶ୍ରୀରାମଚନ୍ଦ୍ରଙ୍କର କନକ ସୂତ୍ର ପ୍ରସାରିତ ହୋଇ ରହିଛି; ଆମର ହୃଦୟମନକୁ ସଂପୂର୍ଣ୍ଣ ଭାବେ ଅଧିକାର କରି ଆସିଛି । ଏ ସୂତ୍ର କେବେ ଛିନ୍ନ ହେବାର ନୁହେ । ଇତିହାସର ତରଙ୍ଗ ସ୍ରୋତରେ ଆମ ସାହିତ୍ୟ ଓ ସଂସ୍କୃତିର ଧାରା ବଦଳୁଛି, ବଦଳିବ । ଲକ୍ଷ ପରିବର୍ତ୍ତନ ଭିତରେ ବି ଏହାର ଭବିଷ୍ୟ-ପଥରେ ରାମସାହିତ୍ୟର ପୁଣ୍ୟ ପ୍ରେରଣା ଓ ଚିରନ୍ତନ ପ୍ରଭାବ ଧ୍ରୁବ ତାରା ଭଳି ପଥପ୍ରଦର୍ଶନ ଦେଉଥିବ ।

---

# ଆଧୁନିକ ଭାରତୀୟ ଭାଷାରେ ରାମ ସାହିତ୍ୟ*

## କେତୋଟି ବଶିଷ୍ଟ ରାମାୟଣ—

ପ୍ରାଚୀନ କାଳରେ ରାମଚରିତ ଲୋକକଥା ରୂପରେ ଏ ଦେଶର ଚତୁର୍ଦ୍ଦିଗରେ ପ୍ରଚଳିତ ଥିଲା । ବାଲ୍ମୀକିଙ୍କ ଲେଖଣୀରେ ଏହା ପ୍ରଥମେ ବଳିଷ୍ଠ ପ୍ରକାଶ ଲଭିଲା । ସଂସ୍କୃତ କବିମାନଙ୍କ କାବ୍ୟ ନାଟକରେ ଏହା ସୁଧୀସମାଜରେ ଅତ୍ୟନ୍ତ ଆଦରର ସାମଗ୍ରୀ ହୋଇ ପଡ଼ିଲା । ଆଧୁନିକ ଭାରତୀୟ ଭାଷାମାନଙ୍କର ବିକାଶ କାଳରେ ଲୋକ-ସଂସ୍କୃତିର ଅଙ୍ଗରୂପେ ଏହା ବିଭିନ୍ନ ଲୋକଭାଷାରେ ଆତ୍ମପ୍ରକାଶ କଲା । ଖ୍ରୀଷ୍ଟ ଦଶମ ଶତକ ବେଳକୁ ପ୍ରଥମେ ତାମିଲ ଭାଷାରେ ରାମାୟଣ ରଚିତ ହୋଇଥିଲା । ରଚୟିତାଙ୍କ ନାମ ଅନୁସାରେ ଏହା "କମ୍ବନ ରାମାୟଣ" ନାମରେ ପରିଚିତ । ବାଲ୍ମୀକିଙ୍କ ବ୍ୟତୀତ ଆଉ ଦୁଇଜଣ କବିଙ୍କ ପଦାଙ୍କ ଅନୁସରଣରେ ରାମାୟଣ ରଚନା କରିଥିବା କଥା, କବି ଏହାର ଉପକ୍ରମଣିକାରେ ଉଲ୍ଲେଖ କରିଅଛନ୍ତି । ଏଥିରେ ଛଅଟି କାଣ୍ଡ ଦେଖାଯାଏ । ଉତ୍ତରକାଣ୍ଡ "ଓଟ୍ଟକୁଥନ୍" ନାମକ ଆଉ ଜଣେ କବିଙ୍କ ଦ୍ୱାରା ପରବର୍ତ୍ତୀ କାଳରେ ରଚିତ ହୋଇଥିବାର ଅନୁମାନ । କବି 'କମ୍ବନ' ବାଲ୍ମୀକିଙ୍କ ମୂଳ କଥା ସ୍ରୋତରୁ ବିଚ୍ୟୁତ ହୋଇ ନାହାନ୍ତି । ତେବେ ଏଥିରେ ବହୁ ନୂଆ ଉପାଖ୍ୟାନ ଯୋଗ କରିଛନ୍ତି, ଅନେକ ସ୍ଥଳରେ ମୂଳ ଗ୍ରନ୍ଥର ଉପାଖ୍ୟାନଗୁଡ଼ିକ କେତେକ ପରିମାଣରେ ପରିବର୍ତ୍ତିତ କରି ଦେଇଛନ୍ତି । ଏ ସମୟରେ ରାଜଶକ୍ତି କିପରି ବିଳାସଜର୍ଜର ଥିଲା, ତାହାର ସୂଚନା ଏଥିରୁ ମିଳେ । ବାଲକାଣ୍ଡରେ କବି ଦଶରଥଙ୍କ ମିଥିଳା ଯାତ୍ରା ପାଞ୍ଚଗୋଟି ସର୍ଗରେ ବର୍ଣ୍ଣନା କରିଅଛନ୍ତି । ଏହା ବ୍ୟତୀତ ରାଜପୁରୁଷମାନଙ୍କର ଜଳକ୍ରୀଡ଼ା, ବିଳାସ ଓ ଅପାନକେଳି ଅତି ବିଶଦଭାବରେ ଚିତ୍ରଣ କରିଅଛନ୍ତି । ଶିବ ପାର୍ବତୀଙ୍କ କଥୋପକଥନ ଛଳରେ ଏହା ରଚିତ ।

---

* ଆଧୁନିକ ଭାରତୀୟ ଭାଷାଓଁ ମେଁ ରାମକଥା—ରାମକଥା, ଡା: ବୁଲ୍‌କେ, ଦ୍ୱାଦଶ ଅଧ୍ୟାୟ ।

ତାମିଲ ପରେ ତେଲୁଗୁ ସାହିତ୍ୟରେ ୧୨ଶ ଶତକରେ "ଦ୍ୱିପାଦ ରାମାୟଣ" ରଚିତ ହୋଇଥିଲା । ଓଡ଼ିଆ ଦାଣ୍ଡିବୃତ୍ତ ଭଳି 'ଦ୍ୱିପାଦ' ଏକ ଜନପ୍ରିୟ ତେଲୁଗୁ ଛନ୍ଦ । ଏହି ଛନ୍ଦରେ ଲେଖା ବୋଲି ତେଲୁଗୁ ରାମାୟଣ 'ଦ୍ୱିପାଦ ରାମାୟଣ' ନାମରେ ବିଖ୍ୟାତ । 'ରଙ୍ଗନାଥ' ନାମରେ ଜଣେ ସାମନ୍ତ ରାଜା ଏହି ରାମାୟଣ ପ୍ରଣେତା ବୁଦ୍ଧରାଜୁଙ୍କର ପ୍ରଧାନ ପୃଷ୍ଠପୋଷକ ଥିଲେ । ଏହାଙ୍କ ନାମରେ ଭଣିତ ହୋଇଥିବାରୁ ଦ୍ୱିପାଦ ରାମାୟଣକୁ କେତେକ ରଙ୍ଗନାଥ ରାମାୟଣ ବୋଲି ମଧ୍ୟ କହୁଥାନ୍ତି । ଏଥିରେ ବାଲ୍ମୀକି ରାମାୟଣର ଛ'ଟି କାଣ୍ଡର କଥାବସ୍ତୁ ମିଳେ, ଉତ୍ତରା କାଣ୍ଡର କଥାବସ୍ତୁ ମିଳେ ନାହିଁ । ପ୍ରାୟ ୧୪ଶ ଶତକରେ ଦକ୍ଷିଣ ତ୍ରାଭାଙ୍କୋରର ଏକ ଉପଭାଷାର ମଲୟାଲମ୍‌ରେ 'ରାମଚରିତ' ଲେଖା ହୋଇଥିଲା । ତାହାର ସମୁଦାୟ ଅଂଶ ଏବେ ମିଳେ ନାହିଁ ।

ପଞ୍ଚଦଶ ଓ ଷୋଡ଼ଶ ଶତକ ବେଳକୁ ଉତ୍ତର ଭାରତୀୟ ଭାଷାମାନଙ୍କରେ ରାମାୟଣ ରଚିତ ହୋଇଅଛି । ଓଡ଼ିଆରେ ଦାଣ୍ଡି ରାମାୟଣ ଓ ବଙ୍ଗଳାରେ କୃତ୍ତିବାସ ରାମାୟଣ ଏମାନଙ୍କ ମଧ୍ୟରେ ସର୍ବପ୍ରଥମ । ଏ ଗୁଡ଼ିକ ପଞ୍ଚଦଶ ଶତକର ପ୍ରଥମ ପାଦରେ ରଚିତ ହୋଇଥିଲା । ଏହାପରେ ୧୬ଶ ଶତକକୁ ତୁଳସୀ ଦାସଙ୍କ "ରାମ ଚରିତ ମାନସ" ଓ ଏକନାଥଙ୍କ 'ଭାବାର୍ଥ ରାମାୟଣ" ଯଥାକ୍ରମେ ଅବଧି ଓ ମହାରାଷ୍ଟ୍ରୀ ଭାଷାରେ ରଚିତ ହୋଇଥିଲା । ଏହି ସମୟକୁ ଅସମୀୟା, ଗୁଜରାଟୀ ଆଦି ସମସ୍ତ ଭାଷାରେ ରାମଚରିତ ଯେନ କେନ ପ୍ରକାରେ କିଛି ନା କିଛି ସାହିତ୍ୟ ରଚିତ ହୋଇଥିବାର ଦେଖିବାକୁ ମିଳେ । ଏହାର ସମ୍ପୂର୍ଣ୍ଣ ବିବରଣ ଏଠାରେ ଦେବା ଅନାବଶ୍ୟକ ।

## ତୁଳନାତ୍ମକ ଆଲୋଚନାର ଉପଯୋଗିତା ଓ ଏଥିରେ ପ୍ରତିବନ୍ଧକ ।

ବିଭିନ୍ନ ଭାରତୀୟ ଭାଷାରେ ଯେଉଁ ରାମାୟଣଗୁଡ଼ିକ ଲେଖା ଯାଇଅଛି, ସେଗୁଡ଼ିକ ବିଭିନ୍ନ ଭାରତୀୟ ସମାଜର ମୁକୁର । ଭିନ୍ନ ଭିନ୍ନ ଜାତିର ସାମାଜିକ ରୀତିନୀତି, ଧର୍ମଧାରା ଓ ଆଶା ଆକାଂକ୍ଷାର ଚିତ୍ର ଏଥିରେ ପ୍ରତିବିମ୍ବିତ । ଭାରତୀୟ ସଂସ୍କୃତିର ସଂପୂର୍ଣ୍ଣ ରୂପ ଧାରଣା କରିବାକୁ ହେଲେ, ତାହାର ଆହରଣ ଓ ସମ୍ପ୍ରସାରଣ ଉଭୟ କ୍ଷେତ୍ର

ଉପରେ ଦୃଷ୍ଟିପାତ କରିବାକୁ ହେବ । ଆଧୁନିକ ଭାରତୀୟ ଭାଷା-ମାନଙ୍କରେ ରଚିତ ବିଭିନ୍ନ ରାମାୟଣଗୁଡ଼ିକରେ ଭାରତବର୍ଷର ପ୍ରାଚୀନ ସଂସ୍କୃତିର ସମ୍ପ୍ରସାରିତ ରୂପ ବିଦ୍ୟମାନ । ଏ ଗୁଡ଼ିକର ଏକତ୍ର ଆଲୋ-ଚନାରେ ଆମ ସଂସ୍କୃତିର ପୂର୍ଣ୍ଣ ଚେହେରା ଫୁଟିବ । ଅଖଣ୍ଡ ଭାରତୀୟ ସଂସ୍କୃତିର ଐକ୍ୟ ବିଧାନରେ ଏହା ସାହାଯ୍ୟ କରିବ । •

ଏହି ବିସ୍ତୃତ ରାମ ସାହିତ୍ୟର ତୁଳନାତ୍ମକ ବିଚାର ଲାଗି ଏ ପର୍ଯ୍ୟନ୍ତ ଅତି କ୍ଷୀଣ ଉଦ୍ୟମ ହୋଇଅଛି । ରାମକଥାର ଉତ୍ପତ୍ତି ଓ କ୍ରମ-ବିକାଶ ସମ୍ବନ୍ଧରେ ଡାଃ କାମିଲ ବୁଲ୍‌କେଙ୍କ ପୁସ୍ତକ ଏ ଦିଗରୁ ଅତି ଉପାଦେୟ । ତେବେ ଏତିକ ଯଥେଷ୍ଟ ନୁହେ । କେବଳ ରାମକଥାର ବିକାଶକ୍ରମ ଦେଖିଲେ ହେବ ନାହିଁ, ତାହା ସହିତ ସାହିତ୍ୟ, ଧର୍ମଧାରା ଓ ସମାଜଜୀବନ ଦିଗରୁ ଏ ଗୁଡ଼ିକୁ ଏକତ୍ର ବିଚାର କରିବାକୁ ହେବ । କିନ୍ତୁ ବର୍ତ୍ତମାନ କାର୍ଯ୍ୟାରମ୍ଭ ଲାଗି ଏ ଦିଗରେ ବହୁ ପ୍ରତିବନ୍ଧକ ରହିଅଛି । ଭାଷାର ପ୍ରତିବନ୍ଧକ ତ ଅଛି । ମିଳିତ ଉଦ୍ୟମରେ ଏହାକୁ ଏଡ଼ିବା ସମ୍ଭବ । ପ୍ରଧାନ ବାଧା ହେଉଛି, ବିଭିନ୍ନ ଭାଷାରେ ପ୍ରାଚୀନ ସାହିତ୍ୟର ଉପଯୁକ୍ତ ସଂକଳନ ଓ ସମ୍ପାଦନାର ଅଭାବ । ବିଶେଷ ଭାବରେ ରାମାୟଣ-ଗୁଡ଼ିକ ସାଧାରଣ ପ୍ରକାଶକମାନଙ୍କ ବ୍ୟବସାୟମୂଳକ ପ୍ରକାଶନ ମଧ୍ୟରେ, ଅଥବା ପାଣ୍ଡୁଲିପି ଅବସ୍ଥାରେ ପଡ଼ି ରହିଅଛି । ଏ କ୍ଷେତ୍ରରେ ଅବଶ୍ୟ ତୁଳସୀ ଦାସଙ୍କ 'ରାମଚରିତ ମାନସ' କଥା ସ୍ୱତନ୍ତ୍ର । ହିନ୍ଦୀରେ ଏହାର ଅନେକ ପ୍ରାମାଣିକ ସଂସ୍କରଣ ପ୍ରକାଶିତ ହୋଇଅଛି ଓ ବିସ୍ତାରିତ ଆଲୋଚନା କରାଯାଇଛି । ଅନ୍ୟ ଭାଷାମାନଙ୍କରେ ଯାହା ହୋଇଛି, ତାହା ଯଥେଷ୍ଟ ନୁହେ ଓ ଓଡ଼ିଆରେ ଏ ଦିଗରେ କିଛି ହୋଇନି କହିଲେ ଚଳେ ।

ସୁତରାଂ ଅନ୍ୟ ଭାଷାମାନଙ୍କରେ ପ୍ରସିଦ୍ଧ ରାମାୟଣଗୁଡ଼ିକର ତୁଳନାରେ ଦାଣ୍ଡିରାମାୟଣରେ ସ୍ଥାନ ନିରୂପଣ ସହଜ ନୁହେ । ତେବେ ଏକ ସାଧାରଣ ଅବସ୍ଥାରେ ଏ ଗୁଡିକର ରଚନା ସମ୍ଭବ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ଏ ହେଉଛି ଆଧୁନିକ ଭାରତୀୟ ଭାଷାଗୁଡ଼ିକର ବିକାଶ କାଳ । ଏହି ବିକାଶର ବହୁ କାରଣ ଅନୁମାନ ସାପେକ୍ଷ । ସଂସ୍କୃତ ବ୍ୟାକରଣର ଦୁର୍ବୋଧତା, ସଂସ୍କୃତ କାବ୍ୟ ପୁରାଣଚର୍ଚ୍ଚାକାରୀ

ସାମନ୍ତ ଶ୍ରେଣୀୟ ଧନୀମାନଙ୍କ ମଧ୍ୟରେ ଦେଶୀଭାଷା ପ୍ରତି ଆଗ୍ରହ, ସନ୍ଥ ଓ ମହାତ୍ମାମାନଙ୍କର ଦେଶୀ ଭାଷାରେ ଧର୍ମ ପ୍ରଚାର ଓ ଗ୍ରନ୍ଥ ରଚନା ଆଦ ଏଠାରେ ଉଲ୍ଲେଖଯୋଗ୍ୟ ।

## ଦାଣ୍ଡି ରାମାୟଣର ପ୍ରାଚୀନତା—

ଦାଣ୍ଡି ରାମାୟଣର ସମସାମୟିକ ବଙ୍ଗଳା କୃତ୍ତିବାସ ରାମାୟଣ ଓ ତାର କିଛିକାଳ ପରବର୍ତ୍ତୀ "ରାମଚରିତ ମାନସ"କୁ ଏକତ୍ର ବିଚାର କଲେ ଏ ଭୂମିକା ସ୍ପଷ୍ଟ ହେବ । ଗୌଡ଼ ଦରବାରର ପୋଷକତାରେ କବି କୃତ୍ତିବାସ- ଓଝା ବଙ୍ଗଳା ରାମାୟଣ ରଚନା କରିଥିଲେ । ଏହାର ରଚନାକାଳ ନିର୍ଦ୍ଦିଷ୍ଟ ରୂପେ ଜଣାପଡ଼ ନାହିଁ । ଏ କବିଙ୍କ ଜୀବନ କାଳ ୧୫ଶ ଶତକର ମଧ୍ୟ ଭାଗରୁ ଷୋଡ଼ଶ ଶତକର ମଧ୍ୟଭାଗ ପର୍ଯ୍ୟନ୍ତ ବିସ୍ତୃତ ଥିଲା ବୋଲି ଅନୁମିତ ହୁଏ । ବଙ୍ଗଭାଷା ଓ ସାହିତ୍ୟବିଷୟକ ବକ୍ତୃତାରେ ରାଜନାରାୟଣ ବସୁ ମହାଶୟ କୃତ୍ତିବାସ ରାମାୟଣର ରଚନା କାଳ ୧୫୩୮-୩୯ ଖ୍ରୀ: ଅ: ସ୍ଥିର କରିଅଛନ୍ତି (୧) । ଉପଯୁକ୍ତ ପ୍ରମାଣ ନ ଥିବାରୁ କେତେକ ଏଥିରେ ସନ୍ଦେହ ପ୍ରକାଶ କରି ଥାଆନ୍ତି । ଯେତେବେଳେ ଉପଯୁକ୍ତ କାଳ ନିରୂପଣ ସମ୍ଭବ ହୋଇ ନାହିଁ, ସେତେବେଳେ ବସୁ ମହାଶୟଙ୍କ ଠିକ ବୋଲି ଗ୍ରହଣ କଲେ, ଓଡ଼ିଆ ଦାଣ୍ଡି ରାମାୟଣ ଏହାର କେତେ ବର୍ଷ ପୂର୍ବରୁ ନିଶ୍ଚୟ ରଚିତ ହୋଇଥିବ । ଏଥିଲାଗି ଏହାକୁ ଉତ୍ତର ଭାରତୀୟ ଭାଷାମାନଙ୍କରେ ରଚିତ ବିଶିଷ୍ଟ ରାମାୟଣଗୁଡ଼ିକ ମଧ୍ୟରେ ପ୍ରାଚୀନତମ ବୋଲି ଗ୍ରହଣ କରିବାକୁ ହେବ ।

## ଏକର କୃତ୍ତିବାସ ରାମାୟଣ—

ବର୍ତ୍ତମାନ ମିଳୁଥିବା କୃତ୍ତିବାସ ରାମାୟଣରେ ପ୍ରକ୍ଷେପ ବାହୁଲ୍ୟ ସମ୍ବନ୍ଧରେ ସମସ୍ତେ ଏକମତ । ଡଃ ସୁକୁମାର ସେନଙ୍କ ଭାଷାରେ "କୃତ୍ତିବାସ ରାମାୟଣ ମଧ୍ୟରେ କବିଙ୍କ ନାମ ବ୍ୟତୀତ ଆଉ କିଛି ଅଂଶ ଅପରିବର୍ତ୍ତିତ ରହିଛି ବୋଲି ମନେ ହୁଏ ନାହିଁ । କାବ୍ୟଟି ଅସାଧାରଣ ଲୋକପ୍ରିୟ ହୋଇଥିବାରୁ, ଏଥିରେ ଖୁବ୍ ଶୀଘ୍ର ପାଠବିକୃତି ଓ ପ୍ରକ୍ଷେପ ଆରମ୍ଭ

(୧) ବଙ୍ଗଳା ସାହିତ୍ୟର ଇତିହାସ, ଡଃ ସୁକୁମାର ସେନ—କଲିକତା, ୧୯୪୦— ପୃ: ୮୮

ହୋଇଥିଲା” (୧) । କୃତ୍ତିବାସ ରାମାୟଣର କଥା ଭାଗରେ ବାଲ୍ମୀକି ରାମାୟଣଠାରୁ ବହୁ ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳେ । ବାଲ୍ମୀକି ରାମାୟଣ ଅପେକ୍ଷା ବ୍ୟାସଙ୍କ ନାମରେ ପ୍ରଚଳିତ ପଦ୍ମପୁରାଣ ଅନ୍ତର୍ଗତ ରାମାୟଣ କାହାଣୀକୁ କୃତ୍ତିବାସ ବିଶେଷ ଭାବରେ ଅନୁସରଣ କରିବାର ଡାଃ ତମୋନାଶ ଦାଶଗୁପ୍ତ ଲକ୍ଷ୍ୟ କରିଅଛନ୍ତି (୨) । ସେ ସମୟର ଧର୍ମଧାରାର ପ୍ରଭାବରୁ ମଧ୍ୟ ଏହା ମୁକ୍ତ ନୁହେ । ଶାକ୍ତ, ଶୈବ ଓ ବୈଷ୍ଣବ ଧର୍ମ ପ୍ରଭାବର ସୂଚନା ଏଥିରୁ ସ୍ପଷ୍ଟ ଭାବରେ ମିଳିଥାଏ । ନଦୀ ବହୁଳ ବଙ୍ଗର ପଲ୍ଲୀ ପ୍ରକୃତି, ବଙ୍ଗାଳିର ଭାବାତୁର ସୁକୁମାର ମନ ଓ ସାମାଜିକ ରୀତି ନୀତିର ପ୍ରକାଶ ଏଥିରେ ଅତି ପ୍ରାଞ୍ଜଳ । ତୁଳନାରେ ଦେଖିଲେ କୃତ୍ତିବାସଙ୍କ ଚରିତ୍ରଗୁଡ଼ିକର ଆଦର୍ଶ ବାଲ୍ମୀକିଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । କୃତ୍ତିବାସଙ୍କ ସୀତା ଜଣେ ସହିଷ୍ଣୁ ଈର୍ଷୀ ବଙ୍ଗାଳୀ କୁଳବଧୂ, କୌଶଲ୍ୟା ପୁତ୍ରସ୍ନେହୀ କୋମଳ ପ୍ରାଣା ଜନନୀ, ରାମ ଜଣେ ସୁକୁମାର ବିଳାସୀ ରାଜକୁମାର ଓ ବଶିଷ୍ଠ ଜଣେ ଭଯ୍ୟାଳୁ ବଙ୍ଗାଳୀ ବ୍ରାହ୍ମଣ । ପରିବର୍ତ୍ତିତ ବଙ୍ଗାଳୀ ସମାଜରେ ଜ୍ୟୋତିଷର ପ୍ରାଦୁର୍ଭାବ ସେ ସମୟରେ ପ୍ରବଳ ଥିଲା । ତାର ପ୍ରଭାବ ଏଥିରେ ସ୍ପଷ୍ଟ । ବଙ୍ଗାଳିର ଖାଦ୍ୟପେୟ, ପୋଷାକ ପରିଚ୍ଛଦ ଓ ଅସ୍ତ୍ର ଅଲଙ୍କାରର ବର୍ଣ୍ଣନା ଏଥିରେ ଅତି ବିଶଦ । ଏହି ଗ୍ରନ୍ଥର ବିସ୍ତାରିତ ଆଲୋଚନା ପରେ ଶ୍ରୀଯୁକ୍ତ ଦିନେଶଚନ୍ଦ୍ର ସେନ ମହାଶୟ ଯଥାର୍ଥ କହିଛନ୍ତି—“ବଙ୍ଗଳା ରାମାୟଣରେ ପ୍ରକୃତି ବଙ୍ଗାଳି ଜୀବନର ସୁଗୁଣ ଦୁର୍ଗୁଣରେ ବାଲ୍ମୀକିଙ୍କର ମହାଗ୍ରନ୍ଥକୁ ଘୋଡ଼େଇ ଦିଆ ହୋଇଛି । ଫଳରେ ଏହା ବଙ୍ଗାଳୀ ଘରର ଗୋଟିଏ ପାର୍ବୁଚ ନିକଟବର୍ତ୍ତୀ ହୋଇଛି” (୩) ।

## ରାମ ଚରିତମାନସ ଓ ତୁଳସୀ ଦାସ—

ବର୍ତ୍ତମାନ ରାମଚରିତ ମାନସ କଥା । ଏହା ଓଡ଼ିଆ ଦାଣ୍ଡି ରାମାୟଣ ଓ ବଙ୍ଗଳା କୃତ୍ତିବାସ ରାମାୟଣର ଅର୍ଦ୍ଧଶତାବ୍ଦୀ ପରବର୍ତ୍ତୀ ରଚନା । ତୁଳସୀ ଦାସଙ୍କ ଜନ୍ମ ୧୬ଶ ଶତକର କୌଣସି ଅଂଶରେ ଓ ତାଙ୍କ ରାମାୟଣର ରଚନା

(୧) ବଙ୍ଗଳା ସାହିତ୍ୟର ଇତିହାସ, ପୃ: ୮୮ ।

(୨) ପ୍ରାଚୀନ ବଙ୍ଗଳା ସାହିତ୍ୟର ଇତିହାସ—ଡ: ତମୋନାଶ ଚନ୍ଦ୍ର ଦାସଗୁପ୍ତ, କଲିକତା ବିଶ୍ୱବିଦ୍ୟାଳୟ, ୧୯୫୧, ପୃ: ୬୭୯ ।

(୩) Bengali Ramayan Dr. D. C, Sen, page. 85.

ଆରମ୍ଭ ୧୫୭୫ ଖ୍ରୀ:ଅ: ରେ ହୋଇ ଥିବାର ନିଶ୍ଚିତଭାବେ ଜଣା ଯାଇଅଛି । ରାମଚରିତ ମାନସ ଓ କବି ତୁଳସୀ ଦାସଙ୍କ ସମ୍ବନ୍ଧରେ ଭାରତୀୟ ଓ ପାଶ୍ଚାତ୍ୟ ପଣ୍ଡିତମାନେ ବିସ୍ତୃତ ଆଲୋଚନା କରି ଅଛନ୍ତି (୧) । ଗତ ଶତକରେ ଇଂରେଜ ପଣ୍ଡିତ ଉଇଲ୍‌ସନ୍ ସାହେବ ନିଜର ହିନ୍ଦୁଧର୍ମ ସଂପ୍ରଦାୟ ବିଷୟକ ଗ୍ରନ୍ଥରେ (A Sketch of the religious sects of the Hindus pbulished in 1831) ପ୍ରଥମେ ତୁଳସୀ ଦାସଙ୍କ ସମ୍ବନ୍ଧରେ ଆଲୋଚନା କରିଥିଲେ । ଏହାପରେ ଇଂରେଜ ପଣ୍ଡିତ ଗ୍ରିୟର୍ସନ, କାରପେଣ୍ଟର, ମେକ୍‌ଫୀ ଆଦିଙ୍କ ବ୍ୟତୀତ ଫରାସୀ ପଣ୍ଡିତ ତାସୀ, ଇଟାଲୀୟ ପଣ୍ଡିତ ଟେସିଟୋରି ପ୍ରଭୃତି ତୁଳସୀ ଦାସଙ୍କ ଜୀବନୀ, ଧର୍ମମତ ଓ ସାହିତ୍ୟ ସମ୍ବନ୍ଧରେ ଆଲୋଚନା କରିଅଛନ୍ତି । ବିଶେଷତଃ ୧୮୭୬ ଖ୍ରୀ: ଅ: ରେ ଏଫ. ଏ. ଗାଉସ୍‌ଙ୍କ ରାମଚରିତମାନସର ଇଂରେଜୀ ଅନୁବାଦ ଓ ୧୮୮୫ରୁ ୧୯୨୧ ମଧ୍ୟରେ ସାର୍ ଜର୍ଜ ଗ୍ରୀୟର୍ସନଙ୍କର ତୁଳସୀ ଦାସଙ୍କ ସମ୍ବନ୍ଧରେ ତଥ୍ୟମୂଳକ ବହୁସଂଖ୍ୟକ ପ୍ରବନ୍ଧ ଏହି କବିଙ୍କୁ ସମଗ୍ର ବିଶ୍ବରେ ସୁପରିଚିତ କରି ପାରିଅଛି । ତୁଳସୀ ଦାସଙ୍କ ଗ୍ରନ୍ଥର ଅନୁବାଦ ଓ ଆଲୋଚନା ଲାଗି ଏବେ ଋଷୀୟ ପଣ୍ଡିତମାନଙ୍କ ମଧ୍ୟରେ ବି ଆଗ୍ରହ ପ୍ରକାଶ ପାଇଅଛି । ଆଧୁନିକ ଭାରତୀୟ ଭାଷାରେ ମଧ୍ୟ-ଯୁଗରେ ଲିଖିତ ଅନ୍ୟ କୌଣସି ଗ୍ରନ୍ଥକୁ ବିଶ୍ବ ସୁଧୀସମାଜରେ ଏଭଳି ମର୍ଯ୍ୟାଦା ମିଳିଛି ବୋଲି ମନେ ହୁଏ ନାହିଁ । ଏ ଦେଶର ଇତିହାସ, ସାହିତ୍ୟ ଆଦି ବିଷୟରେ ଆଲୋଚନା କଲାବେଳେ ପଣ୍ଡିତମାନେ ତୁଳସୀ ଦାସଙ୍କ ସମ୍ବନ୍ଧରେ ଯେପରି ଉଚ୍ଚ ମତ ପୋଷଣ କରିଥାନ୍ତି, ତାହାର ତୁଳନା ନାହିଁ । ଐତିହାସିକ ସ୍ମିଥ, ତାଙ୍କୁ "ମୋଗଲ କାଳର ସର୍ବଶ୍ରେଷ୍ଠ ମହା-ପୁରୁଷ" ଆଉ ଗ୍ରୀୟର୍ସନ "ତାଙ୍କୁ ବୁଦ୍ଧଦେବଙ୍କ ପରେ ସବୁଠାରୁ ବଡ଼ ଲୋକନାୟକ" ବୋଲି କହିଅଛନ୍ତି । ତୁଳସୀ ରାମାୟଣକୁ "ସମଗ୍ର ଉତ୍ତର ଭାରତର ବାଇବେଲ" ବୋଲି ସବୁ ପାଶ୍ଚାତ୍ୟ ପଣ୍ଡିତମାନେ କହିଥାଆନ୍ତି ।

### ଭକ୍ତିବାଦ ଓ ଧାର୍ମିକ ରଙ୍ଗ—

ଏ ସବୁ ସତ୍ତ୍ୱେ ମନେ ରଖିବାକୁ ହେବ, ଦାଣ୍ଡି ଅଥବା କୃତ୍ତିବାସ ରାମାୟଣ ଭଳି ତୁଳସୀ ରାମାୟଣ ଉଦାର ପୁରାଣଧର୍ମୀ ନୁହେ । ଏଥିରେ

---

(୧) ତୁଳସୀ ଦାସ, ଡା: ମାତା ପ୍ରସାଦ ଗୁପ୍ତ—ଗ୍ରନ୍ଥର ଭୂମିକା ଦ୍ରଷ୍ଟବ୍ୟ ।

ଭକ୍ତିଧର୍ମର ରଙ୍ଗ ଅଧିକ । ଏଥିରେ "କଥାର ଗତି ସର୍ବଦା ଭାବ୍ୟର ଅଙ୍ଗୁଳି ନିର୍ଦ୍ଦେଶରେ ହୋଇନାହିଁ । ଯେଉଁ ପଥରେ ଭକ୍ତିରସ ଲାଭ ହୋଇ ପାରିବ ଏହା ସେହି ମାର୍ଗରେ ଗତି କରିଅଛି । ଏଥିଲାଗି ରାମଚରିତ ମାନସ କେବଳ ବିଶୁଦ୍ଧ କାବ୍ୟ ଦୃଷ୍ଟିରେ ଲିଖିତ କଥାଗ୍ରନ୍ଥ (ପୁରାଣ) ନୁହେ । ଏଥିରେ ଭକ୍ତିରସର ପ୍ରାଧାନ୍ୟ ଅଛି" (୧) । ଜଣେ ହିନ୍ଦୀ ସମାଲୋଚକ ପଣ୍ଡିତଙ୍କର ଏ ଉକ୍ତି ଅତି ଯଥାର୍ଥ । ଦାଣ୍ଡି ଅଥବା କୃତ୍ତିବାସ ରାମାୟଣରେ ବାଲ୍ମୀକି ରାମାୟଣରୁ କଥାବସ୍ତୁର ଯେଉଁ ପାର୍ଥକ୍ୟ ଦେଖାଯାଏ —ତାହା ପଦ୍ମ, ସ୍କନ୍ଦ ଆଦି ପୁରାଣ ଗୁଡ଼ିକର ପ୍ରଭାବର ଫଳ । କିନ୍ତୁ ତୁଳସୀ ରାମାୟଣ ଉପରେ ପୁରାଣ ପ୍ରଭାବ ଅପେକ୍ଷା 'ଅଧ୍ୟାତ୍ମ' 'ଯୋଗବାଶିଷ୍ଠ' ଆଦି ସାଂପ୍ରଦାୟିକରାମାୟଣ ଗୁଡ଼ିକର ପ୍ରଭାବ ସ୍ପଷ୍ଟ । ରାମଭକ୍ତି ପ୍ରଧାନ ଗ୍ରନ୍ଥ ଅଧ୍ୟାତ୍ମ ରାମାଣଦ୍ୱାରା ତୁଳସୀ ଦାସ ବିଶେଷ ଭାବରେ ପ୍ରଭାବିତ । ବସ୍ତୁତଃ ତୁଳନାତ୍ମକ ଆଲୋଚନା ପରେ ଡ଼ା ମାତାପ୍ରସାଦ ଗୁପ୍ତ ଯଥାର୍ଥ କହୁଛନ୍ତି— ଅଧ୍ୟାତ୍ମ ରାମାୟଣରୁ ଯାହା ସିଦ୍ଧାନ୍ତ ରୂପେ ମିଳିଲା ପ୍ରାୟ ତାହାର ଏକା ତର୍କ ସଙ୍ଗତ ପ୍ରକାଶ ତୁଳସୀ ଦାସ କରିଅଛନ୍ତି । ପୁଣି ସାଂପ୍ରଦାୟିକ ଧର୍ମମତର ଯେଉଁ ଲକ୍ଷଣ ଗୁଡ଼ିକ ସେ ତୁଳସୀ ରାମାୟଣରେ ଲକ୍ଷ୍ୟ କରିଅଛନ୍ତି ତାହା ଉଲ୍ଲେଖ ଯୋଗ୍ୟ— ଯଥା:—ବିଷ୍ଣୁଙ୍କ ହୀନବ୍ରହ୍ମତ୍ୱ, ଲକ୍ଷ୍ମୀଙ୍କ ହୀନଶକ୍ତିତ୍ୱ ଭକ୍ତିର ଚରମ ସାଧନ, ଜ୍ଞାନାଦିର ଭବନାଶ ଲାଗି ଅସାମର୍ଥତା, ମୁକ୍ତିଲାଗି ରାମକୃପାର ଆବଶ୍ୟକତା ଓ ହନୁମାନ ଭକ୍ତି ଇତ୍ୟାଦି (୨) । ଏହି ସାଂପ୍ରଦାୟିକ ଧର୍ମମତର ପରିପୋଷଣ ବ୍ୟତୀତ ତୁଳସୀ ଦାସଙ୍କ ଆଉ ଏକ ବିଶେଷତ୍ୱ ହେଉଛି—ଆଧ୍ୟାତ୍ମିକ ବିଚାରରେ ସାରଗ୍ରାହିତା ଶକ୍ତି । ଶ୍ରୁତି ସମ୍ମତ ଯେଉଁ ଆଧ୍ୟାତ୍ମିକତାର ବ୍ୟାଖ୍ୟା ଭାରତବର୍ଷରେ ମନୀଷୀମାନେ ଯୁଗ ଯୁଗ ଧରି କରି ଯାଇଅଛନ୍ତି । ସେଥିରୁ ଅବଶ୍ୟକୀୟ ଅଂଶର ସାରସଂଗ୍ରହ ମହାତ୍ମା ତୁଳସୀ ଦାସ କରିଅଛନ୍ତି । ଏହା ବିଶଦଭାବରେ ଆଲୋଚନା କରି 'ତୁଳସୀ ଦର୍ଶନ' ଗ୍ରନ୍ଥରେ ଡ଼ା ବଳଦେବ ମିଶ୍ର ଯଥାର୍ଥରେ କହୁଛନ୍ତି— "ସ୍ୱତନ୍ତ୍ର ଭାବରେ ସେ (ତୁଳସୀ ଦାସ) କୌଣସି ନୂଆ କଥା କହିବାର ଉପାୟ କରି ନାହାନ୍ତି । ଆଉ ଯାହାକିଛି କହୁଛନ୍ତି ଶ୍ରୁତିସମ୍ମତ ହିଁ କହୁଛନ୍ତି । ଏହାଙ୍କର ଯଦି କୌଣସି ନୂତନତ୍ୱ ଥାଏ, ତେବେ ତାହା କେବଳ

(୧) ହିନ୍ଦୀ ସାହିତ୍ୟ, ଡ଼ା: ହଜାରୀ ପ୍ରସାଦ ଦ୍ୱିବେଦୀ, ଦିଲ୍ଲୀ ୧୯୫୨ ପୃ: ୨୨୨ ।
(୨) ତୁଳସୀ ଦାସ— ଡା: ମାତା·ପ୍ରସାଦ ଗୁପ୍ତ—ପୃ: ୪୩୭ ।

ଉପଯୁକ୍ତ ବିଷୟର ସଂଗ୍ରହ ଓ ଅନୁପଯୁକ୍ତ ବିଷୟର ପ୍ରତ୍ୟାଖ୍ୟାନରେ ନିହିତ । (୧) ।

**ଚରିତ୍ର ଚିତ୍ରଣ—**

ତୁଳସୀ ଦାସଙ୍କ ସୃଷ୍ଟିରେ ଦୁଇଟି କଥା ବିଶେଷ ଉଲ୍ଲେଖଯୋଗ୍ୟ —ପ୍ରଥମତଃ ଆଦର୍ଶବାଦୀ ଦୃଷ୍ଟିକୋଣ, ଦ୍ୱିତୀୟତଃ ନାରୀ ବିଦ୍ୱେଷ । ବାଲ୍ମୀକି ଅଥବା ଓଡ଼ିଆ ରାମାୟଣକାର ବଲରାମ ଦାସ କେହି ଆପଣାର ଚରିତ୍ର ଗୁଡ଼ିକୁ ଆଦର୍ଶବାଦର ଅଯଥା ଶରବ୍ୟ କରି ନାହାନ୍ତି । ଦେଶ କାଳର ସୀମା ଭିତରେ କୌଣସି ମାନବ ଚରିତ୍ରରେ ଯେଉଁ ବିଗ୍ରହ, ଧୈର୍ଯ୍ୟ, ଅଧୀରତା, ଭ୍ରାନ୍ତି ଚପଳତା ସ୍ୱାଭାବିକ, ସେଥିରୁ ଏମାନଙ୍କ ଚରିତ୍ରମାନେ ମୁକ୍ତ ନୁହନ୍ତି । କୃତ୍ତିବାସଙ୍କ ବଙ୍ଗଳା ରାମାୟଣ ପକ୍ଷରେ ବି ଏକଥା ସତ୍ୟ । କିନ୍ତୁ ଏ ଦିଗରେ ତୁଳସୀଦାସଙ୍କ ସ୍ୱାତନ୍ତ୍ର୍ୟ ଜଣେ ହିନ୍ଦୀ ସମାଲୋଚକଙ୍କ ଉକ୍ତିରୁ ସ୍ପଷ୍ଟ ହେବ । "ସେ ଚରିତ୍ର ଚିତ୍ରଣ ଏକ ସୁକୁମାର ତୁଳିକାରେ କରିଅଛନ୍ତି । ମୂଳ ଗ୍ରନ୍ଥର ଚରିତ୍ରମାନଙ୍କୁ ସାମାନ୍ୟତଃ ଆବେଗ, ଅବିଗ୍ରହ ଏବଂ ଅଧୀରତାରୁ ମୁକ୍ତ କରି, ସେ ଏ ମାନଙ୍କୁ ଏକ ବ୍ୟାପକ ଉଦାର ଦୃଷ୍ଟି, ହୃଦୟର ବିଶାଳତା, ସରଳତା, ମାଧୁର୍ଯ୍ୟହୀନତା, ବିନମ୍ରତା, ଧାର୍ମିକତା ଓ ଭକ୍ତି ପ୍ରଦାନ କରିଅଛନ୍ତି ।" (୨) ନାରୀ ସମ୍ବନ୍ଧରେ ତୁଳସୀଦାସ ଯେପରି କଠୋର ମତ ପୋଷଣ କରି ଅଛନ୍ତି ତାର ତୁଳନା ନାହିଁ । ତାଙ୍କ ମତରେ ନାରୀ ଢୋଲ , ମୂର୍ଖ ଓ ପଶୁଭଳି ତାଡ଼ନ ଯୋଗ୍ୟ । ନାରୀର ଚିତ୍ତ ସର୍ବଦା ପାପ ବାସନା କଳୁଷିତ । ବାପ, ଭାଇ ପୁଅ ଯିଏ ହେଉନା କାହିଁକି ଜଣେ ସୁନ୍ଦର ପୁରୁଷକୁ ଦେଖିଲେ, 'ସୂର୍ଯ୍ୟମଣି' ସୂର୍ଯ୍ୟକୁ ଦେଖିଲେ ତରଳି ଗଲା ଭଳି ନାରୀ ବିଗଳିତ ହୋଇପଡ଼େ (୩) । ଏଥିଲାଗି ତୁଳସୀ ଦାସଙ୍କର ନାରୀ

(୧) ତୁଳସୀ ଦର୍ଶନ—ଡା: ବଳଦେବ ମିଶ୍ର, ପୃ: ୩୦୬ ।

(୨) ତୁଳସୀ ଦାସ—ରଜନ ପୃ: ୨୧୮-୨୧୯ ।

(୩) ଢୋଲ ଗଁବାର ଶୂଦ୍ର ନାରୀ ।
ସକଲ ତାଡ଼ନା କେ ଅଧିକାରୀ ॥
ଭ୍ରାତା ପିତା ପୁତ୍ର ଉରଗାରୀ ।
ପୁରୁଷ ମନୋହର ନିରେଖତ ନାରୀ ॥
ହୋଇ ବିକଲ ସକ ମନ ହିଁ ନ ରୋକୀ ।
ଜିମି ରବି ମନି ଦ୍ରବ ରବି ହିଁ ବିଲୋକି ॥
ରାମଚରିତ ମାନସ ।

ନାରୀ ପ୍ରତି ଅବଜ୍ଞାର କଥା ବର୍ଣ୍ଣନା କରି ଡଃ ମାତାପ୍ରସାଦ ଗୁପ୍ତ ସ୍ପଷ୍ଟ ଭାବରେ କହୁଛନ୍ତି—"କୌଣସି ନାରୀ ପାପର ଯଦି କେଉଁଠି ଭୁଲ ହୋଇଯାଏ ଆମ କବିଙ୍କ ଅନୁସାରେ ସମସ୍ତ ନାରୀ ଜାତି ଏଥିଲାଗି ଭର୍ତ୍ସନାର ପାତ୍ର, କିନ୍ତୁ ପୁରୁଷ ପାପ ଯେତେ ଇଚ୍ଛା ଅପରାଧ କରୁନା କାହିଁକି ପୁରୁଷ ଜାତିର ଭର୍ତ୍ସନା କବି କରନ୍ତି ନାହିଁ । (୧) ।

### ତୁଳସୀ ଦାସଙ୍କ ସମାଜ—

ତୁଳସୀ ଦାସ ମୁଖ୍ୟତଃ ଜଣେ ସଂସ୍କାରକ ଥିଲେ । ଆପଣା ସମାଜର ଯେଉଁ ଅବ୍ୟବସ୍ଥା ଓ ଅସଙ୍ଗତି ସେ ଦେଖିଥିଲେ, ସେଥିରୁ ଉଦ୍ଧାରର ସରଣୀ ଫିଟେଇବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଡଃ ହଜାରୀପ୍ରସାଦ ଦ୍ୱିବେଦୀ ଯଥାର୍ଥ କହୁଛନ୍ତି—"ତୁଳସୀ ଦାସଙ୍କର ଜନ୍ମ ସମୟରେ ସେ ଯେଉଁ ସମାଜକୁ ଦେଖିଥିଲେ, ତାହା ବିଶେଷ ଉଚ୍ଚ ଆଦର୍ଶ ଉପରେ ଚାଲୁ ନ ଥିଲା । ଉଚ୍ଚ ଶ୍ରେଣୀର ଲୋକେ ବିଳାସିତା ପଙ୍କରେ ବୁଡ଼ିଥିଲେ । ନୀଚ ଶ୍ରେଣୀର ସ୍ତ୍ରୀ ପୁରୁଷ ଦରିଦ୍ର, ରୁଗ୍ଣ ଓ ଅଶିକ୍ଷିତ ଥିଲେ । ବୈରାଗୀ ହୋଇଯିବା ଅତି ମାମୁଲି କଥା ଥିଲା । ଘର ସଂସାର ଶୂନ୍ୟ ଦରିଦ୍ର ପକ୍ଷରେ ସନ୍ନ୍ୟାସୀ ହେବା ଆଦୌ କଠିନ ନଥିଲା । ବସ୍ତୁତଃ ମୁସଲମାନ ସମ୍ପର୍କ ପରେ ହିନ୍ଦୁ ସମାଜରେ ଆତ୍ମରକ୍ଷାର ଯେଉଁ ଭାବନା ଉତ୍ପନ୍ନ ହୋଇଥିଲା, ତାହା ସମାଜରେ ଅନାବଶ୍ୟକ ସତର୍କଭାବ ଭରି ଦେଇଥିଲା । ଫଳରେ, ଜାତିଭେଦ ଅଧିକ କଠିନ ହେଲା । ଜନ୍ମରୁ ନୀଚ ବୋଲି ପରିତ୍ୟକ୍ତ ଲୋକ ମନରେ ଯଦି କିଛି ସ୍ୱାଧୀନତାର ଭାବନା ଉଦୟ ହେଉଥିଲା, ତେବେ ସେ ଏହି କଠୋର ବନ୍ଧନର ବିଷମ ବେଦନାରେ ବିଚଳିତ ହୋଇ ସନ୍ନ୍ୟାସୀ ହୋଇ ଯାଉଥିଲା । ଏହି ସମାଜ କ୍ଷୟକାରୀ କୁପ୍ରଥା ତୁଳସୀ ଦାସଙ୍କୁ ଅତ୍ୟନ୍ତ ପୀଡ଼ା ଦେଇଥିଲା (୨) ।

### ତୁଳନାରେ ଦାଣ୍ଡି ରାମାୟଣର ବିଶେଷତ୍ୱ—

ଅନ୍ୟନ ଏହି ପ୍ରବନ୍ଧରେ ବଳରାମ ଦାସଙ୍କ ମହାଗ୍ରନ୍ଥର ବିଭିନ୍ନ ଦୃଷ୍ଟି କୋଣରୁ ବିଚାର କରାଯାଇଅଛି । ତାହାକୁ ଆଖି ଆଗରେ ରଖି,

(୧) ତୁଳସୀ ଦାସ—ଡଃ ମାତାପ୍ରସାଦ ଗୁପ୍ତ, ପୃ: ୨୯୯ ।
(୨) ହିନ୍ଦୀ ସାହିତ୍ୟ—ଡଃ ହଜାରୀପ୍ରସାଦ ଦ୍ୱିବେଦୀ, ପୃ: ୨୨୨ ।

ଉପରେ କୃତ୍ତିବାସ ଓ ତୁଳସୀଦାସଙ୍କ ରାମାୟଣର ଯେଉଁ ସୂଚନା ଦିଆଗଲା ତାହା ତୁଳନାରେ ଦାଣ୍ଡି ରାମାୟଣର ବିଶେଷତ୍ୱ ସହଜରେ କଳନା କରି ହେବ । ଏହାର ବିଶଦୀକରଣ ବା ପୁନରୁକ୍ତି ଏଠାରେ ଅନାବଶ୍ୟକ । ତେବେ ଏ ତୁଳନାରେ ଗୋଟିଏ କଥା ସ୍ମରଣୀୟ । ବହୁତ ଆଲୋଚନା ଓ ଆୟାସ ସାଧ୍ୟ ସଙ୍କଳନଗୁଡ଼ିକ ଦ୍ୱାରା ଏବେ ତୁଳସୀ ରାମାୟଣ ଯେଉଁ ମର୍ଯ୍ୟାଦାରେ ପ୍ରତିଷ୍ଠିତ; ଦାଣ୍ଡି ରାମାୟଣର ସେ ସୌଭାଗ୍ୟ ହୋଇ ନାହିଁ । ବୈଜ୍ଞାନିକ ଦୃଷ୍ଟିରେ ଦାଣ୍ଡି ରାମାୟଣ ସଙ୍କଳିତ ହେଲେ, ବିଶେଷଜ୍ଞ ପଣ୍ଡିତ-ମାନଙ୍କ ଦ୍ୱାରା ସାହିତ୍ୟ, ଧର୍ମ ଓ ଦର୍ଶନ ଆଦି ବିଭିନ୍ନ ଦିଗରୁ ବ୍ୟାପକ ଆଲୋଚନାରେ ଯଥାର୍ଥ ମୂଲ୍ୟ ନିରୂପିତ ହେଲେ ଯାଇଁ ଏହାର ମର୍ଯ୍ୟାଦା ଉପଲବ୍ଧି ହେବ । ତାହା ନ ହେଉଣୁ ପ୍ରାଥମିକ ଆଲୋଚନା ଯେତେ ମୌଳିକ ଅନୁସନ୍ଧାନ ଭିତ୍ତିରେ ହୋଇନାହିଁ କି, "ବଳରାମ ଦାସଙ୍କ ରାମାୟଣ ଅପେକ୍ଷା ତୁଳସୀ ଦାସଙ୍କ ରାମାୟଣ ଟିକିଏ ଉଚ୍ଚ କୋଟୀର ଲେଖା" (୧) । ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା ପ୍ରସଙ୍ଗରେ ଏଭଳି ମନ୍ତବ୍ୟ ବିଶେଷ ମୂଲ୍ୟବାନ ମନେହୁଏ ନାହିଁ ।

କଥାବସ୍ତୁର ବିନ୍ୟାସ, ଧର୍ମଦୃଷ୍ଟି ଓ ଚରିତ୍ର ଚିତ୍ରଣରେ ତୁଳସୀ ଦାସଙ୍କଠାରୁ ବଳରାମ ଦାସଙ୍କ ଦୃଷ୍ଟିକୋଣର ପାର୍ଥକ୍ୟ ସ୍ପଷ୍ଟ । ବଳରାମ ଦାସଙ୍କ କଥାବସ୍ତୁରେ ପୁରାଣର ସରସତା ଓ ସ୍ୱଚ୍ଛନ୍ଦ ଗତି, ତଥା କାବ୍ୟର କୁଶଳତା ସ୍ୱତନ୍ତ୍ର ଭାବରେ ବିଶୃଙ୍ଖ । କବିଙ୍କର ଧର୍ମଦୃଷ୍ଟି ଭକ୍ତିବାଦରେ ସମ୍ପୂର୍ଣ୍ଣ ଆଚ୍ଛନ୍ନ ନ ଥିଲା । ସେ ଭକ୍ତ ଥାଇ ବି ତତ୍ତ୍ୱଜ୍ଞାନ ପ୍ରଚାର ଓ ଯୋଗସାଧନରେ ଆଗ୍ରହୀ ଥିଲେ । ଏହା ବ୍ୟତୀତ ଏଥିରେ ଲୋକମନର ପ୍ରକାଶ ଉଜ୍ଜ୍ୱଳ । ମୂଳ ଚରିତ୍ରଗୁଡ଼ିକରେ ସ୍ୱାଭାବିକତା ଓ ଆଦର୍ଶରେ କୌଣସି ହାନି ନ ଘଟାଇ ଏମାନଙ୍କୁ ସାଧାରଣ ଭାବରେ ଚିତ୍ରିବାର କଳା ଆମ କବିଙ୍କୁ ଯେପରି ଜଣା ଥିଲା ତାହାର ତୁଳନା ନାହିଁ । ପୁଣି କୃତ୍ତିବାସ ରାମାୟଣ ତୁଳନାରେ ଦେଖିଲେ ଏଥିରେ ଶାକ୍ତ, ବୈଷ୍ଣବ ଆଦି ସାଂପ୍ରଦାୟିକ ମତର ଯେଉଁ ପ୍ରାଚୁର୍ଯ୍ୟ ଦେଖିବାକୁ ମିଳେ ତାହା ଦାଣ୍ଡି ରାମାୟଣରେ ନାହିଁ । ଦାଣ୍ଡି ରାମାୟଣର କବି କୌଣସି ମାଲାତିଳକ ଧାରୀ ନ ଥିଲେ । ଉଦାର କବି ଦୃଷ୍ଟି ହିଁ ତାଙ୍କର ସାର୍ଥକତା ।

(୧) ଓଡ଼ିଆ ସାହିତ୍ୟର ପରିଚୟ:-ସୂର୍ଯ୍ୟନାରାୟଣ ଦାସ : ପୃ: ୨୮୬ ।

ବଳରାମ, କୃତ୍ତିବାସ ଓ ତୁଳସୀଦାସ ଏହି ତିନି ମହାକବିଙ୍କ ଦୃଷ୍ଟି କୋଣରେ ପାର୍ଥକ୍ୟ ଅଛି, କାହାଣୀରେ ସ୍ୱାତନ୍ତ୍ର୍ୟ ଅଛି, ରଚନା ରୀତିରେ ସ୍ୱକୀୟତା ଅଛି । ତଥାପି, ଏମାନଙ୍କ କୃତିରେ ଅନ୍ତର୍ନିହିତ ସାମ୍ୟ ଅତି ନିବିଡ଼ । ଦୁଃସ୍ଥ ମାନବର ମଙ୍ଗଳ ଓ ଅଧୋଃଗତ ସମାଜର ଉଦ୍ଧାର ଭାବନା ଏ ଗୁଡ଼ିକରେ ସମାନ ଭାବରେ ପରିବ୍ୟାପ୍ତ । ଲୋକ ଭାଷାରେ ଲୋକମନର ବଳିଷ୍ଠ ସ୍ୱାକ୍ଷର ଏହି ଗ୍ରନ୍ଥ ଗୁଡ଼ିକୁ ଘରେ ଘରେ ପ୍ରିୟ ଓ ପୂଜ୍ୟ କରିଅଛି । ଯଥାର୍ଥ ଜାତୀୟ ସାହିତ୍ୟ ଭାବରେ ଏହି ଗ୍ରନ୍ଥତ୍ରୟର ସ୍ଥାନ ଅତି ମହାନ୍ ।

---

# ସହାୟକ ଗ୍ରନ୍ଥପଞ୍ଜୀ

( କେବଳ ଆଲୋଚନାତ୍ମକ )

**ଓଡ଼ିଆ—**

ଅର୍ଦ୍ଧ ଜୀବନ— ପଣ୍ଡିତ ନୀଳକଣ୍ଠ ଦାସ ।
ଓଡ଼ିଆ ସାହିତ୍ୟର କ୍ରମପରିଣାମ (୧ମ ଓ ୨ୟ ଭାଗ)—ପଣ୍ଡିତ ନୀଳକଣ୍ଠ ଦାସ ।
ଓଡ଼ିଆ ସାହିତ୍ୟର ପରିଚୟ ( ୧ମ ଓ ୨ୟ ଭାଗ )—
ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।
ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର ।
ଓଡ଼ିଶାର ଇତିହାସ—ଶ୍ରୀ ହରେକୃଷ୍ଣ ମହତାବ ।
ଜଗନ୍ନାଥ ମନ୍ଦିର—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।
ପ୍ରବନ୍ଧାବଳୀ—ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।
ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ
ଶ୍ରୀ ଭାରତ-ଦର୍ପଣ—ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ।

**ହିନ୍ଦୀ—**

ଗୋସ୍ୱାମୀ ତୁଲସୀ ଦାସ ଔର ରାମଚରିତ ମାନସ—ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ।
ତୁଲସୀ ଦର୍ଶନ—ଡ: ବଳଦେବ ମିଶ୍ର ।
ତୁଲସୀ ଦାସ—ଡା: ମାତାପ୍ରସାଦ ଗୁପ୍ତ ।
ନାଥ ସଂପ୍ରଦାୟ—ଡା: ହଜାରୀପ୍ରସାଦ ଦ୍ୱିବେଦୀ ।
ରାମକଥା (ଉତ୍ପତ୍ତି ଔର ବିକାଶ) —ଡାଃ କାମିଲ୍ ବୁଲ୍‌କେ ।
ହିନ୍ଦୀ ସାହିତ୍ୟ କା ଇତିହାସ—ପଣ୍ଡିତ ରାମଚନ୍ଦ୍ର ଶୁକ୍ଳ ।
ହିନ୍ଦୀ ସାହିତ୍ୟ—ଡା: ହଜାରୀପ୍ରସାଦ ଦ୍ୱିବେଦୀ ।
ହିନ୍ଦୀ ସାହିତ୍ୟ କୀ ଭୂମିକା—ଡା: ହଜାରୀପ୍ରସାଦ ଦ୍ୱିବେଦୀ ।

**ବଙ୍ଗଳା—**

ପ୍ରାଚୀନ ବାଂଲା ସାହିତ୍ୟେର ଇତିହାସ—ଡା: ତମୋନାଶଚନ୍ଦ୍ର ଦାଶଗୁପ୍ତ ।
ପ୍ରାଚୀନ ସାହିତ୍ୟ—ରବୀନ୍ଦ୍ରନାଥ ଠାକୁର ।
ବାଙ୍ଗାଲିର ଇତିହାସ (ଆଦିପର୍ବ)—ଡା: ନିହାରରଞ୍ଜନ ରାୟ ।
ବାଂଲା ସାହିତ୍ୟେର ଇତିହାସ—ଡା: ସୁକୁମାର ସେନ ।
ଭାରତେର ସଂସ୍କୃତି—ପଣ୍ଡିତ କ୍ଷିତିମୋହନ ସେନ ଶାସ୍ତ୍ରୀ ।

ଇଂରାଜୀ—

A History of civilization in ancient India—
R. C. Dutt.
A History of Indian literature ( Vol. I )—Winternitz,
A Syllabus of poetry—Henry Stephen.
A Study of Orissan Folk-lore—K. B. Das.
Bengali Ramayan—D. C. Sen,
Down-fall of Hindu India—C. V. Vaidy.
Epic: an essay—Lescelles Abercrombie.
Encyclopedia of religion and ethics—Vol. IV.
Guide to modern thought—C. E. M. Joad.
Hindu View of life—Dr. S. Radhakrishan.
History of Brajabuli Literature—Dr. Sukumar Sen.
History of classical Sanskrit literature—
M. Krishnamacharior.
History of Sanskrit literature (classical period)—
S. N. Dasgupt and S. K. Dey.
On the Ramayan—Weber.
Poets the interpreters of their age—
Anna Swanwick.
Studies in the Puranic records on Hindu rites
and customs—Dr. R. C. Hazra.
Social Evolution—V. Gordon Childe.
The Foundations of Indian poetry—J. Nobel.
The History ot Medioval Vaishnavism in Orissa—
P. Mukherji.
The populer religion and the folk-lore of
Northern India—W. Crook.
The Sanskrit Drama—A. B. Keith.
Typical selections from Oriya literature—
B. C. Mazumdar.
Vaisnavism, Saivism and minor religious systems—
R. G. Bhandarkar.

ଫରାସୀ—

L' Inde Classique—Pierre meile.

## ପତ୍ରିକାରୁ ପ୍ରବନ୍ଧ

ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ—ମୃତ୍ୟୁଞ୍ଜୟ ରଥ
ଉତ୍କଳ ସାହିତ୍ୟ—ଶ୍ରାବଣ-ସନ ୧୩୨୯ ।

ପ୍ରୋଢ଼ ସାହିତ୍ୟ—ଦୀନବନ୍ଧୁ ରଥ
ଝଙ୍କାର, ୩ୟ ବର୍ଷ—୫ମ ସଂଖ୍ୟା ।

ଭାରତୀୟ ସୌନ୍ଦର୍ଯ୍ୟ ଚିନ୍ତା ବା ରମବହାଣ—ଡାଃ ହରଦ୍ୱାରୀ ଲାଲ୍
ଆଲୋଚନା (ହିନ୍ଦୀ ତୈମାସିକ) ଅପ୍ରେଲ୍, ୧୯୫୦ ।

A Note on the Oriya language and literature—
M. M. Chakravarty.
J. A. S. B.—1898. A. D.—No. 4.

# ସାଧାରଣ ନାମ-ସୂଚୀ


ଅକ୍ଷର ବସାଣ ୧୦୬
ଅଚ୍ୟୁତାନନ୍ଦ ୨୮,୧୦୫,୧୦୬
ଅଜପା ଗାୟତ୍ରୀ ୧୦୭
ଅଣାକାର ସଂହିତା ୩୦
ଅଦିତି, ଦେବମାତା ୫୭
ଅଦ୍ୱୈତ ଦର୍ଶନ ୯୮
ଅନିରୁଦ୍ଧ ୨୯
ଅବକାଶ ଚିନ୍ତା ୨୩
ଅବତାର ବାଦ ୫୨
ଅବଧି ଭାଷା ୯୯,୧୦୯
ଅମର କୋଷ ୧୬୨
ଅମରକୋଷ ଗୀତା ୨୭,୧୦୩
ଅମର ସିଂହ ୧୬୨
ଅମିତ ଗତି, ଜୈନ ଦିଗମ୍ବର ୧୬୧
ଅମୃତ ରସାବଳି ୩୫
ଅଯୋଧ୍ୟା ୫୭,କାଣ୍ଡ ୫୮, ୯୨,୧୫୪
ଅର୍ଜୁନ ୧୬୦
ଅର୍ଜୁନ ଦାସ ୧୬୪
ଅର୍ଥ ଶାସ୍ତ୍ର ୮୬,୮୭
ଅଶୋକ ବନ ୫୯
ଅଷ୍ଟାଙ୍ଗ ଯୋଗ ୧୦୬
ଅସ୍ତିକ ୪୬
ଅସମୀୟା ୧୯୦
ଆଗମ ସାହିତ୍ୟ ୯୭
ଆଦିକାଣ୍ଡ ୫୭
ଆଦିବାସୀ ୯୨,୧୦୪
ଆନନ୍ଦତୀର୍ଥ ୧୬୨
ଆଭୀର, ଜାତି ୯୩
ଆରଣ୍ୟକକାଣ୍ଡ ୫୯
ଆରିଷ୍ଟୋଟଲ୍ ୧୨୩,୧୨୫
ଇକ୍ଷ୍ୱାକୁ ୪୭
ଇନ୍ଦ୍ରଜିତ ୧୦୭
ଇନ୍ଦ୍ର, ଦେବରାଜ ୬୮
ଇଟାଲି ୧୫୭
ଇଂଲଣ୍ଡ ୧୫୭
ଈଶ୍ୱର ଦାସ ୩୨
ଉଇଣ୍ଟାରନିସ୍ ୧୧୯
ଉତ୍ତର ପୁରାଣ ୬୦
ଉତ୍ତରକାଣ୍ଡ ୬୪
ଉଦୟ କାହାଣୀ ୩୭
ଉଦୟନାଚାର୍ଯ୍ୟ ୮୮
ଉପ ପୁରାଣ ୫୧
ଉପରୁପକ ୧୮୫,୧୮୬
ଉପେନ୍ଦ୍ର ଭଞ୍ଜ ୭,୧୧୯,୧୬୫
୧୭୦,୧୭୯,୧୮୦
ଉର୍ବଶୀ ୬୫
ଋଷ୍ୟଶୃଙ୍ଗ ୫୭
ଏକନାଥ ୧୬୩,୧୯୦
ଏବରଙ୍ଗ, ମଠ ୧୦, ଗ୍ରାମ ୪୩
ଏସିଆଟିକ୍ ସୋସାଇଟି ଅଫ୍
ବେଙ୍ଗଲ ୫
ଓଭକୁଥନ୍ ୧୯୧

ଓ୍ୱିଲିୟମ୍, ମୋନିଅର ୪୮
ଓ୍ୱିଲ୍‌ସନ୍ ୧୯୪
ଓ୍ୱେବର ୪୯
ଔରବ, ମୁନି ୭୫
କଠ, ଉପନିଷଦ୍ ୧୦୩
କପିଳେଶ୍ୱର ବିଦ୍ୟାଭୂଷଣ ୧୭୩,୧୭୮
କବୀର, ସନ୍ଥକବି ୯୯,୧୦୫
କମ୍ବନ, ତାମିଲ କବି ୧୮୯
କର୍ମଫଳବାଦ ୧୦୬
କଲିକତା ବିଶ୍ୱବିଦ୍ୟାଳୟ ୯
କଳିଯୁଗ ୯୦,୮୮
କାନାଇ ଖୁଣ୍ଟିଆ ୩୪
କାବ୍ୟ ମୀମାଂସା ୧୪୨
କାମମୋହିନୀ ୫୬,୧୩୬
କାମଶାସ୍ତ୍ର ୧୪୩,୧୪୬,୧୮୦
କାମିଲ ବୁଲ୍‌କେ, ଡା: ୧୯୧
କାଳିଦାସ ୫୩,୧୩୬,୧୬୨
କିଷ୍କିନ୍ଧ୍ୟାକାଣ୍ଡ ୬୦
କୀଥ୍ ୪୯
କୁଞ୍ଜବିହାରୀ ଦାଶ ୯୪,୧୧୪,୧୬୬
କୃଷ୍ଣଚରଣ ପଟ୍ଟନାୟକ ୧୭୩
କୃତ୍ତିବାସ ୮,୧୯୨,୧୯୯
କୃଷ୍ଣ, ବାଲଲୀଳା ୯୮
କୈକେୟୀ ୧୫୨
କୋଇଲି ୧୮୧,୧୮୨, ଜ୍ଞାନୋଦୟ ୧୮୧,ବାରମାସୀ ୧୮୨,କାନ୍ତ ୧୮୨
କୌଟିଲ୍ୟ ୮୬,୮୭
କୌଶଲ୍ୟା ୧୫୧,୧୩୨
ଗଙ୍ଗା ୬୮,୧୪୧
ଗନ୍ଧମାର୍ଦ୍ଦନ, ପର୍ବତ ୬୪
ଗୟା ୫୯,୮୩
ଗର୍ଡନ ଚାଇଲ୍ଡ ୯୩
ଗାଉସ୍ ଏଫ୍, ଏ ୧୯୪
ଗ୍ରୀୟର୍ସନ୍ ୪,୧୯୪
ଗ୍ରୀସ୍ ୧୫୬
ଗୁଜରାଟୀ ୧୯୦
ଗୁଣଭଦ୍ର ୬୦
ଗୁଣ୍ଡୁଚିମୂଷା, ଉପାଖ୍ୟାନ ୬୨
ଗୁପ୍ତ ଗୀତା ୮,୨୫,୧୦୩
ଗୁହକ, ଶବର ୫୮
ଗୁହାରିଆ ୮୮
ଗେଟେ ୧୧୯
ଗୋପବନ୍ଧୁ ଦାଶ ୨୩
ଗୋପାଳ, କାଡବିଶେଷ ୯୨
ଗୋପାଳ ଦାସ ୧୮୬
ଗୋପୀନାଥ ନନ୍ଦ, ପଣ୍ଡିତ ୧୧,୧୨
ଗୋବର୍ଦ୍ଧନାଗୁମ୍ଫା ୧୦୪
ଗୋରଖନାଥ ୧୦୫
ଗୋଲହାଟ ୧୦୬
ଗୌଡ଼ ଦରବାର ୧୯୨
ଗୌଣ ପ୍ରମାଣ ୫୧
ଗୌସ୍ତ ୧୪୪
ଚଉପଦୀ ୧୬୫
ଚଉତିଶା ୧୬୫, ୧୮୧, ୧୮୨, ଆରତବାଣ ୧୮୨,ମଧୁରଙ୍କ ୧୮୨
ଚକବାକ, ଦମ୍ପତି ୫୯, ପକ୍ଷୀ ୭୬
ଚନ୍ଦ୍ରଭାଗା ୪୬,୫୯

ଚିତ୍ରକୂଟ ୫୮,୧୪୨,୧୪୭,୧୪୮
ଚିତ୍ରିଣୀ, ନାରୀ ୧୪୪
ଚିନ୍ତାମଣି ପ୍ରହରାଜ ୧୮୬
ଚୈତନ୍ୟ ଦେବ ୧୦, ୨୫,୩୩,୩୬
୩୭, ଭାଗବତ ୩୨,୩୬
ଚୈତଘୋଡ଼ା ୧୫୫
ଚ୍ୟବନ, ଋଷି ୧୭୪
ଛତିଶ ଗୁପ୍ତଗୀତା ୨୯
ଛତ୍ର ୬୩,୬୪,୧୪୩
ଜଗନ୍ନାଥ ୨୩,୩୮,୪୦,୮୨, ୯୯,
୧୦୨,୧୬୨
ଜଗନ୍ନାଥ ଦାସ ୫,୯,୩୭
ଜଗନ୍ନାଥ ଚରିତାମୃତ ୭,୩୦,୩୨
ଜଗବନ୍ଧୁ ସିଂହ ୪,୧୦,୪୩
ଜଟାୟୁ ୬୦
ଜନକ ୫୮
ଜରତା ୫୭
ଜାଗାଘର ୪୫
ଝଙ୍କଡ଼ ୧୮
ଟେସିଟୋରି ୧୯୪
ତମସା ୧୩୧
ତମୋନାଶ ଦାସଗୁପ୍ତ ୧୯୩
ତାରା (ଅଭିଶାପ) ୨୫,୭୮
ତାରିଣୀଚରଣ ରଥ ୪,୧୦
ତାମିଲ ୧୮୯
ତାସୀ ୧୯୪
ତ୍ରିଜଟା ୧୪୬
ତୁକାରାମ ୯୯
ତୁଳସୀ ଦାସ ୮,୯୯,୧୦୧,୧୯୦
୧୯୮,୧୯୭,୧୯୯
ତୁଳାଭିଣା ୨୫
ତେଲୁଗୁ ସାହିତ୍ୟ ୧୯୧
ଦକ୍ଷଯଜ୍ଞ ୫୬
ଦଣ୍ଡକାରଣ୍ୟ ୫୯
ଦଣ୍ଡୀ ୧୨୪
ଦଶରଥ, ରାଜା ୪୭,୮୬,୮୯,
୧୩୦,୧୫୦
ଦଶରୂପ ୧୮୬
ଦାଣ୍ଡିବୃତ୍ତ ୧୫୪,୧୫୫
ଦାନ୍ତେ ୧୫୬
ଦ୍ରାବିଡ଼ ୮୬
ଦାର୍ଢ୍ୟତା ଭକ୍ତି ରସାମୃତ ୮,୯,୩୧
ଦତ୍ତ ୧୩୩
ଦିନେଶ୍ଚନ୍ଦ୍ର ସେନ ୧୬୨,୧୬୩,
୧୯୩
ଦିବାକର ଦାସ ୭,୩୦
ଦିବ୍ୟସିଂହ ଗଜପତି ୧୭୦
ଦିବ୍ୟ ପୁରୁଷ ୭୭
ଦ୍ୱିପାଦ, ବୃତ୍ତ ୧୯୦
ଦୀନକୃଷ୍ଣ ଦାସ ୭,୧୮୧
ଦୂତ ଚଉତିଶା ୩୫
ଦୂଷଣ, ଅସୁର ୫୯
ଧନଞ୍ଜୟ ଭଞ୍ଜ ୧୬୪,୧୭୯
ଧନ୍ୱଜ ୧୮୬
ଧର୍ମ ପରୀକ୍ଷା ୧୬୧
ଧରକୋଠ ୧୭୩

ନନ୍ଦ ଦାସ ୩୦
ନନ୍ଦ ମଠ ୩୪
ନାମ ଦେବ ୯୯
ନାରଦ ୫୬
ନାରାୟଣ ୯୮
ନାରାୟଣୀୟ ଉପାଖ୍ୟାନ ୧୬୧
ନିଗମ ସାହିତ୍ୟ ୯୭
ନିବୃତ୍ତି ନାଥ ୧୦୫
ନିମି, ରାଜା ୬୫
ନିମ୍ବାର୍କ ୯୮
ନିରାଧାର ମନ୍ତ୍ର ୨୯
ନିହାରରଞ୍ଜନ ରାୟ, ଡକ୍ଟର ୧୫
ନୀଳକଣ୍ଠ ଦାସ, ପଣ୍ଡିତ ୧୨, ୧୧୬, ୧୬୬
ନୃସିଂହପୁରାଣ ୩୪,୬୦
ପଞ୍ଚତତ୍ତ୍ୱ ୯୯
ପଞ୍ଚଲକ୍ଷଣ ୧୨୫
ପଞ୍ଚସଖା ୯,୯୯
ପଣ୍ଡା ୧୮୩, ୧୮୪, ଝଙ୍କଦ ୧୮୩
ପଣ୍ଢରପୁର ୯୯
ପତଞ୍ଜଳି ୧୬୨
ପଦ ମଞ୍ଜରୀ ୩୫
ପଦ୍ମପୁରାଣ ୫୧
ପଦ୍ମନ ୩୦
ପଦ୍ମନାଭ ୧୭୦
ପଦ୍ମା, ନାରୀ ୧୪୪
ପଲ୍ଲୀଗୀତ ସଞ୍ଚୟନ ୧୬୬
ପରଶୁରାମ ୧୫୨
ପମ୍ପା ସରୋବର ୧୩୮
ପ୍ରକୃତି ୧୩୬
ପ୍ରତାପରୁଦ୍ର ରାଜା ୮, ୨୭, ୩୩, ୩୬, ୩୮, ୮୮
ପ୍ରଭାତ ମୁଖାର୍ଜି ୧୧
ପ୍ରସନ୍ନ ରାଘବ ୫୪
ପାଞ୍ଚରାବ ୯୮
ପାଠୁଆ ୧୫୫
ପାତଞ୍ଜଳ ଯୋଗ ୧୦୩
ପାତାଳପୁର ୨୭
ପାର୍ବତୀ ୫୬
ପ୍ୟାରୀ ୧୩
ପିଅର୍ ମେନ୍ସ ୧୩
ପୀତାମ୍ବର ଦାସ ୩୪
ପୀତାମ୍ବର ରାଜେନ୍ଦ୍ର ୧୮୫
ପୁରନ୍ଦର ପୁରୋହିତ, ପଣ୍ଡିତ ପ୍ରବର ୨୬
ପୁରାଣ, ବିଷ୍ଣୁ, ବାୟୁ, କୂର୍ମ ଇତ୍ୟାଦି ୫୧,୫୨
ପୁରୁଷୋତ୍ତମ ୩୧
ପୁରୁଷ ଭକ୍ତ ୯୭
ପ୍ରେମଭକ୍ତି-ବ୍ରହ୍ମଗୀତା ୨୫
ପୋଥି ୧୬୫, ପଟାଣ ୧୮୩, ୧୮୪
ପୌରାଣିକ ସାହିତ୍ୟ ୫୦

ଫକୀରମୋହନ ୧୨୯,୧୮୭
ଫଲ୍‌ଗୁ ନଦୀ ୫୯

ବଙ୍କ ପଞ୍ଚକ ୬୦,୧୪୩
ବଣାଇ ୬୦, ୧୪୯

ବଟ ଅବକାଶ ୨୫,୨୮
ବରଦ ୧୬୧
ବଳଭଦ୍ର ରାଜଗୁରୁ ୨୬
ବଳରାମ ଦାସ, ଜନ୍ମ ୨୧, ମୃତ୍ୟୁ ୩୦
ବଳି ୧୩୨
ବଶିଷ୍ଠ ୧୩୩,୧୫୧
ବ୍ରଜନାଥ ବଡ଼ଜେନା, କବି ୯୦
ବ୍ରତ ଖଣ୍ଡ ୧୬୨
ବ୍ରହ୍ମା ୫୬,୭୮
ବ୍ରହ୍ମାଣ୍ଡ ଭୂଗୋଳ ୨୫,୩୭
ବାଙ୍କି ମୁହାଣ ୨୭,୩୧
ବାଙ୍ଗାଳର ଇତିହାସ ୧୫
ବା ଚଉତିଶା ୧୭୦
ବାଚସ୍ପତି ମିଶ୍ର ୧୦୩
ବାମଣ୍ଡା ୬୦,୧୩୪
ବାମନ ୧୩୨,୧୬୧
ବାଲଖିଲ୍ୟା ୭୮
ବାଲୁକା ରଥ ୨୭,୨୧
ବାଲ୍ମୀକି, ଆଶ୍ରମ ୧୩୦, ପ୍ରକୃତି ୧୩୭
ବ୍ରାହ୍ମଣ୍ୟ ସଂସ୍କୃତି ୧୬
ବ୍ୟାସଦେବ ୧୦୩,୧୫୭
ବାୟୁ ପୁରାଣ ୧୬୩
ବାସୁଦେବ ୧୬୧,୧୬୩
ବିକ୍ରମ ନରେନ୍ଦ୍ର ୧୭୦
ବିଜ୍ଞାନଭିକ୍ଷୁ ୧୦୩
ବିଜୟଚନ୍ଦ୍ର ମଜୁମଦାର ୯
ବିଟୋବା ୯୯
ବିନାୟକ ମିଶ୍ର ୧୧,୩୮,୧୬୬
ବିପ୍ର ଦାସ, ଓଡ଼ିଆ ୩୪
ବିଭାଣ୍ଡକ, ଋଷି ୫୭,୧୩୭
ବିମ୍ସ, ଜନ ୪
ବିରଜା ପୀଠ ୬୭
ବିରାଟ, ଅସୁର ୫୯
ବିଲଙ୍କା ୧୬୬
ବିଶ୍ୱନାଥ କବିରାଜ ୧୨୪
ବିଶ୍ୱନାଥ ଖୁଣ୍ଟିଆ ୫୩,୧୭୦
ବିଶ୍ୱାମିତ୍ର, ଋଷି ୫୭,୭୮,୮୯,୧୫୦
ବିଷ୍ଣୁ ୫୭,୯୮,୧୬୧
ବିଷ୍ଣୁ ପୁରାଣ ୭୫
ବୀରବାହୁ ୧୦୦
ବୀର ମିତ୍ରୋଦୟ ସିଂହ ୮
ବୃଦ୍ଧରାଜୁ ୧୯୦
ବୁଲ୍‌କେ, କାମିଲ୍ ଡା: ୪୭
ବୁଲେଇ ଚଣ୍ଡୀ ୪୬
ବୃତ୍ର ୧୩୨
ବୃଦ୍ଧହାରୀତ-ସ୍ମୃତି ୧୬୩
ବୃନ୍ଦାବନ ପରିକ୍ରମଣ ଚଉତିଶା ୩୫
ବେଦାନ୍ତସାର ଗୀତା ୨୦
ବୈଦିକ ସାହିତ୍ୟ ୪୭
ବୈଦେହୀଶ ବିଳାସ ୭,୧୧୯,୧୭୯
ବୈଦ୍ୟ, ସି. ବି, ୪୯
ବୈଷ୍ଣବ ଧର୍ମ ୬,୯୮
ବୈଷ୍ଣବ ବାଣୀ ୧୮୭
ବୈଷ୍ଣବ ବନ୍ଦନା ୩୪
ବୌଦ୍ଧ ସାହିତ୍ୟ ୪୮, ଧର୍ମ ୪୮
ଭକ୍ତି ଧର୍ମ ୧୭,୯୬,୯୭
ଭକ୍ତିଯୁଗ ୧୫

ଭଗତା ୧୫୫
ଭଗବତ୍ ଗୀତା ୧୬୩
ଭଦ୍ରପୁର ୧୨।
ଭବଭୂତି ୫୩,୬୭,୧୬୨
ଭରତ ୭୪,୮୯,୯୧
ଭରଦ୍ୱାଜ ୯୧
ଭାଗବତ ଧର୍ମ ୨୫,୯୮
ଭାଣ ୧୮୬
ଭାବ ସମୁଦ୍ର ୨୫,୨୭
ଭାମହ ୧୨୪
ଭାସ୍କର ୮
ଭୃଗୁ ୬୫
ମଧୁବନ ୧୪୮,୧୪୯
ମଧୁସୂଦନ ୧୮୭
ମଧ୍ୱାଚାର୍ଯ୍ୟ ୧୬୨
ମନ୍ଦାକିନୀ ୧୪୭
ମନ୍ଦୋଦରୀ ୭୯
ମନମୋହନ ଚକ୍ରବର୍ତ୍ତୀ ୫,୬,୭,୯
ମନ୍ଥରା ୫୮, ଚରିତ୍ର ୧୨୯, ୧୫୨
ମନୋମାୟା ୨୬,୪୧
ମରୁତ, ରଜା ୬୦
ମହାକାବ୍ୟ ୧୨୧,୧୨୨, ୧୨୩
ମହାପୁରାଣ ୫୧
ମହା ନାଟକ ୫୩
ମହାଭାରତ ୪୪,୪୮,୯୫,୧୬୧
ମହାରାଷ୍ଟ୍ର ୯୯,୧୬୩
ମହାରାଷ୍ଟ୍ରୀ ୧୯୦
ମହାସୁତସୋମ ଜାତକ ୪୮
ମହିଷାସୁର ୭୮
ମହୀ ରାବଣ (ପାଲା) ୧୭୨
ମହେଶ୍ୱର ଦାସ ୪୫,୧୬୮
ମାତାପ୍ରସାଦ ଗୁପ୍ତ, ଡାଃ ୧୯୫
ମାଧବ ବିଜୟ ୧୬୨
ମାଧବାଚାର୍ଯ୍ୟ ୯୮
ମାୟାବାଦ ୯୮
ମାଲ୍ୟବନ୍ତ ୧୩୮
ମିତ୍ରାବରୁଣ ୬୫
ମିଲଟନ୍ ୧୫୭
ମୁକୁନ୍ଦ ଦେବ ୩୦
ମୁକ୍ତମଣ୍ଡପ ୨୭
ମୁଣ୍ଡା କାହାଣୀ ୨୧
ମୃତ୍ୟୁଞ୍ଜୟ ରଥ ୩୭
ମେଘନାଦ ପାଟେରି ୧୫୪
ମେଗାସ୍ଥିନିସ୍ ୯୮
ମେଘେଶ୍ୱର, ଦେଉଳ ୮୮
ଯମୁନା, ଦେବୀ ୨୯
ଯଯାତି ଉପାଖ୍ୟାନ ୬୫
ଯଶୋବନ୍ତ ଦାସ ୨୫
ଯୁଦ୍ଧକାଣ୍ଡ ୬୩
ଯୋଗମାର୍ଗ ୧୦୩
ରଘୁନାଥ ବିଳାସ ୧୭୯,୧୮୦
ରଙ୍ଗନାଥ ୧୯୦
ରଣାଇ ୬୦,୧୪୩
ରତ୍ନାକର ଦସ୍ୟୁ ୧୭୩
ରବୀନ୍ଦ୍ରନାଥ, ବିଶ୍ୱକବି ୭୧
୭୬, ୧୧୭
ରମ୍ଭା, ହରଣ ୧୦୦
ରାଜଶେଖର ୧୪୨

ରାଜେନ୍ଦ୍ର, ହାଜରା, ଡଃ ୫୧; ୮୩
ରାଧାକୃଷ୍ଣ ୯୮
ରାଧାନାଥ ୧୮୭
ରାଧିକା ୧୪୪
ରାବଣ, ସହସ୍ରମୁଖ ୧୬୭
ରାମ, ଭାର୍ଗବ ୧୬୧, ଦାଶରଥୀ ୧୬୧
ଉପାସନା ୧୬୧
ରାମ ଗୀତା ୧୬୩,୧୭୯
ରାମ ଚରିତ ମାନସ ୯୯,୧୯୦,୧୯୩
ରାମଚଣ୍ଡୀ, ଦେବୀ ୪୬
ରାମ ଦାସ ୩୧
ରାମତାରକ ମନ୍ତ୍ର ୫୬
ରାମତାଳି (ବାଦ୍ୟ) ୬୪
ରାମବିଭା, କାବ୍ୟ ୧୭୯,୧୮୦
ରାମଲୀଳା ୮,୧୮୪,୧୮୫
ରାମ ହୃଦୟ ୧୬୩,୧୭୯
ରାମାନନ୍ଦ ସଂପ୍ରଦାୟ ୫୩,୯୮
ରାମାନୁଜାଚାର୍ଯ୍ୟ ୯୮
ରାମାୟଣ, ଅଦ୍ଭୁତ ୪୪,୫୩, ଅଧ୍ୟାତ୍ମ ୫୩,୬୩ ଆନନ୍ଦ ୫୩, କୃତ୍ତିବାସ ୧୭୨, ଦାଣ୍ଡି ୨୬୭, ଟୀକା ୪୫, ୧୬୮, ବାଲ୍ମୀକି ୪୯, ବିଲଙ୍କା ୪୪, ୬୫, ୧୬୬, ବିଚିତ୍ର ୧୭୦, ଜଗମୋହନ ୨୩,୪୦, ଯୋଗବାଶିଷ୍ଠ ୫୩
ରାମେଶ୍ୱର, ଶିବ ୬୩
ରୁଦ୍ରଟ ୧୨୪,୧୨୫
ଲକ୍ଷ୍ମଣ, ଭ୍ରାତୃଭକ୍ତ ୧୩୦
ଲକ୍ଷ୍ମୀ ୪୩
ଲକ୍ଷ୍ମୀଧର ଦାସ ୧୮୩
ଲଳିତ ସାହିତ୍ୟ ୧୪,୫୩
ଲୀଳା ୧୮୪,୧୮୫,୧୮୬
ଲୀଳାବତୀ ୬୦
ଲୀଳା ମଧୁକର ୧୮୬
ଲୁଇ ର୍ୟୁନୋ ୧୩
ଲୋକଧର୍ମ, ବିଶ୍ୱାସ ୧୦୮,୧୦୯
ଶଙ୍କରାଚାର୍ଯ୍ୟ ୯୮
ଶବର ୯୨
ଶଙ୍ଖିଣୀ, ନାରୀ ୧୪୪
ଶାନ୍ତା, ଦଶରଥଙ୍କ କନ୍ୟା ୫୭
ଶ୍ୟାମସୁନ୍ଦର ରାଜଗୁରୁ ୮,୯,୧୬୯
ଶିବ ୫୬, ଧନୁ ୫୮
ଶ୍ରୀକ୍ଷେତ୍ର ୯୯
ଶୁଆ ଶାରୀ,ଉପାଖ୍ୟାନ ୧୧୨
ଶୂନ୍ୟ ସଂହିତା ୨୮,୨୯
ଶେଲି, ଇଂରେଜ କବି ୧୫୭
ସଦାଶିବ ଦାସ ୮
ସନ୍ତୁ ପଣ୍ଡା ଉପାଖ୍ୟାନ ୬୪
ସମ ଜାତକ ୪୮
ସସର ତରଙ୍ଗ, କାବ୍ୟ ୯୦
ସମ୍ଭୁଲ ଜାତକ ୪୮
ସର୍ବପଲ୍ଲୀ ରାଧାକୃଷ୍ଣନ୍ ୯୫
ସରସ୍ୱତୀ ୧୪୪
ସହସ୍ର ଶୀର୍ଷା ୧୬୬
ସାତ୍ୱତ, ଜାତି ୯୮
ସାରଳା ଦାସ ୫,୯,୧୦,୧୨,୪୪, ୫୩,୬୫,୧୫୩,୧୫୭
ସାହିତ୍ୟ ଦର୍ପଣ ୧୮୫,୧୭୭

ସ୍ମୃତି ୧୯୪
ସୀତା, ବିବାହ ୫୮, ହରଣ ୫୯,
ଶୋକ ୧୩୪,୧୩୫ ସାବିତ୍ରୀ ୪୭,
ସୂର୍ଯ୍ୟପୁରୀ ୪୭, ବନବାସ, ୬୫,
ଶୁଦ୍ଧି, ୮୦
ସୁକୁମାର ସେନ,ଡଃ ୩୫
ସୁଗ୍ରୀବ ୬୮
ସୁନ୍ଦରାକାଣ୍ଡ ୬୧
ସୁରଭି, ଗୋମାତା ୫୮
ସୂର୍ଯ୍ୟନାରାୟଣ ଦାଶ, ପଣ୍ଡିତ ୧୧
୧୨,୬୭,୭୨,୧୨୦
ସୂର୍ଯ୍ୟବଂଶ ୧୫
ସୂର୍ପଣଖା ୫୯
ସୋମନାଥ ମହାପାତ୍ର, ମୁଖ୍ୟମନ୍ତ୍ରୀବର
୨୬,୮୧
ସ୍ୱପ୍ନେଶ୍ୱର ଦେବ ୮୮
ଷଠୀଦାଉଛୁ ୨୩
ହଣ୍ଟର ଉଇଲିୟମ ୮,୫,୭,୧୦
ହନୁମାନ ୪୫, ଲଙ୍କାପ୍ରବେଶ ୬୨
ହରଦ୍ୱାରୀ ଲାଲ ଶର୍ମା ଡାଃ ୧୩୧
ହରିଦାସ ୨୭
ହରିଶ୍ଚନ୍ଦ୍ର ଉପାଖ୍ୟାନ ୫୮
ହରେକୃଷ୍ଣ ମହତାବ ୧୧
ହଳଧର ଖାଡ଼ିକା ୧୨୯
ହସ୍ତିନୀ, ନାରୀ ୧୪୪
ହାତୀ ୯୦,୯୧
ହିମାଳୟ ୧୩୨,୧୫୬
ହୁରିଆ ଭୂରିଆ ୯୧
ହେମାଦ୍ରି ୧୬୨
ହେର୍ କ୍ଲଠାସ ୧୦୧

